ରବି ପୁହାଣଙ୍କ

# ଅବଶିଷ୍ଟ ଗଳ୍ପ

ପ୍ରକାଶିକା

ଅନସୂୟା ଦାଶ
ଚିତ୍ରୋତ୍ପଳା ପବ୍ଲିକେଶନ୍ସ
ବଟେଶ୍ୱର, ସାଲେପୁର
କଟକ-୭୫୪୨୦୨

ପ୍ରଥମ ପ୍ରକାଶ :
୩ ସେପ୍ଟେମ୍ବର, ୧୯୯୮

ଅଙ୍ଗସଜ୍ଜା ❑ ଅକ୍ଷରସଜ୍ଜା



କଲ୍ୟାଣୀନଗର, କଟକ-୧୩

ମୁଦ୍ରଣ :
ଟେକ୍ନୋ ଆର୍ଟସ ଅଫ୍‌ସେଟ୍
କଲ୍ୟାଣୀନଗର, କଟକ-୧୩

ମୂଲ୍ୟ :
ଟ. ୭୦/-
[ସତୁରି ଟଙ୍କା ମାତ୍ର]

ABASISTHA GALPA

A Collection of Short Stories
by Rabi Puhan

Published by
CHITROTPALA PUBLICATIONS
Bateswar, Salipur
Cuttack-754202

First Edition . 1998
Price Rs. 70/-

I.S.B.N.-81-86556-08-7

# ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

| | | | |
|---|---|---|---|
| ଆର୍ବିଭାବ | - ୨୩ ଜୁନ୍ ୧୯୪୮ | - | ଆଷାଢ କୃଷ୍ଣ ଦ୍ୱିତୀୟା ବୁଧବାର । |
| ବିବାହ | - ୧୩ ଜୁଲାଇ ୧୯୭୪ | - | ଶନିବାର |
| ତିରୋଧାନ | - ୧୩ ସେପ୍‌ଟେମ୍ବର ୧୯୯୭ | - | ଭାଦ୍ରବ ଶୁକ୍ଳପକ୍ଷ ଦ୍ୱାଦଶୀ, ଶନିବାର । |

ମୁଁ ତୁମକୁ ଜୀବନ ମରଣର ସାଥୀ ରୂପେ ପାଇ ନିଜକୁ ଭାଗ୍ୟବାନ ମନେ କରୁଥିଲି, ଦାମ୍ପତ୍ୟ ଜୀବନ ଆମର ଖୁବ୍ ଖୁସୀ ଆନନ୍ଦରେ କଟୁ ଥିଲା । ହଠାତ୍ ଜୀବନର ଚଲାପଥରେ ଏମିତି ଏକଲା, ବେସାହାରା କରି ଚାଲିଯିବ ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି । ତୁମେ ସବୁ ସମୟରେ କହୁଥିଲ ସଂସାର ଛାଡିଲେ ଦୁଇଜଣ ଏକ ସଂଗେ ଛାଡିବା ଯେମିତିକି କେହି କାହାର ଅଭାବ ଅନୁଭବ କରିପାରିବା ନାହିଁ । "ମୁଁ ତ କିଛି ଜାଣେନାହିଁ । ସଂସାରର ଭଲମନ୍ଦ ସବୁ ଦାୟିତ୍ୱ ତୋ ଉପରେ" । ସବୁ ବୁଝିବୁ "ମତେ ଖାଲି ଭଲ ଭଲ ଜିନିଷ ରାନ୍ଧି ଖାଇବାକୁ ଦେବୁ ।"

ସେଇଥିପାଇଁ ଏ ସଂସାରର ବୋଝ ଗୁରୁ ଦାୟିତ୍ୱ ମୋ ମୁଣ୍ଡ ଉପରେ ଲଦି ଦେଇ ତୁମେ ନିଶ୍ଚିନ୍ତରେ ଚିର ନିଦ୍ରାରେ ଶୋଇ ପଡିଲ । ଟିକେ ହେଲେ ଭାବିଲ ନାହିଁ ।

ଏତେ ଭଲ ପାଉଥିଲ, ସ୍ନେହ ପ୍ରେମ କରୁଥିଲ, ପାଖରୁ ଟିକେ ଦୂରେଇ ଗଲେ କେତେ ରାଗ ଅଭିମାନ କରୁଥିଲ । ସବୁ ଭୁଲିଗଲ । ସବୁ ମାୟା ମମତା ତୁଟାଇ ଦେଇ ତୁମର ସତ ବଳିଲା ମୋତେ ଏକୁଟିଆ ଛାଡି ଯିବାପାଇଁ ? ମୋ କଥା ଟିକେ ମନେ ପଡିଲା ନାହିଁ ? ତୁମ ଆଦରର ଭାଇ ଓ ପିଲାମାନଙ୍କ କଥା ଟିକେ ଭାବିଲ ନାହିଁ ? ମୁଁ କଣ କରିବି ? ମୋ ପିଲାମାନେ କଣ କରିବେ ? ମୋତେ କିଛି ବୁଦ୍ଧି ବାଟ ଦିଶୁନାହିଁ । ତୁମ ବିନା ସବୁ ଅନ୍ଧକାରମୟ । ତୁମର ନୀତି ଓ ମହାନ୍ ଆଦର୍ଶରେ ମୁଁ ସଦା ଅନୁପ୍ରାଣିତ । ତୁମର ପ୍ରତିମା ହୋଇ ତୁମ ଶେଷ ପର୍ଯ୍ୟାୟ ଜୀବନର କଳ୍ପନା

ଓ ଅସପୂର୍ଣ୍ଣ କାର୍ଯ୍ୟକୁ ପୂରଣ କରିବାକୁ ମତେ ଉତ୍ସାହ, ପ୍ରେରଣା, ଧୈର୍ଯ୍ୟ ଦିଅ । ନହେଲେ ଜୀବନ ସଂଗ୍ରାମରେ ମୁଁ ହାରିଯିବି, ଏ ଦୁଃଖମୟ ଜୀବନର ଲମ୍ବା ରାସ୍ତାକୁ ଅବଶ ପାଦରେ ଟାଣି ଟାଣି ତୁମ ବିନା ମୁଁ ଏକୁଟିଆ ଚାଲି ପାରିବିନି । ମୋ ପାଦ ଥକି ଯିବ । ତୁମ ପରୀକ୍ଷାରେ ମୁଁ ହାରିଯିବି, ମୋ ଉପରେ ତୁମର ଥିବା ବିଶ୍ୱାସ ମଧ୍ୟ ହରାଇ ବସିବି । ମତେ ଆଶୀର୍ବାଦ କର, ସାହସ ଦିଅ, ଦମ୍ଭ ଦିଅ ।

ଯେଉଁ ଦିନ ତୁମ ପ୍ରଥମ ଗଳ୍ପ ସଂକଳନ 'ରବିପୁହାଣଙ୍କ ଶ୍ରେଷ୍ଠଗଳ୍ପ' ପ୍ରକାଶ ପାଇଲା ଏବଂ ସଦାଶିବ ବାବୁ ସମ୍ବଲପୁର ନେଇକି ଆସିଲେ, ମୁଁ ସେ ଦିନ ସମ୍ବଲପୁରରେ ନଥିଲି । ଏଫ୍.ସି.ଆଇ. ଯାଇଥିଲି । ତୁମେ ମୋ ଉପରେ କେତେ ରାଗିଥିଲ । ଅଭିମାନ କରିଥିଲ । ବାରମ୍ବାର ଫୋନ କରିଥିଲ ଶିଘ୍ର ପହଞ୍ଚିବା ପାଇଁ । ମୁଁ ଆସିଲା ପରେ ମୋତେ କହିଥିଲ ଜୀବନର ଏକ ଖୁସୀ ସମୟକୁ ଦୁଇ ଜଣମିଶି ଉପଭୋଗ କରିବାରେ ସିନା ଆନନ୍ଦ ଥାଏ ।

ତୁମର ବହୁତ ଇଚ୍ଛା ଥିଲା ତୁମର ଦ୍ୱିତୀୟ ଗଳ୍ପ ସଂକଳନ ପ୍ରକାଶ କରିବା ପାଇଁ । ହେଲେ ଭାଗ୍ୟର ବିଡମ୍ବନା ସମୟ ତାହା କରାଇ ଦେଲା ନାହିଁ । ତୁମେ ଦେଖ ଆଜି ତୁମର ପ୍ରଥମ ଶ୍ରାଦ୍ଧ ବାର୍ଷିକରେ ତୁମର ଇଚ୍ଛା ପୂରଣ କରିବାକୁ ଯାଇ ତୁମର ଦ୍ୱିତୀୟ ଗଳ୍ପ ସଂକଳନ ପ୍ରକାଶ କରାଉଛି । ସେଦିନ ମୁଁ ନଥିଲି ବୋଲି ସିନା ମୋ ଉପରେ ରାଗ ଅଭିମାନ କରିଥିଲ, ହେଲେ ଆଜି, ମୁଁ କାହା ଉପରେ ରାଗ ଅଭିମାନ କରିବି ? କିଏ ମୋ ମନର କଥା ବୁଝିବ ?

କାଳିଆ ପାଖରେ ତୁମର ଅମର ଆତ୍ମାର ଶାନ୍ତି ଏବଂ ସଦ୍‌ଗତି ପ୍ରାର୍ଥନା କରୁଛି । ଆଖିର ଲୁହକୁ ସାଥୀ କରି ସାତଜନ୍ମ ଯାଏ ତୁମକୁ ଜୀବନର ସାଥୀ ରୂପେ ପାଇବା ପାଇଁ ଅପେକ୍ଷା କରି ରହିଛି ।

(ଇତି)

ତୁମର ଆଦରର

ହତଭାଗିନୀ ପତ୍ନୀ

**ମିଂକୁ**

# ରବି ଓ ତା' ଗଳ୍ପ ସମ୍ପର୍କରେ

ରବି ଥିଲା ଷାଠିଏ ଦଶକରୁ ଗଳ୍ପ ଲେଖା ଆରମ୍ଭ କରିଥିବା ବହୁ ଚର୍ଚ୍ଚିତ ଗାଳ୍ପିକ । ତାର ସମସାମୟିକ ଭାବେ ପୂର୍ଣ୍ଣାନଂଦ ଦାଶ, ସତ୍ୟ ମିଶ୍ର, ଶୁଭେନ୍ଦୁ ମୁଣ୍ଡ, ଅଶୋକ ଚଂଦନ ପ୍ରମୁଖ ସେତେବେଳେ ସମ୍ବଲପୁରରୁ ବେଶ୍ ଲେଖାଲେଖି କରୁଥିଲେ । ରବିର ଗଳ୍ପରେ ସ୍ୱାତନ୍ତ୍ର୍ୟ ଥିଲା । ତାର ବକ୍ତବ୍ୟରେ ଛଳନା ନଥିଲା । ଅନୁଭବର ତିକ୍ତ ମଧୁର ସ୍ମୃତିକୁ ନିଖାରି ସେ ଯେପରି ତା ମନର ଅନେକ କଥାକୁ ଗଳ୍ପ ଛଳରେ ପ୍ରକାଶ କରୁଥିଲା । ତା ଲେଖା ଶୈଳୀରେ ତତ୍‌କାଳୀନ ଧାରା ଅପେକ୍ଷା ମୋଡ ଭାଂଗିବାର ଦିଗ ଥିଲା । ସତେଯେପରି ଜୀବନର ସବୁ ସଜଳ ଅଭିଜ୍ଞତା ଥିଲା ତା ଗଳ୍ପର ବିଷୟବସ୍ତୁ । ରବି ଗପ ଲେଖିଲା ବେଳକୁ ଆଜିର ଅନେକ ନାମୀ ଗାଳ୍ପିକ ଗଳ୍ପ ଲେଖା ଆରମ୍ଭ କରିନଥିଲେ । ଯେଉଁମାନେ ୧୯୭୦ ମସିହା ପରେ ଆସିଲେ ସେମାନେ କ୍ରମେ ଗଳ୍ପ ଲେଖିଲା ବେଳକୁ ୧୯୭୫ବେଳକୁ ରବିର ଗଳ୍ପ ଲେଖା ପ୍ରାୟତଃ ବନ୍ଦ ହୋଇଗଲା । ତାର ସର୍ବମୋଟ ୫୦ଟି ଗଳ୍ପ ଗୁଡିକରୁ ତିନି ଚାରିଟିକୁ ଛାଡିଦେଲେ ଅନ୍ୟ ସମସ୍ତ ସେଇ ସମୟରେ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇ ଅଣ ଆଲୋଚିତ ହୋଇ ରହିଗଲା । ଯାହା ସତ୍ୟ ମିଶ୍ରଙ୍କ କ୍ଷେତ୍ରରେ ହେଲା ତା ଠାରୁ ଅଧିକ ଅଚିହ୍ନା ହୋଇଗଲା ରବି ନିଜେ ଓ ତାର ଗଳ୍ପମାନେ ।

ଓଡିଶାରେ ଗଳ୍ପ ଆଲୋଚନାର କ୍ଷେତ୍ର ସୀମିତ ଥିବାରୁ ବହୁ ଗାଳ୍ପିକମାନଙ୍କର ଦଶା ସମପ୍ରାୟ । ରବିର ଗଳ୍ପ ନିଶ୍ଚିତ ଭାବେ ଓଡିଆ ଗଳ୍ପର ଦିଗନ୍ତକୁ ସୁଦୂର ପ୍ରସାରୀ କରିବାର ଅଭିଳାଷ ନେଇ ଏହାକୁ ପ୍ରକାଶ କରିବାକୁ ମନସ୍ଥ କଲି । ଏହି ଗଳ୍ପ ଗୁଡିକର ସ୍ୱାତନ୍ତ୍ର୍ୟ ନିଶ୍ଚିତ ଭାବେ ତଥାକଥିତ ସମସାମୟିକ ଗଳ୍ପ ମାନଙ୍କଠାରୁ ଅଧିକ ଆଦୃତ ହେବ । କାରଣ ରବିର ଗଳ୍ପର ମାନ ନିଶ୍ଚିତ ଭାବେ ତାର ନିଜସ୍ୱ ସତ୍ତା ଓ ସଜ୍ଞା ନେଇ କାଳୋତ୍ତୀର୍ଣ୍ଣ । ଏ କଥା ପ୍ରକାଶ କରିବାରେ ଦ୍ୱିଧା ନାହିଁ । ରବିର ଗଳ୍ପ କଥା ଭାବିଲା ବେଳକୁ ସେଇ ସମୟର ଗାଳ୍ପିକ ୰କନ୍‌ହେଇ ଲାଲ ଦାସ ଓ ୰ଅଶୋକ ଚଂଦନ ସ୍ୱତଃ ଉଦ୍‌ଭାସିତ ହୋଇ ଉଠନ୍ତି । ସେମିତି ଅଦିନରେ ରବିର ବିଦାୟ ଓଡ଼ିଆ ଗଳ୍ପ ସାହିତ୍ୟ ପ୍ରତି ଆଉ ଏକ ଦାରୁଣ କ୍ଷତ ଏକଥା କହିବାରେ କୁଣ୍ଠା ନାହିଁ । ରବିର ଗଳ୍ପ ଓଡିଆ ଗଳ୍ପକୁ ନୂଆ ମୋଡ ଦେଇଛି ଷଷ୍ଠ ଦଶକରେ । ଯେତେ ଡେରିରେ ହେଲେବି ଏଇ ଗଳ୍ପ ଗୁଡ଼ିକ ତାର ନିଜସ୍ୱ ମହିମାରେ ମହିମାନ୍ୱିତ ହେବ । ମୋର ଧରଣା ରବିର ଗଳ୍ପ ସଂପର୍କରେ ପ୍ରକୃତ ଚର୍ଚ୍ଚା ନହେଲେ ଓଡ଼ିଆ ଗଳ୍ପ, ସାହିତ୍ୟର ଧାରା କିଛିଟା ଅସଂପୂର୍ଣ୍ଣ ରହିଯିବ ନିଶ୍ଚୟ । ମୋର ଆଶଂକା ହୁଏ ଯେ ସମାଲୋଚକମାନଙ୍କର ଏ ପ୍ରକାର ନିସ୍ପୃହ ପଣରେ ଅନେକ ଭଲ ରଚନାର ଆଲୋଚନା ହୋଇ ପାରୁନି । ବୋଧହୁଏ ରବିର କାୟିକ ବିଲୟ ତାର ଗଳ୍ପର ଆତ୍ମାକୁ ଅଧିକ ରକ୍ତରଂଜିତ କରିବ ।

— ସଦାଶିବ ଦାଶ



# ଲୁହର ଆଇନାରେ ଲହୁର ପ୍ରତିଛବି

୧

ଇଂରାଜୀରେ କଥାଟିଏ ଅଛି: Time and tide waits for none. ସମୟ ଓ ସ୍ରୋତ କାହାରିକୁ ଅପେକ୍ଷା କରେନା । ଚାହୁଁ ଚାହୁଁ ବର୍ଷଟିଏ ବିତିଗଲା । ଏମିତି ବର୍ଷକ ତଳେ ହଠାତ୍ ଫୋନ୍ ଘଣ୍ଟି ବାଜିଥିଲା । ରିସିଭର୍ ଉଠାଇ ଯେଉଁ ଦାରୁଣ ଦୁଃଖଦ ସମାଚାରଟିଏ ପାଉଥିଲି, ସେଥିରେ ମୁଁ ହତବାକ୍ ଓ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ଯାଇଥିଲି । ସମାଚାର ଦେଇଥିଲା ଚିଣ୍ଟୁ, ୰ରବିର ବଡପୁଅ ଯେ, ରବି ଅନୁଗୁଳରେ ଏକ ଦୁର୍ଘଟଣାର ସମ୍ମୁଖୀନ ହୋଇ ଢେଙ୍କାନାଳ ସଦର ଡାକ୍ତରଖାନାରେ ଚିକିତ୍ସିତ ହେବା ପୂର୍ବରୁ ଇହଧାମରୁ ଚାଲି ଯାଇଛି । ଆଉ କିଏ ଏ କଥା କହିଥିଲେ ହୁଏତ ବିଶ୍ୱାସ କରିବା କଷ୍ଟକର ହୋଇଥାନ୍ତା । ମାତ୍ର ସଂବାଦଦାତା ୰ରବିର ପୁଅ ଥିଲା । ଅବିଶ୍ୱାସ ମଧ୍ୟ କରି ହେଲା ନାହିଁ । ସେହି ଦିନ ଅପରାହ୍ନରେ କଟକସ୍ଥ କାଠଯୋଡି ନଦୀ କୂଳରେ ଥିବା ପୁରୀଘାଟ ଅଂଚଳରେ ତା' ମାମୁଁ ଘର ବାଟେ ୰ରବିର ପାର୍ଥିବ ଶରୀରକୁ ଗାଡି ଯୋଗେ ତାର ପରିବାର ବର୍ଗ ଜଗନ୍ନାଥ ଧାମ ପୁରୀର ସ୍ୱର୍ଗଦ୍ୱାର ଶ୍ମଶାନକୁ ନେବା ଅବସରରେ ମୁଁ ଓ ମୋ ପତ୍ନୀ ପୁଷ୍ପମାଲ୍ୟଟିଏ ଦେବାକୁ ଯାଇ ଲୋତକପ୍ଲାବିତ ନୟନରେ ତାକୁ ଶେଷ ବିଦାୟ ଦେଇଥିଲୁଁ ।

ପରେ ଦୁର୍ଘଟଣାର ବିସ୍ତୃତ ବିବରଣୀ ବିଭିନ୍ନ ସଂବାଦପତ୍ରରେ ପ୍ରକାଶିତ ହେଲା । ଯାହା ଶୁଣିଥିଲୁ, ଘଟଣାଟି ତା'ଠାରୁ ଅଧିକ ଭୟଂକର ଥିଲା । ବୃତ୍ତିରେ ୰ରବି ଠିକାଦାର ଥିଲା । ତାର ପିତା ସ୍ୱର୍ଗତ ମାଧବାନନ୍ଦ ବାବୁଙ୍କ ସମୟରୁ ଠିକାଦାରୀ ସେମାନଙ୍କ ପରିବାରର କୌଳିକ ବୃତ୍ତି ଥିଲା । ଅନୁଗୁଳର ନାଲକୋନଗରରେ ରବି ଟେଲିଯୋଗାଯୋଗ ବିଭାଗର କିଛି କାମ ଠିକା ନେଇଥିଲା । କାମ ଆରଂଭ ବେଳେ ଚିରାଚରିତ ଦାଦାବଟି ପାଇଁ ସ୍ଥାନୀୟ ମାଫିଆମାନଙ୍କ ଦୌରାତ୍ମ୍ୟର ଶୀକାର ହେଲା । ଅତ୍ୟଧିକ ଦାଦାବଟି ଦାବୀ ଆଗରେ ୰ରବି ମୁଣ୍ଡ ନୋଇଁ ନଥିଲା । ଦାଦାମାନେ ଥିଲେ ସ୍ଥାନୀୟ କ୍ଷମତାସୀନ ରାଜନୈତିକ ଦଳର ପୃଷ୍ଠପୋଷକତାରେ ପରିଚାଳିତ ଜଣାଶୁଣା ଅସାମାଜିକ ବ୍ୟକ୍ତିମାନେ । ରବିକୁ ସେମାନଙ୍କ ହାତରେ ପ୍ରାଣ ଦେବାକୁ ପଡିଲା । ଓଡିଆ କ୍ଷୁଦ୍ରଗଳ୍ପର ଅନନ୍ୟ ବିଂଧାଣୀର ଜୀବନ ପ୍ରଦୀପ ଅସମୟରେ ଏଉ

ମାଫିଆମାନେ ନିର୍ବାପିତ କରି ଦେଲେ । ସ୍ୱାଧୀନତା ପରବର୍ତ୍ତୀ ଆମର ସମାଜ ଏଇ ଅପରାଧୀମାନଙ୍କ କବଳକୁ ଚାଲିଯାଇଛି । ପୁରପଲ୍ଲୀରୁ ଆରଂଭ କରି ଦିଲ୍ଲୀ ଯାଏଁ ଏ ସଂପର୍କରେ ଅନେକ ବିଲୁଆ ବିଚାର ହୋଇଛି । କିନ୍ତୁ ଅପରାଧୀମାନେ କ୍ଷମତାର ମଂଗ ଧରିଛନ୍ତି ଯେ, ଧରିଛନ୍ତି । ଦୃଢ ହୋଇଛି ପ୍ରଶାସନରେ ସେମାନଙ୍କର ପ୍ରଭାବ । ମାଫିଆମାନଙ୍କ କବଳରେ ସକେଇ ସକେଇ କାନ୍ଦୁଛି ଭାରତୀୟ ଗଣତନ୍ତ୍ର । ନିସ୍ତାର ନାହିଁ ସେମାନଙ୍କ କବଳରୁ । ଜନଜୀବନ ଅସ୍ତବ୍ୟସ୍ତ । କିନ୍ତୁ ଜନଗଣଙ୍କୁ ଏଇ ଅପରାଧୀମାନଙ୍କ କବଳରୁ ରକ୍ଷା କରିବ କିଏ ? ଏଠାରେ ରକ୍ଷକ ଯେ ଭକ୍ଷକ ସାଜିଛି । ପୋଲିସ୍, ପ୍ରଶାସନ, ରାଜନୈତିକ ନେତା, ଲୋକପ୍ରତିନିଧି— ସମସ୍ତଙ୍କର ମଙ୍ଗ ମାଫିଆଙ୍କ ହାତରେ । ଶାସନ ଓ ଅପରାଧୀ ହୋଇ ଯାଇଛନ୍ତି ପରସ୍ପରର ପରିପୂରକ । ତେଣୁ ୰ରବିର ହତ୍ୟା, ଦୁର୍ଘଟଣାଜନିତ ବୋଲି ପୋଲିସ୍ ଓ ପ୍ରଶାସନର କଲମଗାରରେ ଲିପିବଦ୍ଧ ହୋଇଗଲା । ସମୟ ଓ ସ୍ରୋତ କାହାରିକୁ ଅପେକ୍ଷା ନକରି ପ୍ରବାହିତ ହୋଇଗଲା । ବର୍ଷକ ଭିତରେ ୰ରବିର ମୃତ୍ୟୁକୁ ପୋଲିସ ତଦନ୍ତର ନାଲିଫିତା ତଳେ ଚାପି ଦିଆଗଲା । ଅପରାଧୀମାନେ ଭଦ୍ରଲୋକଙ୍କ ମେଳରେ ଅନୁଗୁଳଠାରେ ବିଚରଣ କରୁଛନ୍ତି ଏବଂ ରବିର ଆତ୍ମା ଏବେ ବି ନ୍ୟାୟ ପାଇବାକୁ ଅପେକ୍ଷା କରିଛି ଯେ, କରିଛି । କିଏ କହିପାରିବ, ତାର ହତ୍ୟାକାରୀମାନେ ଆଇନ ଦ୍ୱାରା କେବେ କଣ ସତରେ ଦଂଡିତ ହେବେ ? କେଜାଣି ?

ଅନୁଗୁଳର ଲୋକପ୍ରତିନିଧି ଓ ଶାସକ ଦଳର ଆଶୀର୍ବାଦପୁଷ୍ଟ ଛତ୍ରଛାୟା ତଳେ ଅବାଧରେ ବିଚରଣ କରୁଥିବା ହତ୍ୟାକାରୀମାନେ ହୁଏତ ମଣିଷର ଅଦାଲତରେ ଦୋଷୀ ସାବ୍ୟସ୍ତ ନ ହୋଇ ପାରନ୍ତି, ମାତ୍ର ଈଶ୍ୱରୀୟ ନ୍ୟାୟ ଉପରେ ମୋର ଅତୁଟ ଭରସା ଅଛି । ହୁଏତ ସର୍ବଶକ୍ତିମାନ ଶେଷ ବିଚାରକ ଏହାର ବିଚାର କରିବ । ହୁଏତ ସେତେବେଳେ ରବିର ଆତ୍ମା ସଂତୋଷ ପାଇବ । ଏହା କେବେ ହେବ ମୁଁ କହିପାରିବି ନାହିଁ । କିନ୍ତୁ ଦିନେ ନିଶ୍ଚୟ ଏବେର ଶାସକମାନେ ସେବେ ନ୍ୟାୟର କାଠଗଡାରେ ମୁଣ୍ଡ ନୁଆଁଇ ଠିଆ ହୋଇ ଥିବେ । ଅପରାଧୀ ପରି । ଅବଶ୍ୟ ଏହା ଘଟିବ । ଜଣେ ପରମ ବିଶ୍ୱାସୀ ଭାବେ ଏ ବିଶ୍ୱାସ ମୋର ରହିଛି ।

୰ରବି— ରବୀନ୍ଦ୍ରନାଥ ପୁହାଣ । ମୋର ବାଲ୍ୟ ସହପାଠୀ, ସଖା, ସୁଖ-ଦୁଃଖର ଅଂଶୀଦାର । ଆଦ୍ୟ କଲେଜ ଜୀବନରୁ ଜୀବନର ଶେଷ ମୁହୂର୍ତ୍ତ ଗୁଡିକ ଯାଏଁ । ଆଜିବି ତାର ସାରସ୍ୱତ ସତ୍ତାକୁ ମୁଁ ଅନୁଭବ କରିପାରୁଛି । ୬୦ ଦଶକର ଶେଷ ଭାଗରେ ଓଡିଆ କ୍ଷୁଦ୍ରଗଳ୍ପ ଜଗତରେ ଜଣେ ନବାଗତ ଶିଳ୍ପୀ ଭାବେ ରବି ପଦାର୍ପଣ କରିଥିଲା । ୭୦ ଦଶକ ଥିଲା ତାର ଶିଳ୍ପୀ ଜୀବନର ଚରମ ଉପଲବ୍ଧିର ସମୟ । ଓଡିଆ ଗଦ୍ୟ ସାହିତ୍ୟକୁ ତାର ସକ୍ରିୟ ଅବଦାନ ଥିଲା ୧୦ବର୍ଷର । ୮୦ ଦଶକର ପ୍ରଥମାର୍ଦ୍ଧରୁ ସେ ନୀରବ ହୋଇ ଯାଇଥିଲା । ତାର କାରଣ ସଂପର୍କରେ ସେ ନିଜର ପ୍ରଥମ ପ୍ରକାଶିତ ଗଳ୍ପ ସଂକଳନ 'ରବି ପୁହାଣଙ୍କ ଶ୍ରେଷ୍ଠ ଗଳ୍ପ'ରେ ସେ ଲେଖିଛି: ''ତା' ପରେ ଲେଖିବା

ଏକ ନିଶା ହୋଇ ପଡିଲା । କିଛିଟା ପ୍ରକାଶିତ ମଧ୍ୟ ହେଲା । ଚାଲିଥିଲି ନିଃସଙ୍ଗ ହୋଇ ଏକାକୀ ସାହିତ୍ୟ ସାଧନା ପଥରେ । ପରିବର୍ତ୍ତନଶୀଳ ଦୁନିଆଁରେ ଅନେକ ଉତ୍‌ଥାନ ଓ ପତନ ମଧ୍ୟରେ ମୋର ପଥ ପରିବର୍ତ୍ତନ ହେଲା, କେମିତି ଓ କେବେ, ତାହା ହୁଏତ ମୁଁ କହିପାରିବି ନାହିଁ । ଯେତେବେଳେ ଚିନ୍ତା କରିବା ପାଇଁ ସକ୍ଷମ ହେଲି, ସେତେବେଳେ ମୁଁ ଦେଖିଲି ନିଜର ଅନୁଭବ କରିବାର ଶକ୍ତି ମୁଁ ହରାଇ ବସିଛି । ପ୍ରକୃତିର ସୁନ୍ଦରତାକୁ ଉପଭୋଗ କରିବାର ଶକ୍ତି ହରାଇ ବସିଛି । ମୋ' ମନର କୋମଳତା ହରାଇ ବସିଛି ଏବଂ ମୋ ଭିତରର ଲେଖକ କେଉଁଆଡେ ହଜି ଯାଇଛି ।''

ଜଣେ ଦାର୍ଶନିକ ଭାବେ ସେ ନିଜର ଲେଖି ନ ପାରିବାର ବ୍ୟଥାକୁ ଦର୍ଶନର ପୁଟ ଦେଇ ଲେଖିଥିଲା । କେବଳ ସାରସ୍ୱତ ଚିନ୍ତାରେ ତଲ୍ଲୀନ ଥିବା ବ୍ୟକ୍ତିଟି ତାର ଅନ୍ତରର ଏକାକୀତ୍ୱ, ନିଃସଂଗତା, ଫ୍ରଷ୍ଟ୍ରେସନ୍‌କୁ ହୁଏତ ଅନୁଭବ କରିପାରିବ । ସମସ୍ତେ ତାର ଏଇ ସ୍ୱଗତୋକ୍ତିକୁ ଠିକ୍ ଭାବେ ବୁଝିବା ହୁଏତ ସଂଭବ ନ ହୋଇ ପାରେ । ହେଲେ ତାକୁ ମୁଁ ଓ ମୋ'ପରି କିଛି ଦରଦୀ ସାରସ୍ୱତ ଓ ବ୍ୟକ୍ତିଗତ ବନ୍ଧୁ ବୁଝି ଥିଲୁଁ । ମୁଁ ବ୍ୟକ୍ତିଗତ ଉଦ୍ୟମ କରି, ମୋର ନିଜର ବହିର ପ୍ରକାଶନକୁ ପଛରେ ପକାଇ ୰ରବିର ପ୍ରଥମ ଗଳ୍ପ ସଂକଳନ ଯଥାଶୀଘ୍ର ଆତ୍ମପ୍ରକାଶ କରୁ, ସେଥିପାଇଁ ଉଦ୍ୟମ କରିଥିଲି । ବାଲୁବଜାରର ସାହିତ୍ୟ ବେପାରୀଙ୍କ କବଳରେ ପଡି ରବିର ପ୍ରଥମ ଗଳ୍ପ ସଂକଳନର ପ୍ରକାଶନ ଦୀର୍ଘ ୧୦ବର୍ଷ ବିଳଂବିତ ହୋଇ ଯାଇଥିଲା ।' ଏଥିରେ ମୁଁ ବ୍ୟକ୍ତିଗତ ଭାବେ ମାନସିକ ଆଘାତ ପାଇଥିଲି । ଯେତେବେଳେ ବନ୍ଧୁ ସଦାଶିବ ଦାଶ ନିଜସ୍ୱ ପ୍ରକାଶନୀ ସଂସ୍ଥା 'ଚିତ୍ରୋତ୍ପଳା ପବ୍ଲିକେଶନ' ସଂସ୍ଥାକୁ ପ୍ରତିଷ୍ଠା କଲେ, ମୁଁ ତାଙ୍କର ସାହାଯ୍ୟ ଭିକ୍ଷା କଲି ଏକ ପ୍ରଚଂଡ ପ୍ରତିଭାକୁ ଅକାଳରେ ବିସ୍ମୃତି ଗର୍ଭକୁ ଯିବାକୁ ନ ଦେବା ପାଇଁ । ବନ୍ଧୁ ସଦାଶିବ ମୋତେ ଯଥେଷ୍ଟ ଆର୍ଥିକ ସହାୟତା କଲେ । ୰ ରବିର ପ୍ରଥମ ଗଳ୍ପ ସଂକଳନ ଅଗଷ୍ଟ ୧୯୯୬ରେ ଆତ୍ମପ୍ରକାଶ କଲା । ମୋର ଅଂତରାତ୍ମା ମୋତେ ସାକ୍ଷ୍ୟ ଦେଲା: ନୀରବ ହୋଇ ଯାଉଥିବା ଏହି ପ୍ରଚଣ୍ଡ ସାରସ୍ୱତ ପ୍ରତିଭା ରବି ପୁହାଣର ପୁନର୍ଜନ୍ମ ହେବ, ସଂଦେହ ନାହିଁ ।

ତା'ର ପ୍ରଥମ ଗଳ୍ପ ସଂକଳନର ମୁଖବନ୍ଧ ଲେଖିବା ପାଇଁ ତତ୍‌କାଳୀନ ସାହିତ୍ୟ ଆକାଡେମୀର ସଭାପତି ତଥା ପ୍ରଖ୍ୟାତ କଥାକାର ଶ୍ରୀଯୁକ୍ତ କିଶୋରୀ ଚରଣ ଦାସଙ୍କୁ ମୁଁ ଅନୁରୋଧ କଲି । ସେ ସମ୍ମତି ପ୍ରଦାନ କଲେ ଗୋଟିଏ ସର୍ତ୍ତରେ ଯେ, ସେ ରବି ପୁହାଣ ସହିତ ପ୍ରଥମେ ତାର ଗଳ୍ପମାନଙ୍କ ସଂପର୍କରେ ବ୍ୟକ୍ତିଗତ ଆଳାପ- ଆଲୋଚନା କରିବେ ଏବଂ ତାପରେ ସେ ମୁଖବଂଧ ଲେଖିବେ । ରବିକୁ ମୁଁ ଟେଲିଫୋନ୍ ଯୋଗେ ଏକ ପ୍ରକାର ନିର୍ଦ୍ଦେଶ ଦେଲି ସଂବଲପୁରରୁ ଶୀଘ୍ର ଆସି କଟକରେ ପହଞ୍ଚିବା ପାଇଁ । ୰ରବି ପିଲାଦିନରୁ ବଡ ଅଝଟିଆ, ଅମାନିଆଁ ଥିଲା । ହେଲେ ମୋତେ ତାର ଟ୍ୟୁସନମାଷ୍ଟର ପରି ସମ୍ମାନ ସେ ଦେଉଥିଲା । ଅନେକ ଥର ତାର ବାପା-ବୋଉ ବି ବହୁ ପାରିବାରିକ ଘଟଣାରେ ତାକୁ ମନେଇବା ପାଇଁ ମୋର ସହାୟତା ନେଇଛନ୍ତି

ଏବଂ ମୁଁ ତାକୁ ସେ ସବୁ କଥା ମାନି ଯିବାକୁ ଜବରଦସ୍ତଭାବେ ରାଜି କରାଇଛି । ତେଣୁ ଏଥର ମଧ ସେ ମୋ କଥା ଅନୁସାରେ କଟକରେ ପହଂଚି, ମୋ' ସହିତ କିଶୋରୀବାବୁଙ୍କ ଖଟବିନ୍ ସାହି (କଟକ) ସ୍ଥିତ ବାସଭବନକୁ ଯାଇ ଦୀର୍ଘ ଦୁଇ ଘଣ୍ଟା ଧରି ନିଜ ଗଳ୍ପ ସଂପର୍କରେ ଜଣେ ବିଚାରପତିଙ୍କ ସାମ୍ନାରେ ନିଜ ସଂପର୍କରେ ବୟାନ ଦେଲାଭଳି ବୟାନ ଦେଇ ତାଙ୍କୁ ସନ୍ତୁଷ୍ଟ କରିଥିଲା ।

ଏବଂ ନିଜର ସେଇ ପ୍ରଥମ ଗଳ୍ପ ସଂକଳନ "ରବି ପୁହାଣଙ୍କ ଶ୍ରେଷ୍ଠ ଗଳ୍ପ"ରେ 'ନିଜକଥା'ରେ ଲେଖିଥିଲା: "ସେଇ ହଜିଯାଇ ଥିବା ଲେଖକକୁ ପୁନର୍ବାର ଖୋଜିବାରେ ଓ ଲୋକଲୋଚନକୁ ଆଣିବାରେ ବଂଧୁ ହୁସେନ ଓ ବଂଧୁ ସଦାଶିବ କେତେ ସଫଳ ହେବେ, ତା ହୁଏତ ସମୟ କହିବ ।"

ହେଲେ ସମୟ କିଛି କହିବା ପୂର୍ବରୁ ରବି ସମୟ ସହିତ ଏକ ସମାନ୍ତର ରେଖାରେ ଗତି କରି ଅବେଳାରେ ଚାଲିଗଲା, ଅଫେରା ଗନ୍ତବ୍ୟସ୍ଥଳୀକୁ । ସମୟ ତା' ବାଟରେ ଚାଲିଛି, ଫେରୁନି କି ରବିର ବି ଆଉ ଫେରିବାର ନାହିଁ ।

ବେଳେ ବେଳେ ସାମାନ୍ୟ ମଣିଷମାନେ ବି ଅସାମାନ୍ୟ କାର୍ଯ୍ୟ ସାଧନ କରିଥାନ୍ତି । ଯେମିତି ୰ରବିର ଧର୍ମପତ୍ନୀ ମଂଜୁଲତା ଭାଉଜ ନିଜର ପତ୍ନୀଧର୍ମକୁ ସୂଚାରୁ ରୂପେ ସଂପାଦନା କରିବା ପାଇଁ ୰ରବି ପୁହାଣଙ୍କର ବାକି ରହିଥିବା ଅନେକ ଗଳ୍ପମାନଙ୍କରୁ କିଛି ସଂଗ୍ରହ କରି ଏଇ ଦ୍ୱିତୀୟ ସଂକଳନଟି ପ୍ରକାଶ କରାଇବାର ଉଦ୍ୟମ କରିଛନ୍ତି ।

୰ରବିର ଆହୁରି ଅନେକ ଗଳ୍ପ ଅପ୍ରକାଶିତ ଅଛି । ସେ ଛାଡି ଯାଇଥିବା ଗଳ୍ପମାନଙ୍କୁ ଏକତ୍ରିତ କରି ଯଦି ପ୍ରକାଶ କରାଯାଏ, ତେବେ ଆହୁରି ୨।୩ ଖଣ୍ଡ ପୁସ୍ତକ ହେବ । ଇଚ୍ଛା ଅଛି, ତାର ସୃଷ୍ଟି ସଂଭାରକୁ ଗ୍ରନ୍ଥାବଳୀ ରୂପ ଦେବା ପାଇଁ । ଦେଖାଯାଉ, ସେ ଶୁଭ ଦିନ କେବେ ଆସୁଛି । ତେବେ ଏତିକି ମାନସିକ ସଂତୁଷ୍ଟି ମୋତେ ମିଳୁଛି ଯେ, ମୁଁ ମୋର ସ୍ୱର୍ଗତ ମିତ୍ରର ସାରସ୍ୱତ ସ୍ମୃତିକୁ ସଦା ଜୀବନ୍ତ କରି ରଖିବାରେ ମଂଜୁଲତା ଭାଉଜଙ୍କୁ (ଶ୍ରୀମତୀ ପୁହାଣ) ଯତ୍‌ପରୋନାସ୍ତି ସହଯୋଗ ଦେଇ ନିଜର ଧର୍ମ ପାଳନ କରିବାର ଉଦ୍ୟମ କରୁଛି ।

୰ରବିର ପାର୍ଥିବ ଜୀବନ-ପ୍ରଦୀପ ଘାତକମାନଙ୍କ ଆକ୍ରମଣରେ ନିର୍ବାପିତ ହୋଇଯାଇଛି । ମାତ୍ର ସ୍ରଷ୍ଟାଭାବେ ରବି ଏବେ ବି ଜୀବନ୍ତ ଓ ସଦାଜୀବନ୍ତ ରହିଥିବ ନିଜର ସୃଷ୍ଟିର ମହନୀୟତାରେ । ୭୦ ଦଶକର ଅନନ୍ୟ କଥାଶିଳ୍ପୀ ରବିକୁ କଥା-ସାହିତ୍ୟ ଆଲୋଚକମାନେ ସ୍ୱୀକାର କରିବାକୁ ବାଧ । କାରଣ ତାର ସୃଷ୍ଟି ଏକ ନୂତନ ଭାଷା-ଶୈଳୀ, ଚିନ୍ତା ଓ ଚେତନାର ବାର୍ତ୍ତାବହ । ସେ ଓଡିଆ ଗଦ୍ୟ ସାହିତ୍ୟକୁ ଦେଇ ଯାଇଛି ଏକ ନୂଆ ମୋଡ, ଯାହା ତାର ନିଜସ୍ୱ । ହିଂଦୀ-ଉର୍ଦ୍ଦୁ କଥାକାର ସ୍ୱର୍ଗତ କିଶନ ଚଂଦରଂକ ପରି ସେ ଓଡିଆ ଗଦ୍ୟ ସାହିତ୍ୟକୁ ଏକ ନୂତନ ଆଂଗିକତା ଏବଂ ଆତ୍ମିକତା ପ୍ରଦାନ କରିଛି । ଓଡିଆ ସାହିତ୍ୟ ତାର ସାଧନା ବଳରେ ନିଜକୁ ଏକ ଭିନ୍ନ

କଳେବର ମଧ୍ୟରେ ଆବିଷ୍କାର କରିଛି । ଖୁବ୍ କମ୍ ଦିନର ସାହିତ୍ୟ- ସାଧନାରେ ସେ ଖୁବ୍ ଅଧିକ ସିଦ୍ଧି ଲାଭ କରିଛି । ତାହାହିଁ ତାର ମୌଳିକତା ।

୰ରବିର ଜୀବନ ଦର୍ଶନ ସହିତ ଆମେ ସମସ୍ତେ ଏକମତ ନ ହୋଇ ପାରୁଁ । ମୁଁ ବି ତାର ସିଦ୍ଧାନ୍ତମାନଙ୍କୁ କେବେବି ଗ୍ରହଣ କରି ନାହିଁ । କିନ୍ତୁ ତାର ପ୍ରକାଶ ଭଂଗୀ ଓ ଭାଷାର ଶୈଳୀକୁ କୌଣସି ଓଡିଆ ସାହିତ୍ୟ- ଆଲୋଚକ ଯେ ଅସ୍ୱୀକାର କରିପାରିବେ, ଏହାର ସଂଭାବନା ନାହିଁ । ଏହି ଅନନ୍ତ ସଂଭାବନାମୟ ଗାଳ୍ପିକର ଅକାଳ ବିୟୋଗ ଆମ ପାଇଁ ଅତି ନିଷ୍ଠୁର ଓ ଦୁଃଖଦ ଘଟଣା ହୋଇଥିଲେ ବି ତାର କଥାସାହିତ୍ୟ ପାଇଁ ଓଡିଆ ଭାଷାର ପାଠକ ଭାବେ ଆମେ ନିଜକୁ ଗର୍ବିତ ଓ ଗୌରବାନ୍ୱିତ ମନେ କରୁଥିବା । ସ୍ୱର୍ଗତ ରବି ଆଜି ମରି ମଧ୍ୟ ମରିନାହିଁ । ତାର ଚିନ୍ତା ଓ ଚେତନା ଆମ ଭିତରେ ଚିର ଯୌବନ ପ୍ରାପ୍ତ ହୋଇ ବଂଚି ରହିଛି ଏବଂ ବଂଚିରହିଥିବ ସେତେ ଦିନ ଯାଏଁ — ଯେତେଦିନ ଓଡିଆ ଗଳ୍ପ ସାହିତ୍ୟ ଧରଣୀ ପୃଷ୍ଠରୁ ବିଦାୟ ଘେନି ନାହିଁ ।

ମୋର ଅତି ଅନ୍ତରଙ୍ଗ ସାରସ୍ୱତ ସତୀର୍ଥ ୰ରବିର ପବିତ୍ର ଆତ୍ମା ଚିର ଶାନ୍ତି ଲାଭ କରୁ । ଏହି କାମନା କରୁଛି ଆଖିରେ ଚିକ୍ ଚିକ୍ କରୁଥିବା ଲୁହର ଭଙ୍ଗା ଆଇନାର ଟୁକୁରାମାନଙ୍କ ଭିତରେ, ଯେଉଁଠାରେ ତାର ସାରସ୍ୱତ ଲହୁର ପ୍ରତିଛବି ସଦା ଅମଳିନ ଭାବେ ପ୍ରତିଫଳିତ ହେଉଛି ଏବଂ ବଂଚିଥିବା ଯାଏଁ ତାର ସ୍ମୃତିର ପ୍ରତିଛବି କେବେବି ହୃଦୟର ଅଇନାରେ ମଳିନ ହେବାର ସଂଭାବନା ନାହିଁ ।

**— ହୁସେନ୍ ରବି ଗାଂଧୀ**

*୨ ସେପ୍‌ଟେମ୍ବର ୧୯୯୮*

# ସୂଚୀପତ୍ର


| | |
|---|---|
| ଏକ ଶବ ସଂପର୍କରେ | ୧୩ |
| ଅଗନା ଅଗନି ବନସ୍ତ ଓ ବନାନୀ | ୨୦ |
| ଦୁଇଟି ଭିନ୍ନ ପଥ | ୨୫ |
| ଶୂନ୍ୟ ଆକାଶ | ୩୧ |
| ହାରି ଯାଇଥିବା ଯାତ୍ରୀ | ୩୭ |
| ମୁଖା : ଦୁଇଟି ଚରିତ୍ରର | ୪୨ |
| ଦୁର୍ଘଟଣା | ୪୭ |
| ସଂପର୍କର ସୂତାଖିଅ | ୫୨ |
| ପ୍ରତିବିମ୍ବ | ୬୨ |
| ଅପରେସନ୍ ପୂର୍ବରୁ | ୬୭ |
| ବ୍ୟତିକ୍ରମ | ୭୨ |
| କୌଣସି ଏକ ନାରୀକୁ ଭଲପାଇବା ପରେ | ୭୭ |
| କେତୋଟି ସ୍ୱୀକାରୋକ୍ତି | ୮୩ |
| ଜୋକର | ୮୭ |
| ପ୍ରତିକ୍ରିୟା | ୯୨ |
| ଅନ୍ୱେଷଣ : ମାନବିକତାର | ୧୦୦ |
| ଗ୍ରେଟମ୍ୟାନ | ୧୦୫ |
| ଚତୁର୍ଥ ମୃତ୍ୟୁ | ୧୧୧ |
| ଝଡ଼ | ୧୧୮ |
| ସ୍ୱୀକାରୋକ୍ତି | ୧୨୩ |
| ଆତ୍ମହତ୍ୟା | ୧୨୫ |
| ନଦୀ ଉଦ୍ୟାନ ଓ ମୁଁ | ୧୩୦ |
| ଆଘାତ | ୧୩୪ |
| ଅନ୍ଧ ବିଶ୍ୱାସ | ୧୪୦ |
| ଧର୍ମଘଟ | ୧୪୩ |
| ନୂଆଘର | ୧୫୫ |
| ପଳାୟନ | ୧୫୮ |
| ସ୍ୱାର୍ଥପର | ୧୬୩ |



| | | |
|---|---|---|
| ଆର୍ବିଭାବ | - | ୨୩ ଜୁନ୍ ୧୯୪୮ |
| ତିରୋଧାନ | - | ୧୩ ସେପ୍‌ଟେମ୍ବର ୧୯୯୭ |

# ଏକ ଶବ ସଂପର୍କରେ

ମୁଁ ଧୀର ପାଦରେ କବର ଭିତରେ ପାଦ ଦେଲି । ନିସ୍ତବ୍ଧତାର ସଂଗୀତ ଚତୁର୍ଦ୍ଦିଗକୁ ନୀରବ କରିଦେଇଥାଏ । ଏଇ କିଛି କ୍ଷଣ ହେବ ସେମାନେ ଫେରିଯାଇଛନ୍ତି । ସେମାନଙ୍କ ଫେରିବା ପରେ ବୁଢା ଜଗୁଆଳୀ ମଧ୍ୟ ଲଣ୍ଠନ ଧରି ଚାଲିଗଲାଣି । ଏଥର ରାସ୍ତା ସାଫ୍ । ମୁଁ ଶାନ୍ତିରେ ଥରେ ନିଶ୍ୱାସ ମାରିଲି । କାବ୍ରିସ୍ଥାନ ଭିତରେ ଅନେକ ଅନାବନା ଗଛ । ସାପ ବି ଥାଇପାରନ୍ତି । ହେଲେ ତାଂକୁ ଭୟ କରାଯାଇନପାରେ । ମୁଁ ଆଗକୁ ନିଶ୍ଚିନ୍ତରେ ବଢିଚାଲିଲି । ସୁପ୍ତ ଆତ୍ମାମାନେ ମୁଣ୍ଡ ଟେକି ମୋତେ ଯେପରି ଲକ୍ଷ୍ୟ କଲେ । ପବନଟା ଗତକାଲିଠାରୁ ଖୁବ୍ ଜୋରରେ ବହୁଛି । ବହୁ ! ଭଲ ହେବ... ଗ୍ରୀଷ୍ମର ପ୍ରଥମ ଖରା ଆଉ ସହି ହେଉନି । କବ୍ରିସ୍ଥାନ ନୀରବ... ଆତ୍ମାମାନେ ନୀରବ... । କେବଳ ପବନ ବହୁଛି ଏବଂ ଝିଂକାରୀ କାନ୍ଦୁଛି । ନିକଟ ଆମ୍ବଗଛରେ ଏକ ପେଚା ମୋତେ ଚାହିଁ ରହିଛି । ଚାରିଆଡେ ଅନ୍ଧାର । ଅନ୍ଧାର ମଧ୍ୟରେ ମୋର କଳାଛାଇ ଆଗେଇ ଚାଲିଥିଲା, ସମ୍ମୁଖରେ ଏକ ତାଜା କବର ନିକଟରେ ଜଳୁଥିବା ମହମବତୀ ନିକଟକୁ ।

ଲଂବା ସାର୍ଟ ପକେଟରୁ ଏକ ବିଡି ବାହାର କଲି ଏବଂ ମହମବତୀର ଶିଖା ଦ୍ୱାରା ଜଳେଇ ବାଁ ହାତରେ ଧରିଥିବା ବୁଢା ଜଗୁଆଳୀର କୋଦାଳଟିକୁ ଅତି ସନ୍ତର୍ପଣରେ ତଳେ ରଖି, ମୁଁ କବର ନିକଟରେ ବସି ପଡିଲି । ରାତ୍ରି ଅଳପ ହେବ ବୋଧହୁଏ । ଆକାଶରେ ତାରା ଗୁଡାକ ନିଷ୍ପ୍ରଭ ହୋଇ ଉଠିଲେଣି । ଅଂଧାର ଆହୁରୀ ଘନ ହୋଇ ଯାଉଛି । ମହମବତୀର ତରଳ ମହମ ତଳେ ପଡୁଛି ଏବଂ ତାର ଉଚ୍ଚତା କମି ଆସୁଛି । ମୁଁ ବିଡିଟି ଫୋପାଡି ଦେଲି ଏବଂ କୋଦାଳ ଉଠେଇ ତାଜା କବରର ମାଟିକୁ ଖୋଳିବାକୁ ଲାଗିଲି ।

ହଠାତ୍ ମୁଁ ଅଟକିଗଲି । କବ୍ରିସ୍ଥାନର ମୁଖ୍ୟଦ୍ୱାର ନିକଟରେ ଠିଆ ହୋଇ କିଏ ଜଣେ ହସିଲା । ମୁଁ ଅଂଧାର ମଧ୍ୟରେ ନିଜକୁ ଲୁଚାଇ ଦେବାର ଯଥାସାଧ୍ୟ ଚେଷ୍ଟା କଲି । ଆଗନ୍ତୁକ ପୁଣି ହସିଲା, କହିଲା, ''କି ଫକୀର ବାବା କଅଣ କରୁଛ ?''

ମୁଁ ଆଶ୍ୱସ୍ତ ହେଲି । ଆଗନ୍ତୁକ ତାହାହେଲେ ମୋତେ ଚିହ୍ନେ । ଏବଂ ଯିଏ ମୋତେ ଚିହ୍ନେ, ତାକୁ ନିଶ୍ଚୟ ଭୟଭୀତ କରାଯାଇପାରିବ । ତେଣୁ ମୁଁ ହସିଲି, ପୈଶାଚିକ ହସ । କହିଲି, ''ପାଗଳ... ଆତ୍ମାକୁ ମୁଁ ମୁକ୍ତି ଦେଉଛି । ତୁ କିଏ ମୁଁ ଜାଣେନା... ଚାଲିଯା... ଚାଲିଯା'' ।

ସେ କିନ୍ତୁ ହଠାତ୍ ଭୟଭୀତ ହେଲାନାହିଁ । ସେହିପରି ହସିହସି କହିଲା, ''କବର ଭିତରେ ଆତ୍ମା ନଥାଏ ଫକୀର ବାବା'' । ଏବଂ ପଛକୁ ଘୁଂଚି ଚାଲିଗଲା । ତା ପାଦଶବ୍ଦ ଶୂନ୍ୟତାରେ ନ ପହଂଚିବା ପର୍ଯ୍ୟନ୍ତ ମୁଁ ହସି ଚାଲିଥିଲି । ଆତ୍ମା ଓ ପ୍ରେତାତ୍ମାମାନେ ଭୟରେ କବର ଭିତରେ ପଶିଯାଇଥିଲେ । ଝିଂକାରୀଟି ନିଜ ସ୍ୱର ବନ୍ଦ କରିଦେଇଥିଲା । ପବନ ବି କିଛି କ୍ଷଣ ହେବ ନୀରବ ହୋଇ ମୋତେ ଦେଖୁଥିଲା । ମୁଁ ହସ ବନ୍ଦ କଲି, ପୁଣି କାମରେ ଲାଗିଗଲି ।

ଖଟ୍ ! ମୋ କୋଦାଳ କାଠର କଫିନ୍‌ରେ ଏବଂ ମୁଁ ଅଟକିଗଲି । ମୁଁ ତାହେଲେ ସଫଳ ହୋଇପାରିଛି । ଏଥର ମୋ'ର ବିଜୟ ସୁନିଶ୍ଚିତ । ଦୀର୍ଘ ପାଂଚଦିନ ହେବ ଏହି ଦିନଟିର ପ୍ରତୀକ୍ଷାରେ ଥିଲି ମୁଁ । ସେମାନେ ପାଂଚଦିନ ତଳେ ମୋତେ ଡାକିଥିଲେ । ମୁଁ ଯାଇଥିଲି । ତାକୁ ଦେଖିଥିଲି ଏବଂ ମୁଣ୍ଡ ହଲେଇ କହିଥିଲି, ''ନା ଆଉ ନୁହେଁ । ଦୁଷ୍ଟାତ୍ମା ଏହାକୁ ଶେଷ ନ କରି ଛାଡିବ ନାହିଁ ।'' ସେମାନେ ମୋ ପାଦତଳେ ମୁଣ୍ଡ କଚାଡି କାଂଦିଥିଲେ । ବିବାହର ମାତ୍ର ତିନିମାସପରେ ଯେଉଁ ନାରୀ ମୃତ୍ୟୁ ଅପେକ୍ଷାରେ ବିଛଣାରେ ପଡିରହିଥାଏ, ତାପାଇଁ ପ୍ରତ୍ୟେକଙ୍କର କାଂଦିବାର ତ କଥା । ମୁଁ କିନ୍ତୁ ତରୁଣୀର ଶରୀରକୁ ଚାହିଁଥିଲି । ତା' ଅବୟବକୁ ଚାହିଁଥିଲି । ଚାହିଁଥିଲି ତା ପରିଧେୟକୁ । ସେମାନେ ମୋର ସେବା ଯଥେଷ୍ଟ କରିଥିଲେ । ହେଲେ ଅଦୃଷ୍ଟ । ଏବଂ ମୋର ଭାଗ୍ୟ ।

ମୁଁ ଥରେ ବିଜୟ ଗର୍ବରେ ହସିଲି । ସେମାନେ ମଣିଷକୁ ଭଗବାନଂକ ଅବତାର ବୋଲି କିପରି ଭାବନ୍ତି କେଜାଣି । ମୁଁ ତାକୁ କିପରି ତାକୁ ଜୀବନ ଦେଇଥାନ୍ତି । ମୁଁ ତ ଡାକ୍ତର ନୁହେଁ... । ମୁଁ ଯେ ଏକ... ।

ଦୀର୍ଘ ପାଂଚଦିନ ଧରି ମୋ ମନ ଭିତରେ ଯେଉଁ ଆଶା ଓ ଲୋଭ ବୃଦ୍ଧି ପାଇ ଚାଲିଥିଲା ତାହା ଏଥର ବଂଧନମୁକ୍ତ ହସ ହସିଲେ ଏବଂ ମୁଁ କଫିନ୍ ଟେକି ଅଂଧାରରେ ଲକ୍ଷ୍ୟ କଲି ଯୁବତୀର ଶବକୁ । ସଦ୍ୟମୃତା ତରୁଣୀର ଶବକୁ ଯଦିଓ ମୁଁ ଅଂଧାରରେ ଦେଖିପାରୁଥିଲି ତେବେ ତା' ଗଳା, କାନ, ନାକ ଓ ବାହୁରେ ଥିବା ଅଳଂକାରର ଚମକକୁ ଠିକ ଦେଖି ପାରିଥିଲି ।

''ହଁ ! ତୁମେ ତାହା ହେଲେ ଏଇ କାମକର ଫକୀର ବାବା'' ।

ଏକ ସ୍ୱର । ମୁଁ ଯେପରି ଅନୁଭବ କଲି, ତାହା ମଣିଷର ସ୍ୱର ନୁହେଁ । ଏକ ଆତ୍ମାର ସ୍ୱର । ଆତ୍ମା... ମାନେ ମୋ ନିଜ ଆତ୍ମାର ସ୍ୱର । ମୁଁ ଯେପରି ମୃତ ଏବଂ ମୋ ଆତ୍ମା ଯେପରି ହସୁଛି । ଏବଂ କହୁଛି ''ତୁମେ ତାହା ହେଲେ ଏଇକାମ କର ।''

''କିଏ ?'' ମୁଁ ସ୍ୱର ଗଂଭୀର କରି ବୁଲିପଡିଲି । ଅଂଧାରରେ ଏକ ଛାଇ ।

ମଣିଷ ନିଶ୍ଚୟ । ପ୍ରେତାତ୍ମାର ସାହାସ ହେବନାହିଁ । ଛାଇ ହସିଲା । ମୁଁ ସେହି ଛାଇର ହସକୁ ଚିହ୍ନିବା ପାଇଁ ଚେଷ୍ଟା କରୁଥିଲି । ସେ ପୁଣି କହିଲା:

"ମୋତେ ଚିହ୍ନିପାରୁନା ଫକୀର ବାବା ! ମୁଁ କିନ୍ତୁ ତୁମକୁ ଠିକ୍ ଚିହ୍ନିଛି । ଏଇ କିଛି କ୍ଷଣ ପୂର୍ବେତ ତୁମକୁ ରାସ୍ତାରୁ ଦେଖି ପଚାରିଥିଲି, ତୁମେ କଣ କରୁଛ ?"

ମୁଁ ସଂଯତ ହେଲି । "ତୁ କଅଣ ଜାଣୁନା ଏ କବ୍ରିସ୍ଥାନ ମଧ୍ୟରେ ଆତ୍ମାମାନଂକୁ ମୁକ୍ତି ଦେବା ପାଇଁ ମୁଁ ଏଠି ବୁଲୁଛି । ତୁ କେଉଁ ସାହାସରେ ଏଠାକୁ ଆସିଛୁ । ଚାଲିଯା... ଚାଲିଯା, ନଚେତ କ୍ଷୁଧିତ ଆତ୍ମାମାନେ ତୋତେ ଶେଷ କରିଦେବେ ।"

ସେ ହସିଲା । କାହିଁକି ସେ ଏପରି ହସୁଛି ? ମୁଁ ବିରକ୍ତ ହେଲି । ଅଂଧାର ମଧ୍ୟରେ ତାକୁ ମୁଁ ଠିକ୍ ଚିହ୍ନିପାରୁ ନଥିଲି । ଏଣେ ଭାବୁଥିଲି ସେ କିପରି ମୋତେ ଚିହ୍ନିଲା । ସେ ହସ ବଂଦ କରି କହିଲା, ମୁଁ ବି ଆତ୍ମାମାନଙ୍କୁ ମୁକ୍ତି ଦିଏ, ତେଣୁ ସେମାନେ ମୋର କିଛି କରିପାରିବେ ନାହିଁ । ଅବଶ୍ୟ ଅନ୍ୟ ଧର୍ମର ଓ ଅନ୍ୟ ସଂପ୍ରଦାୟର ଆତ୍ମାମାନଙ୍କୁ । ହେଲେ ସେଥିରେ ଯାଏ ଆସେ କେତେ ? ଆତ୍ମାତ ଏକ । ମଣିଷତ ଏକ । କେବଳ କେତେକ ଧନର ବଂଧନ ଓ ଆମପରି କେତେକ ବ୍ୟକ୍ତି ବିଶେଷ ତାଂକୁ ପୃଥକ କରି ଗଢି ତୋଳିଛୁ । ନୁହେଁକି ? ସେ କବର ଭିତରୁ ଲକ୍ଷ୍ୟ କଲା । ଏବଂ କଫିନ ଭିତରର ଚମକକୁ ଚାହିଁ କହିଲା, "ସେମାନେ ମୋତେ ବି ଡାକିଥିଲେ, ପାଂଚଦିନ ତଳେ । ତୁମେ ଯେପରି ତାକୁ ଜୀବନ ଦେବାପାଇଁ ଯାଇଥିଲ, ମୁଁ ବି ସେମିତି ତାକୁ ଜୀବନ ଦେବାପାଇଁ ଯାଇଥିଲି ।" ସେ ହସିଲା ।

ମୁଁ ସେହି ଅଂଧାର ମଧ୍ୟରେ ପାଦଗଣି ଗଣି ତା ନିକଟକୁ ଚାଲିଗଲି । ଚିହ୍ନିବାକୁ ଚେଷ୍ଟା କଲି । କିଛିଟା ଚିହ୍ନିଲି । "ଓଃ ! ତୁମେ ତାହା ହେଲେ ପଣ୍ଡିତ ଶିବଦୟାଳ ।"

"ଟିକେ ଡେରିରେ ଚିହ୍ନିଲ ।" ସେ ପୁଣି ହସିଲା ।

"ତୁମେ ଏତେ ହସୁଛ କାହିଁକି ?"

"ହସୁଛି; କାରଣ ହସ ଲାଗୁଛି । ହସ ଲାଗୁଛି ସଂଯୋଗକୁ ଲକ୍ଷ୍ୟ କରି ।" ଏଥର ମୁଁ ବି ହସିଲି । ଯାହା ହେଉ ତୁମେ ଆସିଗଲ ଭଲ ହେଲା । ଦୁହେଁ ଶ୍ରୀଘ୍ର କାମ ଶେଷ କରିପାରିବା । ମୁଁ କବର ଖୋଳି ଖୋଳି ଥକି ପଡିଥିଲି ।

ପାଂଚଦିନ ତଳେ ଏଇ ପଣ୍ଡିତ ଶିବ ଦୟାଲଂକ ସୌମ୍ୟମୂର୍ତ୍ତି ମୋ ଚକ୍ଷୁ ସମ୍ମୁଖରେ ନାଚୁଥିଲା । ଯଥେଷ୍ଟ ଗାଂଭୀର୍ଯ୍ୟ ରକ୍ଷାକରି ସେ ମୋତେ ଥରେ ଚାହିଁଥିଲେ ତାପରେ ନିର୍ଦ୍ଧିଷ୍ଟ ଦୂରତାରେ ଠିଆ ହୋଇ ରୋଗୀଣୀକୁ ପରୀକ୍ଷା କରିଥିଲେ । ଅସ୍ପଷ୍ଟ ମଂତ୍ର ପାଠ ପରେ ନାସ୍ତିବାଣୀ ଶୁଣେଇ ଦେଇ ଚାଲିଯାଇଥିଲେ । ସେମାନେ କିନ୍ତୁ ପଣ୍ଡିତର ମଧ୍ୟ ଯଥେଷ୍ଟ ସେବା କରିଥିଲେ । ଆଜି ଅଂଧାର ମଧ୍ୟରେ ପଣ୍ଡିତ କେତେ ଭିନ୍ନ ଦେଖାଯାଉଛି । ବାଚାଳ ଓ ପାଗଳଂକ ପରି ହସୁଛି । କବ୍ରିସ୍ଥାନ ମଧ୍ୟରେ ଯେପରି ଏକ ପ୍ରେତ ।

ସେ ମୋତେ ହଲେଇ ଦେଲା, "କଅଣ ଭାବୁଛ ଫକୀର ବାବା । କାମ ଶୀଘ୍ର ଶେଷ କର । ମାଲ ଅଧା ହୋଇଯିବ ବୋଲି ଚିନ୍ତା କରୁଛ । ହେଲେ ପାଂଚଦିନ ମୁଁ ବି ଢ଼େର ପ୍ରତୀକ୍ଷା କରିଛି । ଶବ ସହିତ ମୁଁ ବି ଏପର୍ଯ୍ୟନ୍ତ ଥିଲି । ମାଲ୍‌ରେ ମୋର ବି ହକ୍ ଅଛି । ଏକା ଏକା ସବୁ ହଜମ କରି ପାରିବ ନାହିଁ । ଏଥର ମୁଁ ବି ହସିଲି । ସେ ବି ହସିଲା । ଏବଂ କବ୍ରିସ୍ଥାନର ଚତୁର୍ଦ୍ଦିଗରେ ଖେଳେଇ ହୋଇ ରହିଥିବା ଅତୃପ୍ତ ଆଶା କାମନା ମାନେ ଆତ୍ମା ମାନଂକୁ କୁତୁକୁତୁ କଲେ । ଏ ସମସ୍ତ ହସର ପ୍ରତିଧ୍ୱନି ଶୁଭିଲା । ଦୂରରୁ କିଏ ଯେପରି କାଂଦୁଛି । ମୁଁ କାନ ଡେରିଲି । ନା... ପଣ୍ଡିତ ହସୁଛି... କବ୍ରିସ୍ଥାନ ହସୁଛି । ଏବଂ ପ୍ରେତମାନେ ବି ଆମକୁ ପ୍ରେତ ମନେ କରି ହସୁଛନ୍ତି । ମହମବତୀର ଅନ୍ତିମଶିଖା ବି ଥରି ଥରି ହସୁଛି । ତେବେ କିଏ କାଂଦୁଛି । ଏ ଶବ ନୁହେଁତ । ନା... ମୃତ ଶବ କେବେ କିଛି ଅନୁଭବ କରି ପାରେନା... କଂକାଳ କେବେ ହସିପାରେନା, ତେବେ... ! ମୋ ନିଜ ଆତ୍ମା ନୁହେଁ ତ ?

"ପଣ୍ଡିତ... ପଣ୍ଡିତ ଶୁଣୁଛ !" ମୁଁ ପଣ୍ଡିତକୁ ହଲେଇ ଦେଲି "ମୋ ଆତ୍ମା କାଂନ୍ଦୁଛି, ଶୁଣ ଶୁଣ ମୋ ଆତ୍ମା କାଂଦୁଛି ।"

ପଣ୍ଡିତ ଚମକି ପଡିଲା, "ଫକିର ବାବା, ଆତ୍ମା ମୋର ବି କାଂଦୁଛି ।"

ତାପରେ ଦୁହେଁ ଦ୍ରୁତ ଗତିରେ କଫିନକୁ ଟେକି ଆଣିଲୁ ଏବଂ ଶବ ଦେହରୁ ଅଳଂକାର ପ୍ରଭୃତି ଟାଣିଓଟାରି ବାହାର କରି ଆଣିଲୁ । ପଣ୍ଡିତ କହିଲା, ଆମ ଆତ୍ମାତ ଏଇ ଅଂଧାରରେ ବି ଚକ୍ ଚକ୍ କରୁଥିବା ଧାତୁ । ବସ୍ତୁ କଅଣ କେବେ କାଂଦେ । ତା ପାଇଁ କାଂଦି ହୁଏ । ଆମ ଶରୀର ଭିତରେ ଆତ୍ମା ନାହିଁ । ତାହା ମୁକ୍ତ ।

"ତେବେ କିଏ କାନ୍ଦୁଥିଲା ?"

"କେହି ନୁହେଁ... କେବଳ ମନର ଭ୍ରମ । ମନର ଭ୍ରମ । ପବନର ସ୍ୱର । ଜନ୍ତୁଙ୍କ ଚିତ୍କାର ।"

ମୁଁ ଆଶ୍ୱସ୍ତ ହେଲି "ଠିକ୍ କହୁଛ ପଣ୍ଡିତ ଭାଇ, ତୁମେ ଠିକ କହୁଛ ।" ସେ ହସିଲା । ଯେପରି କହିବାକୁ ଚାହୁଁଥିଲା "ତୁମେ ଦୁର୍ବଳ ହୋଇ ପଡିଲ ଏତିକିରେ ? ହଁ ! ଦେଖ ମୁଁ କେତେ ଜାଣେ । ମୋର ଜ୍ଞାନ କେତେ ?"

ସବୁ ଅଳଂକାର ଆମେ ତଳେ ଜମାକଲୁ । ମହମବତୀ ଧପ୍ କରି ଲିଭିଗଲା । ପଣ୍ଡିତ ଓ ମୁଁ ଅଳଂକାର ନିକଟରେ ବସି ଭାଗ କରିବା ଆରଂଭ କଲୁ । ଚୁଡି, ବାହୁର ବଂଧନୀ, କାନଫୁଲ ପ୍ରଭୃତି ଠିକ୍ ରୂପେ ଭାଗ ହୋଇଗଲା । ଶେଷରେ ଗଳାର ହାର ପାଇଁ ପ୍ରଶ୍ନ ଉଠିଲା । ପଣ୍ଡିତ କହିଲା, "ଦେଖ ଫକୀର ବାବା, ମୋର ଝିଅ ବାହା ହେବ ଦୁଇ ତିନି ମାସ ପରେ । ମୋତେ ଦୟାକର । ଏ ହାରଟି ମୋତେ ଦେଇଦିଅ । ତା ବିବାହରେ ଦେବି । ନଚେତ୍ ତୁମେ ଜାଣ, ବିବାହ ଭାଂଗିଯିବ । ମୋତେ ଦୟାକର ।" ତାର କାକୁତିମିନତି ଦେଖି ମୋର ଦୟା ହେଲା । ହେଲେ ଜୀନତ୍ ବେଗମ୍‌ର ଯୌବନକୁ ମନଭରି ଉପଭୋଗ କରିବା ପାଇଁ ହାରଟି ଯଥେଷ୍ଟ । ପ୍ରତିବାଦ

କଲି ତେଣୁ ପଣ୍ଡିତ କଥାରେ, ''ନା... ଏହା ହୋଇ ନପାରେ, ତୁମ ଝିଅ ବିବାହ ପାଇଁ ମୁଁ ଏ ହାର ଦେଇ ପାରିବିନି । ତୁମେ ଏଇଟିକୁ ମୋତେ ଦେଇଦିଅ ।''

ପଣ୍ଡିତର ଗଳାରୁଦ୍ଧ ହୋଇଗଲା । ସେ କୋହଭରା କଂଠରେ କହିଲା ''ଫକୀର ବାବା, ମୁଁ ଖୁବ ଗରୀବ । ମୋ ଝିଅ ବାହା ହୋଇ ନପାରିଲେ, ସେ ବେଶ୍ୟା ହୋଇଯିବ । ପ୍ରତ୍ୟେକ ତାର ଯୌବନକୁ ଉପଭୋଗ କରିବେ । ମୁଁ ମରିଯିବି । ମୋତେ ଦୟାକର ।

ମୁଁ ଚିନ୍ତା କଲି, ଜୀନତ୍ ବେଗମ ଅପେକ୍ଷା ଯଦି ପଣ୍ଡିତର ଝିଅର ଯୌବନକୁ ଏଇ ହାର ପ୍ରତି ବଦଳରେ ଉପଭୋଗ କରାଯାଏ, ତେବେ ! ମୁଁ ହସିଲି, ''ଠିକ ଅଛି ପଣ୍ଡିତ ଭାଇ ଏ ହାର ତୁମେ ନେଇଯାଅ । ମୁଁ ତୁମକୁ ଦେଇ ଦେଲି । ଯାଅ ତୁମେ ନେଇଯାଅ ।''

ସବୁ ଭାଗ ଶେଷ ହୋଇଗଲା । ତାପରେ କଫିନକୁ କବର ଭିତରେ ରଖିବା କଥା । ହଠାତ୍ ପଣ୍ଡିତ ଚମକି ପଡିଲା । ''ଆରେ ! ଏ ଶାଲ ଓ ଶାଢୀକୁ ଯେ ଛାଡିଦେଲେ ।'' ସେ ସଂଗେ ସଂଗେ କାଂଧରେ ପକେଇ ଯୁବତୀର ଶବଟିକୁ ନଗ୍ନ କରିଦେଲା । ତୃପ୍ତିରେ ହସି ହସି କହିଲା, ''ଜାଣ ଫକୀର ବାବା, ମୋ ବୁଢୀ ମା' ଗତ ଶୀତରେ ମରିଯାଇଥାଆନ୍ତା । ଭାବିଥିଲି ଏଥର ଶୀତରେ ଗୋଟିଏ କିଛି ଗରମ ଜିନିଷ କିଣିବି । କିନ୍ତୁ ଆଉ କାହିଁକି କିଣିବି ? ଏଇଟା ଖୁବ ଦାମିକା ହେବ । ମୋ ମା' କେତେ ଖୁସୀ ହେବ । ଆଉ ଝିଅର ବିବାହ ପାଇଁ ଏ ଶାଢୀ । ଏଥର ଆଉ କିଛି ଚିନ୍ତା ନାହିଁ ।''

ମୁଁ କିନ୍ତୁ କିଛି ଶୁଣିପାରୁ ନଥିଲି । ମୁଁ ଦେଖୁଥିଲି, ମୋ ଚକ୍ଷୁ ସମ୍ମୁଖରେ ଜୀନତ ବେଗମ୍ ଓ ପଣ୍ଡିତର ଝିଅ ନଗ୍ନ ହୋଇ ନାଚୁଥିଲେ ଏବଂ ଉକ୍ତ ଶବଟି ଆକାଶରେ ଉଡୁ ଉଡୁ ହସୁଥିଲା ।

ପଣ୍ଡିତ କହିଲା, ''ଫକୀର ବାବା, ଏହିପରି ପ୍ରତ୍ୟେକ ଦିନ ଲୋକ ମରୁଥାନ୍ତେ ଏବଂ ଏହିପରି ପ୍ରତ୍ୟେକ ଦିନ ଯଦି ଆମେ କିଛି କିଛି ପାଉଥାନ୍ତେ ତାହାହେଲେ ଆଉ କାମ ପାଇଁ ଚିନ୍ତା କାହିଁକି କରନ୍ତେ, ନା... କଅଣ କହୁଛ ?''

ମୁଁ ହସିଲି । ତୁମେ ଠିକ କହୁଛ ପଣ୍ଡିତ ଭାଇ... ତୁମେ ଠିକ କହୁଛ । ହେଲେ କିଏ କହୁଛି ମଣିଷ ମରୁନାହାନ୍ତି ? ମଣିଷ ମରୁଛନ୍ତି ହେଲେ... । ଜାଣ ଏ ଚାରିଦିନ ଭିତରେ ମୁଁ ଆଠୋଟି କବର ଖୋଳିଛି । ଏବଂ ଦେଖିଛି କୁଷ୍ଠରୋଗୀ, ବସନ୍ତ ରୋଗୀ, ଭିଖାରୀ, ମୂଲିଆ, ଏହିପରି । କାହା କବର ଭିତରୁ ମୋତେ ମିଳିଛି ଧାର କରି ଶୁଝି ପାରିନଥିବାର ପ୍ରମାଣ ପତ୍ର ଓ କାହା କବର ଭିତରୁ ମୋତେ ମିଳିଛି ବିଷପାତ୍ର ।''

ପଣ୍ଡିତ ମୋ କଥା ଶୁଣୁନଥିଲା ପରି ମନେ ହେଲା । ସେ ଅତି ନିଶ୍ଚିନ୍ତରେ ଅଂଳକାର ଶାଢୀ ଓ ଶାଲକୁ ବାଂଧି ପୁଟୁଳୀ କରି କାଂଧରେ ପକାଇଲା । ତାପରେ ମାଟି ପକେଇବା କଥା । ସେଇଟା ପଣ୍ଡିତର କାମ । ସେ କୋଦାଳରେ ମାଟି ନେଇ

କବର ପୂର୍ଣ୍ଣ କରିବାକୁ ଆରଂଭ କଲା ସମୟରେ କବ୍ରିସ୍ଥାନର ଦ୍ୱାରଦେଶରେ ଏକ ଘୋଡାଗାଡି ଅଟକିଗଲା । ଆମେ କାମ ବଂଦ କରି ଦୂରକୁ... ଆହୁରି ଦୂରକୁ... ଅଂଧାରରୁ ଘଂଚ ଅଧାଂର ମଧ୍ୟକୁ ଘୁଂଚିଗଲୁ । ତାପରେ ଏକ କଳାଛାଇ ଧୀରପାଦରେ ଉକ୍ତ କବର ନିକଟକୁ ଚାଲି ଆସିଲା । ଅଂଧାର ମଧ୍ୟରେ ରହି ଅସ୍ପଷ୍ଟ ଆଲୋକରେ ଆମେ ଉକ୍ତ ଆଗନ୍ତୁକକୁ ଚିହ୍ନି ପାରିଲୁ । ତାର କଳା ପରିଧାନରୁ । ପଣ୍ଡିତ ଅସ୍ପଷ୍ଟ ସ୍ୱରରେ କହିଲା । ''ଆରେ ଇଏତ ସେହି ପାଦ୍ରୀ ସାହେବ । ଯାହାକୁ ସେମାନେ ଶେଷ ମୂହୂର୍ତ୍ତରେ ଡାକି ଆଣିଥିଲେ ।''

''ଏବଂ ସେବି ତାକୁ ବଂଚେଇ ପାରିନଥିଲା ।''

''ମୃତ୍ୟୁର ପୂର୍ବ ମୂହୂର୍ତ୍ତରେ କେହି କୌବେ କାହାକୁ ଜୀବନ ଦାନ ଦେଇ ପାରିଲାଣି ? ହେଲେ ଏବେ ଇଏ ଏଠାରେ କାହିଁକି ? ଆମ ପରି, ଆମରି ଉଦ୍ଦେଶ୍ୟ ନେଇ ନୁହେଁତ ?''

''ହୋଇପାରେ । ହେଲେ ତାକୁ ନିରାଶ ହେବାକୁ ପଡିବ ।''

ଆରେ ଏ କଅଣ ? ଆମେ ଦୁହେଁ ଚମକି ପଡିଲୁ । ସେ ଓ ତାର ଆଉ ଦୁଇଟି ସଂଗୀ କବର ମଧ୍ୟରୁ କଫିନ ବାହାର କରି ଆଣିଲେ ଏବଂ କଫିନ ଖୋଲି ଶବକୁ ଟେକି ନେଇଗଲେ ଘୋଡା ଗାଡି ଭିତରକୁ । ତାପରେ ଆଉ ଦୁଇଜଣ କବର ପୋତି ପକେଇଲେ । କିଛି କ୍ଷଣ ମଧ୍ୟରେ ଘୋଡା ଗାଡିଟି ଚାଲିଗଲା । ଆମେ ଆଶ୍ଚର୍ଯ୍ୟରେ ବସିଥାଉଁ । ପଣ୍ଡିତ ପଚାରିଲା ''ଫକୀର ବାବା, ଏ ପାଦ୍ରୀ ଶବକୁ ନେଇ କଅଣ କରିବ ?''

''ମୁଁ କିପରି କହିପାରିବି ? ତେବେ ଯେତେଦୂର ସଂଭବ, ତାକୁ ସଢେଇ କଂକାଳକୁ ବିକିବ ।

''ଛି ! ଏତେ ଖରାପ କାମ !''

''ଆମେ ଆଉ କେଉଁ ଭଲ କାମ କରୁଛୁ କି ?''ମୁଁ ହସିଲି । ପଣ୍ଡିତ ହସିଲା, ପ୍ରଶ୍ନ କଲା, ''ତୁମେ ପିଅ''?

ମୁଁ ମୁଣ୍ଡ ହଲେଇ ସ୍ୱୀକାର କଲି । ସେ କହିଲା, ''ତେବେ ଚାଲ । ଏମିତିକା ଗୋଟେ ଯାଗାକୁ ନେବିଯେ, କେହି ଜାଣି ପାରିବେ ନାହିଁ ଯେ ଏକ ଫକୀର ଓ ଏକ ପଣ୍ଡିତ ମଦଭାଟିରେ ମଦ ପିଉଛନ୍ତି ଦୁଷ୍ଟ ଆତ୍ମାମାନଂକୁ ନଷ୍ଟକରିବା ପରିବର୍ତ୍ତେ ।''

''ତେବେ ଚାଲ ।'' ମୁଁ କହିଲି ଓ ଉଠି ଠିଆ ହେଲି ।

'' ସେଇ ଛକ ବୁଲିଲେ ଆମେ ଭାଟିରେ ପହଂଚିଯିବା ।'' ପଣ୍ଡିତ କହିଲା । ହଠାତ କିଏ ଦ୍ରୁତ ଗତିରେ ଦୌଡି ଦୌଡି ଆସି ମୋ ସହିତ ଧକ୍କା ଖାଇଲା । ଏବଂ ପରମୂହୂର୍ତ୍ତରେ ମୋତେ ଚିହ୍ନିପାରି ଟିକେ ଦୂରକୁ ଟାଣି ନେଇ କହିଲା, ''ଫକୀର ବାବା ମୋତେ ଟିକେ ସାହାଯ୍ୟ କର । ମୋ ସହିତ କବ୍ରିସ୍ଥାନ ଚାଲଟିକେ । ମୋତେ ବଡ ଭୟ ଲାଗୁଛି ଏକା ା ଯିବା ପାଇଁ ।'' ମୁଁ ତାକୁ ପ୍ରଶ୍ନବାଚୀ ଦୃଷ୍ଟିରେ ଚାହିଁଲି ।

ସେ କହିଲା, ''ସେମାନେ ସବୁ ଅଳଂକାର ତାକୁ ପିନ୍ଧେଇ ଦେଇ କବର ଦେଇଦେଲେ । ଘରେ ଆଉ କିଛି ନାହିଁ । ତେଣୁ ଚାଲ କବର ଖୋଳି ସବୁ ଅଳଂକାର ଆଣିଆସିବା । ତୁମକୁ ମୁଁ ଅଧାଦେବି । ଚାଲ ଫକୀର ବାବା ।''

ମୁଁ ମନାକଲି, ''ନା... ସେ କାମ ମୁଁ କରିପାରିବି ନାହିଁ । ଆତ୍ମାମାନେ ନାରାଜ ହେବେ । ତୁମେ ଏକା ଯାଅ ।''

ସେ ମୋତେ ପ୍ରଣାମ କରି ଚାଲିଗଲା । ଆମେ ଦ୍ରୁତ ଗତିରେ ଚାଲିବା ଆରଂଭ କଲୁ । ପଣ୍ଡିତ ପଚାରିଲା, ''ସେ କଅଣ କହୁଥିଲା ?'' ମୁଁ ଉତ୍ତର ଦେଲି । ପଣ୍ଡିତ ହସିଲା, ''କିଏ ସେ ।''

ମୁଁ ଟିକ୍କେ ନୀରବ ହେଲି । ତାଙ୍ପରେ କହିଲି, ''ମୃତା ସ୍ତ୍ରୀର ସ୍ୱାମୀ ।''

ପଣ୍ଡିତ ଚମକି ପଡି ମୋତେ ଚାହିଁଲା । ପର ମୁହୂର୍ତ୍ତରେ ଜୋରରେ ହସି ଉଠି ମୋତେ ଜାବୁଡି ଧର ସାମ୍ନା ମଦ ଭାଟି ଭିତରକୁ ପଶିଗଲା ।

□ *ଉତ୍କଳ କି ଶ୍ରେଷ୍ଠ କାହାନିୟାଁ*
*ହିନ୍ଦୀ ଗଳ୍ପାନୁବାଦ ସଂକଳନରେ*
*(୧୯୮୫) ଏ ଗଳ୍ପ ଅନ୍ତର୍ଭୁକ୍ତ ।*

■■■



# ଅଗନା ଅଗନି ବନସ୍ତ ଓ ବନାନୀ

ସକାଳେ ଏଠି ପହଞ୍ଚି ଶୁଣିଛି, ଆଜି ତୁମର ବିବାହ ।

ଟେବୁଲ ଉପରେ ଦ୍ୱିପ୍ରହର ଟ୍ରେନର ଟିକେଟ ପଡିଛି । ଦ୍ୱିପ୍ରହର ଅତିକ୍ରାନ୍ତ, ଟ୍ରେନ ଅନେକ ବେଳୁ ଯାଇ ସାରିଥିବ, ଗାଁରେ ବାପା, ମା, ଭାଇ ଭଉଣୀ ଓ ଅନ୍ୟାନ୍ୟ ପରିବାର ବର୍ଗ ଅପେକ୍ଷା କରି ଚାହିଁଥିବେ । ଅନେକ ବଂଧୁ ଓ ସଂପର୍କୀୟ ମୋତେ ରିସିଭ କରିବା ପାଇଁ ଷ୍ଟେସନକୁ ମଧ୍ୟ ଆସିଥିବେ, ଦୀର୍ଘ ଏଗାର ମାସ ପରେ ଏପ୍ରକାର ଅସ୍ଥିରତା ତ ସ୍ୱାଭାବିକ ।

ଟ୍ରେନଟିକେଟ ନିକଟରେ ଦିଲ୍ଲୀରୁ ରାତିଦଶରେ ଛାଡୁଥିବା ପ୍ଲେନ୍‌ର ଟିକେଟ ବି ପଡିଛି । ଏଇ କିଛି କ୍ଷଣ ହେବ ସୁକାନ୍ତ ଦେଇ ଯାଇଛି । ଦିଲ୍ଲୀରେ ପହଞ୍ଚି ସିଧା ଲଣ୍ଡନ । ଯେଉଁଠାରୁ ଏଇ କିଛି ଘଣ୍ଟା ହେବ ଫେରିଛି । ଯେଉଁଠି ଜାହିଦା ଓ ମେରିଆ ମୋତେ ଅପେକ୍ଷା କରି ରହିଥିବେ । ହେନେରୀ ମୋ କେବଲ ପାଇ ସାରିଥିବ ଏବଂ ଏରୋଡ୍ରମକୁ ନିଶ୍ଚୟ ଆସିବ । ହଁ, ମୁଁ ଆଜିହିଁ ଫେରିଯିବି !

ଲଗେଜ୍ ସେହିପରି ବନ୍ଧା ହୋଇ ପଡିଛି । ସୁକାନ୍ତ ଅନେକ ଚେଷ୍ଟା କରିଥିଲା ମୋତେ ବୁଝାଇବା ପାଇଁ, ଯୁକ୍ତି ମଧ୍ୟ ଅନେକ କରିଥିଲା, ହେଲେ ତମେ ତ ଜାଣ ମୁଁ ଥରେ ଯାହା ନିଷ୍ପତ୍ତି କରେ, ତାହା କାହାରି ଅନୁନୟ, ଅନୁରୋଧରେ କେବେ ବଦଳିଯାଏ ନାହିଁ । ଏପରିକି ତମେ ବି ଅନେକ ଚେଷ୍ଟାକରି ମୋ ନିଷ୍ପତ୍ତିକୁ ପରିବର୍ତ୍ତନ କରି ପାରିନାହଁ, ସୁକାନ୍ତ ଦୁଃଖିତ ହୋଇ ଚାଲିଯିବାପରେ ମୁଁ ବ୍ରିଫ୍‌କେଶରୁ ସ୍କଚ ବୋତଲଟା ବାହାର କରିଛି ।

ସ୍କଚ ବୋତଲଟା ପ୍ରାୟ ଅଧା ହୋଇ ଗଲାଣି, ତଥାପି ବିତୃଷ୍ଣା । ତୃଷ୍ଣା ଆଦିମ ଯୁଗର । ତୃଷ୍ଣା କିଛି ପାଇ ହଜାଇ ଦେଇ ଥିବାର, ତୃଷ୍ଣା ନିଜକୁ ଶେଷ କରିଦେବାର ।ତୁମେ ଶୁଣିଲେ ହୁଏତ ଆଶ୍ଚର୍ଯ୍ୟ ହେବ, ଆଜିକାଲି ମୁଁ ଡ୍ରିଙ୍କ୍ କରୁଛି । ମୁଁ ଆଶ୍ଚର୍ଯ୍ୟ ହୋଇଛି, ସୁକାନ୍ତ ଏବେବି ଅବିବାହିତ । କାହିଁକି ଜାଣ ? ମୁଁ ବି ଜାଣି ପାରିନଥିଲି । ଆଜି ଜାଣିଲି ଏବଂ ଜାଣିଲାପରେ ଆଶ୍ଚର୍ଯ୍ୟ ହେବାଟା ସ୍ୱାଭାବିକ ଅନ୍ତତଃ ମୋ ପକ୍ଷରେ ।

ସୁକାନ୍ତ ମୋର ବଂଧୁ, ତେଣୁ ସେ ନିଜ କର୍ତ୍ତବ୍ୟ ପାଳନରେ କେବେ ଅବହେଳା କରିନାହିଁ, ତାକୁ ମୁଁ ସମ୍ମାନ କରେ, ତାର ବଂଧୁତା ମୋ ପାଇଁ ଅବଶ୍ୟ ଗର୍ବର ବିଷୟ । ଆଉ ତୁମେ ?

ତୁମ ବରାଦ ମୁତାବକ ଓ ମୋ ମନ ମୁତାବକ କିଛି ଉପହାର, କିଛି ଲଣ୍ଡନର ସ୍ମୃତି, କିଛିଟା ବାନ୍ଧିରଖିବାର ଉପକ୍ରମ ନେଇ ଆସିଥିଲି କେବଳ ତୁମପାଇଁ । ସେଗୁଡାକ ସେହିପରି ବଂଧାହୋଇ ପଡିଛି, ଜାହିଦା ନିଜ ହାତରେ ବାଂଧିଥିଲା, ମାରିଆର ପସଂଦକୁ ମୁଁ ସମ୍ମାନ କରେ । ତେଣୁ ତିନିଦିନ ତଳେ ତା ସହିତ 'ଶପିଙ୍ଗ' କଲାବେଳେ ତାକୁ ତୁମର ପସନ୍ଦ କହିଥିଲି, ଖୁବ୍ ଯତ୍ନରେ ଏବେବି ସେ ଗୁଡାକ ସେହି ଯତ୍ନତା'ର ବୋଝନେଇ ପଡିରହିଛି । ସୁକାନ୍ତ ପ୍ରଥମେ ଜିଦ୍ କରିଥିଲା ଖୋଲିବାକୁ । ମୁଁ ମନାକରିଥିଲି, ଭବିଷ୍ୟତ ଯେତେବେଳେ ଅତୀତକୁ ସମ୍ମାନ ନକରି ବର୍ତ୍ତମାନ ମଧ୍ୟରେ ଲୀନ ହୋଇଯାଇଛି, ସେତେବେଳେ ନିଜକୁ ନିଜ ଚତୁଃପାଶ୍ୱର ଏହି ବାଦାବରଣକୁ ବର୍ତ୍ତମାନର ଏଇକ୍ଷଣମାନଙ୍କୁ ଭୁଲି ଯିବା ହିଁ ଶ୍ରେୟସ୍କର ।

ଏଇ ପରକ୍ଷଣରେ ମୋର ମନେ ପଡୁଛି ଗତ କିଛି ବର୍ଷ ତଳର କଥା, ତୁମର ବି ମନେଥିବ । ଭୁଲିଯାଇଥିବାର ଛଳନା କରି ତୁମେ ନିଜକୁ ପ୍ରତାରଣା କରିପାର, ନିଜ ଭାବୀ ସ୍ୱାମୀକୁ ଠକିପାର, ହେଲେ ମୋତେ ଠକି ପାରିବ ନାହିଁ । ମୁଁ ଜାଣେ ଅତୀତକୁ ଏତେଶିଘ୍ର ଭୁଲି ହୁଏନାହିଁ ।

ସେ ବର୍ଷ ଖରା ଛୁଟିରେ କୌଣସି ଏକ ଦିନରେ ବଂଧୁଙ୍କ ସହ କୌଣସି ଏକ ଶୈଳନିବାସକୁ ଯାଇଥିଲି, ତୁମ ସହ ପରିଚୟ ସେତେ ପୁରୁଣା ହୋଇନଥିଲା, ମନରେ ଜନ୍ମ କରିଥିଲା ଭବିଷ୍ୟତର ସ୍ୱପ୍ନ । ଖୁବ୍ ଫୁର୍ତ୍ତୀ ଲାଗୁଥିଲା । କିଛି କରି ଦେଖାଇବା ପାଇଁ ମନରେ ଆଗ୍ରହ ଥିଲା, ତୁମକୁ ଦେଖିବା ପାଇଁ ତୁମକୁ ଫୋନ କରିବା ପାଇଁ ତୁମ ସହ କଥାହେବା ପାଇଁ ବାରମ୍ବାର ଇଛା ହେଉଥିଲା । ଏବଂ ରାତିରେ ସ୍ୱପ୍ନ ବି ପ୍ରଚୁର ଦେଖୁଥିଲି, ତୁମ ମନର ଅଗନା ଅଗନି ବନସ୍ତ ମଧ୍ୟରେ ମୁଁ ରାତିରେ ଶୋଇ ଶୋଇ ନିଜକୁ ଖୋଜୁଥିଲି, ସେଠି ହଜିଯିବା ପାଇଁ ଖୁବ୍ ଭଲ ଲାଗୁଥିଲା ।

ଯାତ୍ରାର ପୂର୍ବଦିନ ତୁମ ସହ ସଂଧ୍ୟାରେ ସେଇ ଅଭୁଲା କ୍ଷଣରେ ଯେଉଁସାକ୍ଷାତ ଏବଂ ମୋର ପ୍ରଶ୍ନର ଉତ୍ତରରେ ତୁମର ସେଇଛୋଟ ଶବ୍ଦ ''ମୁଁ କଅଣ କହିବି'' ଯାହା ଭଲ ଲାଗିବ ଛୋଟ ଦେଖି ନେଇ ଆସିବ''ର ଆପତ୍ତିତ୍ୱକୁ ନେଇ ମୁଁ ପରଦିନ ଯାତ୍ରା ଆରଂଭ କରିଥିଲି ।

କୌଣସି ମାଧ୍ୟମ ନେଇ ସୃଷ୍ଟି ହୋଇଥିବା ଘନିଷ୍ଠତାକୁ ମୁଁ ଘୃଣା କରେ, ତଥାପି ସେଥର ଯାତ୍ରାରୁ ଫେରିଲାପରେ, ଆଣିଥିବା ଉପହାର ଏକ ମାଧ୍ୟମ ହୋଇ ଆମ ମଧ୍ୟରେ ଏକ ଯୋଗସୂତ୍ର ରୂପେ ଘନିଷ୍ଠତା ପରିପକ୍ୱତା ଆଣିଥିଲା, ଏଥର କିନ୍ତୁ ଏଇ ଉପହାର ନିଶ୍ଚୟ ବ୍ୟର୍ଥପ୍ରେମିକପରି ଅଶ୍ରୁପାତ କରିବେ, ଏଗୁଡାକ କାହା ହାତରେ ଟେକିଦେବି ବୁଝିପାରୁନାହିଁ । ଜାହିଦା, ଅଥବା ମାରିଆ, କାହାକୁ ?

ଲଣ୍ଡନରେ ଥିଲାବେଳେ ପ୍ରତ୍ୟେକ ଦିନ ବାରରେ ରେଷ୍ଟୁରେଣ୍ଟରେ, ରିଡିଂରୁମରେ, ଜାହିଦା, ମାରିଆ, ରର୍ବଟ ଅଥବା ହେନେରୀ ସହିତ ବୁଲିବା ବେଳେ ମୋର ହଠାତ୍ ମନେ ପଡିଯାଏ ତୁମ ଘର ନିକଟରେ ଥିବା ସେହି ଛୋଟ ପାର୍କଟିର କଥା । ସେଇ ମଲ୍ଲୀ ଗଛଟିର କଥା ଏବଂ ସେଇ ଭଂଗା ସିମେଣ୍ଟ ବେଞ୍ଚ ଓ ତା ସାମ୍ନାରେ ଥିବା ଭଂଗା ପାଚେରୀ ଓ ପାଚେରୀ ଆରପଟ ରାସ୍ତା କଥା, ସେଇ ପାର୍କର ବାୟୁମଣ୍ଡଳରେ ଆମର (ବା କହିପାରେ ମୋର) ସ୍ୱପ୍ନ ଆଶା ଓ ଭବିଷ୍ୟତ କଳ୍ପନା ନିଶ୍ଚୟ ଗୁମୁରୀ ଗୁମୁରୀ କାନ୍ଦୁଥିବ । ଆଜି ଖୁବ ଇଛା ହେଉଥିଲା ସେହି ପାର୍କକୁ ଯାଇ ସେହି ଭଂଗା ବେଞ୍ଚରେ ବସି ତୁମର ଅନୁପସ୍ଥିତି ଅନୁଭବ କରି ଅତୀତରେ ହଜିଯାଇଥିବା କ୍ଷତମାନକୁ ଉପଭୋଗ କରିବା ପାଇଁ । କିନ୍ତୁ ସୁକାନ୍ତ କହିଲା ସେ ପାର୍କ ଏବେ ଅସ୍ତିତ୍ୱହୀନ ହୋଇ ପଡିଛି । ସେଠି ସରକାରୀ ବଂଗଳାର ଭିତ୍ତିପ୍ରସ୍ତର ସ୍ଥାପନ କରାଯାଇ ସାରିଲାଣି ।

ତୁମ ସହ ମୋ ଜୀବନର ପ୍ରଥମ ପ୍ରେମର କାହାଣୀକୁ ମନ ଭିତରେ ସାଇତି ରଖିବାକୁ ଅନେକ ଚେଷ୍ଟା କରିଥିଲେ ମଧ୍ୟ ଅନେକାଂଶ ଭୁଲିଗଲିଣି । ତା ମାନେ ନୁହେଁ ଯେ ସମୟର ପ୍ରଭାବରେ ତୁମକୁ ବି ଭୁଲିଯିବି । ତୁମେ ହୁଏତ ଭୁଲିଯାଇପାର, ହେଲେ ବନାନୀ ତୁମେ ହିଁତ ମୋତେ ଦିନେ ଆଖ୍ୟା ଦେଇଥିଲ ସେଣ୍ଟିମେଣ୍ଟାଲ ।

ତୁମେ ପ୍ରଥମେ ବହୁତ ଭୟ କରୁଥିଲ, ମୋର ଠିକ୍ ମନେଅଛି । ମୁଁ କିନ୍ତୁ କାହାକୁ ଭୟ କରୁନଥିଲି । କାହିଁକି କାହାକୁ ଭୟ କରାଯିବ ? ତାପରେ ଅନେକ ଦିନ ପରେ ଯେତେବେଳେ ତୁମ ମନରେ ସମର୍ପଣର ଭାବନା ଜନ୍ମ ହେଲା, ସେତେବେଳେ, ଏବେ ବି ସ୍ପଷ୍ଟ ମନେ ଅଛି, ତୁମେ ସାମାଜିକ ବନ୍ଧନ ଓ ପରିବାରର ରକ୍ଷଣଶୀଳତାର ବନ୍ଧନକୁ ନିଜ ଭବିଷ୍ୟତକୁ ମୋ ଭବିଷ୍ୟତ ସହ ମିଶେଇ ଏକ କରିବା ଉଦ୍ଦେଶ୍ୟରେ ଛିଣ୍ଡାଇ ଦେବାକୁ ପ୍ରସ୍ତୁତ ହୋଇ ପଡିଲ । ଏବଂ ନିଜ ସାମାଜିକ ସ୍ତରକୁ ସମ୍ମାନିତ କରିବା ଲକ୍ଷ୍ୟନେଇ ଭବିଷ୍ୟତରେ ମୋ ବିରୁଦ୍ଧରେ ତୁମକୁ କୌଣସି ପ୍ରକାରର ଆପତ୍ତି ଅଭିଯୋଗ କରିବାକୁ ସୁଯୋଗ ନଦେବା ଚେଷ୍ଟାରେ, ଭବିଷ୍ୟତକୁ ସୁନ୍ଦର କରିଗଢିବା ଉଦ୍ଦେଶ୍ୟରେ ମୁଁ ଆସିଲି ଲଣ୍ଡନ । ସେତେବେଳେ ମନରେ ଥିଲା ଦମ୍ଭ ତୁମକୁ ପାଇବାର କାମନା, ତୁମର ସାନ୍ନିଧ ବି ପ୍ରଚୁର ପ୍ରେରଣା ଦେଇଥିଲା । ଯେତିକି ସାନ୍ନିଧ ତୁମର ମୁଁ ପାଇଥିଲି ସେତିକି ହୁଏତ ଚିରଦିନ ମୋ ପାଇଁ ଏକ ସୁନ୍ଦର ସୁବାସିତ ପୃଷ୍ଠା ହୋଇ ରହିବ ।

କୌଣସି ଧାରାବାହିକ କାହାଣୀର କ୍ରମଶଃ ପରି ତୁମେ ଚିରଦିନ ମୋ ପାଇଁ କ୍ରମଶଃ ହିଁ ହୋଇ ରହିଗଲ, ବର୍ତ୍ତମାନ ସମାପ୍ତି ଏକ ରହସ୍ୟ ।

ହୁଏତ ତୁମେ ଜାଣିପାରିବ ନାହିଁ କିମ୍ବା ଜାଣିବାର ସୁଯୋଗ ବି ପାଇବ ନାହିଁ, ଅନ୍ୟାର୍ଥରେ ମୁଁ ତୁମକୁ ଜାଣିବାର ସୁଯୋଗ ହିଁ ଦେବି ନାହିଁ । ମୋର ଏଇ ଏଠାକୁ ଆସିବା ଏବଂ ଅଚାନକ ଚାଲିଯିବାର ସମ୍ବାଦକୁ ବିଶ୍ଳେଷଣ କରି ମୋର ଭୀରୁତାର ପରିଚୟ ପାଇବା ପାଇଁ ।

ଜାହିଦା ଓ ମେରିଆ ମୋତେ ହଠାତ୍ ଭଲପାଇ ବସିଥିଲେ, ଯେପରି ମୁଁ ହଠାତ୍ ତୁମକୁ ଭଲ ପାଇ ବସିଥିଲି । ଜାହିଦାର ବାପା ଜଣେ ତେଲବ୍ୟବସାୟୀ ଏବଂ ଜାହିଦା ବିଶ୍ୱବିଦ୍ୟାଳୟର ଏକ ଛାତ୍ରୀ । ମେରୀଆ ଏକ ମଡେଲ । ଦୁହିଁଙ୍କ ସହ ପରିଚୟ ପାଇଁ ହେନେରୀ ହିଁ ଦାୟୀ । ସାମାନ୍ୟ ପରିଚୟ ପରେ ଏକ ସଂଗେ ସାଂଧ୍ୟଭ୍ରମଣ ଏବଂ ପରେ ପରେ ହୋଟେଲରେ ଡ୍ୟାନସ୍ ଏବଂ ବାର୍‌ରେ ଡ୍ରିଙ୍କ । ମୋପରି ଏକାନ୍ତ ବାସୀ ପାଇଁ ଏତିକି ହିଁ ଯଥେଷ୍ଟ ଥିଲା, କିନ୍ତୁ ହଠାତ୍ ମୁଁ ଆଶ୍ଚର୍ଯ୍ୟ ହୋଇଥିଲି, ସେମାନେ ଥର ଥର କରି ମୋତେ ଆପ୍ରୋଚ କରିଥିଲେ । ଯେପରି ମୁଁ ତୁମକୁ ଆପ୍ରୋଚ କରିଥିଲି ।

ମୁଁ ହୁଏତ ସେତେବେଳେ ସେମାନଙ୍କର କଥାରେ ଯୌବନରେ ନିଜକୁ ପରାଜିତ କରି ଗୌରବାନ୍ୱିତ ମନେ କରିଥାନ୍ତି, ଯଦି ତୁମ ଚିଠି ପ୍ରତିଦିନ ପାଉନଥାନ୍ତି, ତୁମ ଚିଠି ପ୍ରତିଦିନ ନୂତନ ଆଶା ସହ ଭବିଷ୍ୟତକୁ ଆଖିବନ୍ଦ କରି ପ୍ରକୃତ ଲକ୍ଷ୍ୟରେ ଆଗେଇ ଯିବାର ସନ୍ଦେଶ ନେଇ ପହଞ୍ଚୁଥିଲା । ତୁମର ସେଇଚିଠି ପାଇଁ ଅନ୍ତତଃ ଧନ୍ୟବାଦ ନଦେଇ ରହିପାରୁନାହିଁ । କାରଣ ସେଇ ଚିଠି ଗୁଡିକ ପାଇଁ ଆଜି ମୁଁ ଲକ୍ଷ୍ୟରେ ପହଞ୍ଚି ପାରିଛି । ଏବଂ ସମାଜରେ ମନୋନୀତ ଆସନ ବି ଗ୍ରହଣ କରି ପାରିଛି ।

ସେମାନେ ମୋତେ ପ୍ରଣୟଭରା ଦୃଷ୍ଟିରେ ଆମନ୍ତ୍ରଣ ଜଣେଇ ଉତ୍ତର ଆଶାରେ ଠିଆ ହୋଇଥାନ୍ତି, ଥର ଥର କରି ଜାହିଦା ଓ ମେରିଆକୁ ତୁମ ଫଟୋ ବି ଦେଖାଇଛି । ସେମାନେ ଭଦ୍ର ଏବଂ ସଭ୍ୟ । ତାପରେ ମୋତେ ଶୁଭକାମନା ଜଣେଇ ମୋର ମଙ୍ଗଳ କାମନା କରିଥିଲେ ସେମାନେ । କିଛିଦିନ ପରେ ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଚିଠି ଅନିୟମିତ ହୋଇଗଲା ଏବଂ ଧୀରେ ଧୀରେ ଲକ୍ଷ୍ୟ ନିକଟରେ ପହଞ୍ଚି ଦେଖିଲି ସବୁ ଅନିୟମିତ, ମୁଁ ତୁମେ ଏବଂ ଅତୀତରେ ଦେଖିଥିବା ଭବିଷ୍ୟତ ସ୍ୱପ୍ନ ।

ହେଲେ ବନାନୀ ମୁଁ ବୁଝି ପାରୁ ନାହିଁ । ଏହା ହଠାତ୍ ହେଲା କିପରି ଓ କାହିଁକି ? ତୁମେ ଜାଣିଶୁଣି ଏହା ହେବାକୁ ଦେଲ କିପରି ଓ କାହିଁକି ? ଅଥବା ମୁଁ ଭାବିନେବି ଯେ, ତୁମେ ମୋ ସହିତ ପ୍ରତାରଣା କରୁଥିଲ । ସମୟ ଅତିବାହିତ କରିବା ପାଇଁ ମନବିନୋଦନ ଉଦ୍ଦେଶ୍ୟରେ ଏକ ଚେଷ୍ଟା କରିଥିଲ । କଅଣ ଓ କାହିଁକି, ତା ମୁଁ ଏବେବି ଜାଣି ପାରୁନାହିଁ, ଭବିଷ୍ୟତରେ ଜାଣି ପାରିବି ସେ ଆଶା ବି ନାହିଁ ।

ତା ବୋଲି ମୁଁ ଭାଙ୍ଗିପଡିଛି, ଏହା କେବେ ସ୍ୱପ୍ନରେ ସୁଦ୍ଧା ଭାବିବ ନାହିଁ, ତୁମ ବିଚ୍ଛେଦରେ ମୁଁ ପାଗଳା କିମ୍ବା ସନ୍ୟାସୀ ହୋଇଯିବାକୁ ଘୃଣା କରେ, ଜଣେ ନାରୀ ପାଇଁ ତ୍ୟାଗ କରାଯାଇପାରେ, ନାରୀର ପ୍ରେମ ପାଇଁ ତ୍ୟାଗ କରାଯାଇପାରେ । ହେଲେ ତା ଶରୀର ପାଇଁ ତ୍ୟାଗ... ନା... ଶରୀର ମାତ୍ର କେତୋଟି ଟଙ୍କାର ପ୍ରତିଦାନରେ ପ୍ରତି ସହରର ବଜାରରେ ମିଳିପାରିବ ।

ମୁଁ ଏବେ ବି ନିଜପାଇଁ ସଂଗ୍ରାମ କରି ପାରିବି, ପୁଣି ଫେରିଯିବି ସେଇ ପରିଚିତ ସ୍ଥାନକୁ, ଯେଉଁଠି ଜାହିଦା ଓ ମେରିଆ ମୋତେ ଅଭ୍ୟର୍ଥନା କରି ପାଛୋଟି ନେବେ । ମିସେସ୍ ରବର୍ଟ ମୋ ପାଇଁ ପାର୍ଟି ଦେବେ ଏବଂ ହେନେରୀ ଡ୍ରିଙ୍କ ଉଠାଇ ଚିତ୍କାର

କରିବ 'ଚିୟର୍ସ' ! ହେଲେ ବିଶ୍ୱାସ କର ବିବାହ ସେମାନଙ୍କ ମଧ୍ୟରୁ କାହାକୁ କରିପାରିବି ନାହିଁ । ଭାବୁଛି ଆଉ ବିବାହ କରିବି ନାହିଁ, ଯିବା ପୂର୍ବରୁ ଥରେ ତୁମକୁ ଦେଖିବା ପାଇଁ ଇଚ୍ଛା ହେଉଥିଲା, କିଏ ଜାଣେ ଆଉ କେବେ ଦେଖା ହେବକି ନାହିଁ । (ଯଦି ମୁଁ ପୁନର୍ବାର ଏଇଠିକୁ ଫେରିବି ତୁମ ପାଇଁ ନୁହେଁ ମୋ ପରିବାର ପାଇଁ) ତେଣୁ ପୁରୁଣା ବାକ୍ସ ମଧ୍ୟରୁ ସେ ଥରର ସେଇ ଫଟୋ ବାହାର କରି ଦେଖିଲି, ସତ କହୁଛି ହଠାତ୍ ଖୁବ୍ ଘୃଣା ଲାଗିଲା, ଚିରିଦେଇ ପୃଥକ କରି ଦେଲି ତୁମକୁ ମୋ ନିକଟରୁ । ହେଲେ, ତଥାପି ତୁମ ଶାଢୀର ପଣତରୁ ଟିକିଏ ମୋ ସାର୍ଟରେ ଏବେ ବି ଲାଗି ରହିଛି ଏବଂ ତୁମେ ଭିନ୍ନ ଭଙ୍ଗୀରେ ପୃଥକ ହୋଇ ହସୁଛ ।

ନା... ଆଉ ନୁହେଁ, ସ୍କଚ ବୋତଲଟା ଶେଷ ହୋଇ ଯାଇଛି । ମୁଁ ଉଠିବାର ଉପକ୍ରମ କରୁଛି । ସୁକାନ୍ତ ଆଉ ଟିକେପରେ ଟ୍ୟାକ୍ସି ନେଇ ପହଞ୍ଚିବ, ଏବଂ ଯେତେବେଳେ ମୋ ପ୍ଲେନ୍ ଏରୋଡ୍ରମ ଛାଡିବ ସେତେବେଳେ ହୁଏତ ତୁମ ଭାବୀ ସ୍ୱାମୀ ଦଳ ଦଳ ସହ ତୁମ ଘର ନିକଟରେ ପହଞ୍ଚିସାରିଥିବ ତୁମ ଶରୀର ଅଧିକାର କରିବା ପାଇଁ । ମୁଁ ଦୁଃଖ କରିବି ନାହିଁ । କାରଣ ଆଲ୍‌କୋହଲ ମୋ ସ୍ନାୟୁମାନଙ୍କୁ ଦୁର୍ବଳ କରିସାରିଥିବ, ଏବଂ ଭବିଷ୍ୟତରେ ଏଇ ଆଲ୍‌କୋହଲହିଁ କେବଳ ତୁମ ସ୍ଥାନ ଅଧିକାର କରି ପାରିବ ।

ତୁମେ ନିଜ ଅତୀତକୁ ଲୁଚାଇ ପାର, ହେଲେ ତୁମର ମନର କ୍ଷତ ଓ ଶରୀରର କ୍ଷତକୁ କେଉଁଠି ଲୁଚାଇ ରଖିବ ? ରାତ୍ରିର ଅନ୍ଧକାରରେ ନିଜକୁ ନିଜ ଭୂତ ଭାବି ଭୟକରିବ ନାହିଁତ ?

ଶେଷରେ ତୁମେ ହୁଏତ ସେଇ ଉପହାର ଏବଂ ସେଇ ଫଟୋକୁ କୌଣସି ଏକ ଗୋପନୀୟ ସ୍ଥାନରେ ଲୁଚେଇବା ପାଇଁ ଚେଷ୍ଟା କରୁ କରୁ ନିଜକୁ ଦର୍ପଣରେ ଦେଖି ଚମକୃତ ହୋଇଥିବ । (ବିବାହ ପୋଷାକରେ ତୁମେ ଖୁବ୍ ସୁନ୍ଦର ଦେଖା ଯାଇଥିବ ନିଶ୍ଚୟ) ମୁଁ ଜାଣେ ଏବଂ ମୋର ଦୃଢ ବିଶ୍ୱାସ ଅତୀତକୁ ଥରେ ନିଶ୍ଚୟ ମନେ ପକାଇ ବ୍ୟାଣ୍ଡ ପାର୍ଟିର ସଂଗୀତରେ ମୁଗ୍ଧ ହୋଇ ପ୍ରଥମେ ବର୍ତ୍ତମାନକୁ ଫେରି, କ୍ଷଣିକ ମଧ୍ୟରେ ତୁମ ମନର ଅଗନା ଅଗନୀ ବନସ୍ତ ମଧ୍ୟରେ ହଜିଯାଇଥିବି । ସେତେବେଳେ ମୋ ପ୍ଲେନ୍ ସହର ଛାଡି ସାରିଥିବ ।

□ *ପ୍ରଜାତନ୍ତ୍ର (୨୭ ଜୁନ୍ ୧୯୭୧)ରେ ପ୍ରକାଶିତ ।*



# ଦୁଇଟି ଭିନ୍ନ ପଥ

ସ୍ମୃତି କଅଣ କହିପାରିବ ତରୁଲତା, ଯିଏ ସମୟର ହାତ ଧରି ଅଟକେଇ ଦେଇ ରଖିଛି ।

ଦୁଇଦିନ ତଳେ ପ୍ରଥମ କରି ମୋ ସହରରେ ବର୍ଷା ହୋଇଥିଲା, ସେଦିନ ରାତିଟା ଖୁବ୍ ଆର୍ଦ୍ର ଥିଲା ପରି ଜଣା ପଡୁଥିଲା । ମୁଁ ସେଇ ଆର୍ଦ୍ରତାକୁ କିନ୍ତୁ ଉପଭୋଗ କରି ପାରିନଥିଲି । ଏକା ଚାଲି ଚାଲି ସେଇ ପୁରୁଣା ଆମ୍ବ ଗଛ ତଳେ ଠିଆ ହୋଇ ଏକ ନିର୍ଦ୍ଦିଷ୍ଟ ଘରକୁ ଅନେଇ ଥିଲି । ଏ ବର୍ଷ ଗଛରେ ଆମ୍ବ ନାହିଁ, ବଉଳ ବି ହୋଇନଥିଲା, ଗତ ବର୍ଷ ପରି ସହର ବଉଳ ବାସ୍ନାରେ ମହକି ଉଠିନଥିଲା, ମୁଁ ଆଶା କରିଥିଲି ଝର୍କା ଖୋଲି ଯିବ ଏବଂ ତା ପଛରୁ ମୁଁ ଦେଖି ପାରିବି ଏକ ପରିଚିତ ମୁଖ, ରାସ୍ତାଟା ଶୁନ୍ସାନ୍ ଥିଲା, ରାତ୍ରିଟା ବଡ ନିସ୍ତବ୍ଧ ଥିଲା, ଏବଂ ମୁଁ ସେଇ ଗଛମୂଳେ ଠିଆ ହୋଇଥିଲି, ସେ ରାସ୍ତାଟା ମୋ ପାଇଁ କେତେ ପରିଚିତ । ସେ ଛକର ପ୍ରତ୍ୟେକ ବସ୍ତୁ ମତେ ଚିହ୍ନିଥିଲେ, ହେଲେ ସେଦିନ ମୁଁ ସେମାନଙ୍କ ପାଇଁ ନିହାତି ଅପରିଚିତ ହୋଇ ପଡିଥିଲି । ସେମାନେ ମୋତେ ସ୍ୱୀକାର କରି ପାରୁନଥିଲେ, ଝର୍କା ବନ୍ଦ ଥିଲା, ମୋର ଠିକ୍ ମନେ ଅଛି । ଗତବର୍ଷ ଏଇ ପ୍ରଥମ ବର୍ଷାରେ ଭିଜି ଭିଜି ମୁଁ ତୁମ ଝର୍କା ନିକଟରେ ପହଞ୍ଚିଥିଲି । ତୁମେ ଝର୍କା ଖୋଲି ମୋତେ ଅପେକ୍ଷା କରିଥିଲ । ବଉଳ ବାସ୍ନାରେ ସେ ଥର ସହର ମହକି ଉଠିଥିଲା । ସେଇ ମହକରୁ କିଛିତ ମୋ ମନକୁ ମଧ ମହକେଇ ଦେଇଥିଲା ।

ଦୁଇଦିନ ତଳର ସେଇ ବର୍ଷାପରେ ପୁନର୍ବାର ଗରମ, ଖଦ୍ ଗୁଳୁ ଗୁଳି, ଖରା ବେଳେ ଗରମ ପବନ, ଦ୍ୱିପ୍ରହରେ ନିଦ ହେଉନି... ତେଣୁ ତୁମ କଥା ସ୍ପଷ୍ଟ ମନେ ପଡୁଛି । ପ୍ରତ୍ୟେକ କଥା... ତୁମର ମୋର ନିକଟକୁ ଆସିବା ଏବଂ ତାପରେ ଚାଲିଯିବା । ମାନ ଅଭିମାନ, ଅନୁରାଗ, ଅନୁରୋଧର ପର୍ଯ୍ୟାୟ ଦେଇ ତୁମର ମୋ ନିକଟରେ ସମର୍ପଣ... ମୁଁ ହାତ ନିକଟରେ ସବୁ ପାଇ... ଏବେ ଯେପରି ନିସ୍ୱ । ତୁମେ ମୋତେ କିଛି ଦେଇଥିଲ, କିନ୍ତୁ ସେଇ ଦେବାର ପ୍ରତିବଦଳରେ ଯାହା ନେଇଗଲ ତା ହୁଏତ ସ୍ୱଇଚ୍ଛାରେ କେବେ ମୁଁ ଦେଇପାରିନଥାନ୍ତି । ମଣିଷ ଖୁବ୍ ସ୍ୱାର୍ଥପର ତରୁଲତା, ନିଜ

ସ୍ୱାର୍ଥ ପାଇଁ ସେ ସବୁକିଛି କରିପାରେ । କିନ୍ତୁ ତମେ ଯେ ଏତେ ସ୍ୱାର୍ଥପର ହୋଇ ଉଠିବ, ତାହା ମୋ କଳ୍ପନାର ବାହାରେ ଥିଲା । ସେ ମାସର ଆରଂଭରୁ ତୃତୀୟାର୍ଦ୍ଧ ପର୍ଯ୍ୟନ୍ତ ମୁଁ ପ୍ରତିଦିନ ସକାଳୁ ତୁମର ଆଗମନର ପ୍ରତୀକ୍ଷା କରୁଥିଲି... । ତୁମେ ଆସୁଥିଲ, ତାପରେ ଜଣା ପଡୁନଥିଲା ସମୟର ଗତି, କେତେବେଳେ ସକାଳ ଯାଇ ଦ୍ୱିପ୍ରହର ହୋଇ ସନ୍ଧ୍ୟା ହୋଇ ଯାଉଥିଲା– ତା ମୁଁ ବା ତୁମେ କେହି ଜାଣି ପାରୁନଥିଲୁ । ସଂଧ୍ୟା ତୁମକୁ ମୋ ଠାରୁ ପୃଥକ କରି ଦେଉଥିଲା, ତୁମେ ଚାଲି ଯାଉଥିଲ, ଏବଂ ମୁଁ ବାକି ସମୟତକ ସକାଳର ପ୍ରତୀକ୍ଷାରେ ତୁମ ସାନ୍ନିଧ୍ୟର ମଧୁରତାକୁ ଭାବି ଭାବି ବିତେଇ ଦେଉଥିଲି, ଏବଂ ସେଇ ସକାଳ, ଦ୍ୱିପ୍ରହର ଏବଂ ସଂଧ୍ୟା ମୋତେ ଦେଖି ବିଦ୍ରୁପ କରୁଛନ୍ତି । ରାତ୍ରି ଏତେ ନିଷ୍ଠୁର ଯେ ମୋତେ ଶାନ୍ତିରେ ଶୋଇବା ପାଇଁ ସୁଯୋଗ ହିଁ ଦେଉନାହିଁ ।

ଗତ ଛଅ ତାରିଖ ଦିନ ତୁମ ଠାରୁ ଶେଷ ଚିଠି ପାଇଥିଲି, ତାପରେ ପ୍ରତିଦିନ ତୁମର ଚିଠିକୁ ପ୍ରତୀକ୍ଷା କରି କରି ମୁଁ ବ୍ୟସ୍ତ ହୋଇ ପଡୁଛି, ପ୍ରତିଦିନ ତୁମେ ମୋତେ ଚିଠି ଦେଉଥିଲ, ଏବଂ ସେ ଗୁଡ଼ିକୁ ମୁଁ ସାଇତି ରଖୁଥିଲି । ବର୍ତ୍ତମାନ ତୁମର ସେଇ ଚିଠି ଗୁଡ଼ିକ ହିଁ ମୋ ପାଇଁ ସବୁ କିଛି । ସେ ଚିଠି ଗୁଡ଼ିକରେ ତୁମେ ନିଜ ହୃଦୟ ଖୋଲି ରଖି ଦେଇଥିଲ, ବର୍ତ୍ତମାନ ପଢ଼ିଲେ ଖୁବ୍ ଦୁଃଖ ଲାଗୁଛି । ସତେ ଯେମିତି ତୁମେ ମୋର ହୋଇ ମଧ୍ୟ ମୋର ହୋଇ ପାରିଲ ନାହିଁ । ମୁଁ ତୁମକୁ ପାଇ ମଧ୍ୟ ପାଇ ପାରିଲି ନାହିଁ । ତୁମେ ହୁଏତ ବର୍ତ୍ତମାନ ଅନ୍ୟ ଜଣକୁ ଜୀବନର ଚଲାପଥରେ ସାଥୀ ରୂପେ ପାଇ ମୋତେ ଓ ମୋ ସ୍ମୃତିକୁ ଭୁଲି ଯାଇଥିବ, ମୁଁ କିନ୍ତୁ ଭୁଲି ପାରିନି ଏବଂ କେବେ ଭୁଲି ପାରିବି, ସେ ବିଶ୍ୱାସ ମଧ୍ୟ ମୋର ନାହିଁ । ଭୁଲିବା ଏତେ ସହଜ ନୁହେଁ, ଅନ୍ତତଃ ମୋ ପକ୍ଷେ । ତୁମକଥା ମୁଁ କହିପାରୁନାହିଁ । କାରଣ ତୁମେ ଯେତେ ବେଳେ ଏକାନ୍ତ କ୍ଷଣମାନଙ୍କୁ ମୋ ହାତରେ ହାତଦେଇ, ନିଜର ସବୁକିଛି ସମର୍ପଣ କରିସାରି, ଭବିଷ୍ୟତ କ୍ଷତମାନକୁ ଆପଣାର କରିବା ପାଇଁ କରିଥିବା ପ୍ରତିଜ୍ଞାକୁ ଏତେ ସହଜରେ ଭୁଲିଯାଇ ପାରିଲ, ମୁଁ ତ ସାମାନ୍ୟ ଜଣେ ମଣିଷ ।

ମୁଁ ବିଶ୍ୱାସ କରିପାରୁନାହିଁ, ତୁମେ ଏତେ ଶିଘ୍ର ବଦଳି ଯାଇପାର, ମଣିଷର ପରିବର୍ତ୍ତନ ଏକ ସତ୍ୟ, ହେଲେ ତୁମପରି ... ଅସଂଭବ ! ପରିସ୍ଥିତି ନାଁରେ ଛଳନା କରି ତୁମେ ମୋତେ ଠକିଛନା ନିଜକୁ ଥରେ ଭାବିଦେଖିବ । ଏ ଆଘାତ ମୁଁ ସହିଯିବି । କିନ୍ତୁ କ୍ଷତଚିହ୍ନ ତ ଲିଭିବନାହିଁ । ନାରୀ ମନର ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇ ପୁରୁଷ ଯେ ଏତେ କଷ୍ଟ ପାଏ ତା ମୁଁ ଜାଣିବା ପାଇଁ ଏହା ପୂର୍ବରୁ କେବେ ସୁଯୋଗ ପାଉନଥିଲି । ଯେତେ ବେଳେ ଯଂତ୍ରଣା ବୃଦ୍ଧି ପାଇଲା, ସେତେବେଳେ ନିଜ ହୃଦୟରେ କ୍ଷତ ଦେଖି ମୁଁ ପ୍ରଥମେ ଆଶ୍ଚର୍ଯ୍ୟ ହୋଇ ପଡ଼ିଲି, ଏବଂ ସେ କ୍ଷତ ଭଲ ହୋଇ ଯାଇଥିଲା । ପ୍ରକୃତରେ ତୁମେ କଅଣ ଚାହୁଁଥିଲ, ତା ଆଜି ପର୍ଯ୍ୟନ୍ତ ମୁଁ ଜାଣିପାରିଲି ନାହିଁ ।

ମୃତ୍ୟୁ ସମ୍ମୁଖରେ ମଣିଷ ହାର ମାନେ ଏବଂ ବାଧ୍ୟ ହୋଇ ସ୍ମୃତିକୁ ପାଥେୟ କରି ବଂଚେ । ହେଲେ ବଂଚି ଥାଇ ନିକଟରୁ ଦୂରେଇ ଯାଇ ଅନ୍ୟକୁ ଗ୍ରହଣ କଲାପରେ ମଣିଷ କିନ୍ତୁ ଭୁଲିପାରେନି, ନିଜ ମନକୁ ବୁଝେଇ ପାରେ ନାହିଁ । ଅସ୍ଥିର ହୋଇପଡ଼େ । ତୁମେ ଯଦି ନିଜ ପ୍ରତିଶ୍ରୁତିରେ ଥାଇ ଆତ୍ମହତ୍ୟା କରିଥାନ୍ତ ତେବେ ହୁଏତ ତୁମ ପାଇଁ, ତୁମ ପ୍ରେମ ପାଇଁ ମୁଁ ଗର୍ବ କରିଥାନ୍ତି, ହେଲେ ତୁମେ ଯାହା କଲ, ତାକୁ କଣ ପ୍ରେମ କୁହନ୍ତି ?

ବର୍ତ୍ତମାନ ଏକାନ୍ତ କ୍ଷଣରେ ନିଜର ଏଇ କକ୍ଷ ମଧ୍ୟରେ ମୁଁ ଅନୁଭବ କରି ପାରୁଛି, ତୁମର ଉପସ୍ଥିତି । ତୁମେ ଯେମିତି ମୋ ସମ୍ମୁଖରେ ବସିଛ ଏବଂ ଆଖିରେ ତୁମର ସମର୍ପଣର ଭାବନା । ମୁଁ ତୁମରି ଆଖିରେ ନିଜର ପ୍ରତିଛବି ଖୋଜୁଛି । ତୁମ ଶରୀରର ଗଂଧ ଏଇ କକ୍ଷ ମଧ୍ୟରେ ଏପରି ଭାବେ ଖେଳେଇ ହୋଇ ରହିଛି ଯେ, ମୁଁ ପ୍ରତିକ୍ଷଣରେ ଉତ୍ତେଜିତ ହୋଇ ଉଠୁଛି । ତୁମ ଶରୀରର ଗଂଧ ପ୍ରକୃତରେ କେତେ ଉତ୍ତେଜକ ଏବଂ ତାର ସ୍ପର୍ଶରେ କେତେ ମାଦକତା, ତା ମୁଁ ଏବେ ଅନୁଭବ କରି ପାରୁଛି । ଯେତେବେଳେ ମୁଁ ଭାବୁଛି ତୁମର ସେଇ ଶରୀର ଯାହା ଉପରେ ମୋର କେବଳ ଅଧିକାର ଥିଲା, ତାହା ଆଜି ଅନ୍ୟର ଅଧିକାରରେ । ସେତେବେଳେ ମୁଁ ଅସ୍ଥିର ହୋଇ ଉଠୁଛି, ମୁଁ ପୁରୁଷ ହୋଇ ଏକଥା ସହି ପାରୁନି । ମୋ ବିବେକ ଏହାକୁ ଏତେ ସହଜରେ ଗ୍ରହଣ କରି ପାରୁନି, ତୁମେ ନାରୀ ହୋଇ କେମିତି ଗ୍ରହଣ କରିନେଲ ? ମନେ ପଡ଼ିଲା ନାହିଁ ସେ ଅନ୍ତରଂଗ ମୂହୂର୍ତ୍ତ ଗୁଡ଼ାକ, ଯେଉଁମାନେ ତୁମକୁ ଓ ମୋତେ, ଆମ ଦୁହିଁଙ୍କୁ ଏପର୍ଯ୍ୟନ୍ତ ଭୁଲି ପାରିନାହାଁନ୍ତି । ଯେଉଁମାନେ ଏବେବି ଅତୀତର ଗର୍ଭରୁ ଉଙ୍କିମାରି ମୋତେ ପ୍ରଶ୍ନ କରୁଛନ୍ତି, ଏତେ ସହଜରେ ସବୁକିଛି ନଷ୍ଟ ହେବାକୁ ତୁ ପ୍ରଶୟ ଦେଲୁ କାହିଁକି ? ମୁଁ ଉତ୍ତର ଦେଇ ପାରୁନି, ମୁହଁ ତଳକୁ କରି ନୀରବରେ ଅଶ୍ରୁପାତ କରୁଛି ।

ସତ କହିବାକୁ ଗଲେ ମୁଁ ଏତେ ସହଜରେ ତୁମ ସହିତ ଦେଖିଥିବା ସ୍ୱପ୍ନକୁ ଭାଂଗି ଯିବାକୁ ଦେଇନଥାନ୍ତି । ମୁଁ କାପୁରୁଷ ନୁହେଁ, ହେଲେ ତୁମର ସ୍ୱାର୍ଥପରତା ଦେଖି ଘୃଣା ହେଲା, ତୁମର ମନର କଳୁଷତା ଦେଖି ମୁଁ ତୁମକୁ କେବେ ଭଲ ପାଇଥିଲି, ସେକଥା ସମସ୍ତଙ୍କ ସମ୍ମୁଖରେ ପ୍ରକାଶ କରିବାକୁ ଲଜ୍ଜାବୋଧ କଲି ଫଟା ମନ ଆଉ ଯୋଡ଼ି ହୁଏନି । ମୁଁ ଚାହିଁଥିଲେ ତୁମକୁ ଜୋରକରି ଛଡ଼ାଇ ଆଣିପାରିଥାନ୍ତି, କିନ୍ତୁ ତୁମର ଶେଷ ଚିଠି ପାଇଲା ପରେ ଆଉ ଥରେ ତୁମକୁ ପୂର୍ବପରି ଭଲପାଇ ପାରିବି, ସେ ବିଶ୍ୱାସ ମୁଁ ହରେଇ ବସିଲି, ଏବଂ ତୁମ ସେ ଶରୀର ପ୍ରତି ଘୃଣା ଜାତ ହେଲା ।

ଦିନେ ସେ ଶରୀରକୁ ମୁଁ ନିଜ ବାହୁ ବଂଧନ ମଧ୍ୟରେ ବାଂଧିରଖି ଆତ୍ମବିଭୋର ହୋଇ ଉଠୁଥିଲି । ନିଜ ବାହୁମାନଙ୍କ ପ୍ରତି ମୋର ଘୃଣା ହେଲା । ନିଜ ଶରୀରରୁ ଯଦି ସେମାନଙ୍କୁ ପୃଥକ କରି ହେଉଥାନ୍ତା, ତେବେ ହୁଏତ ମୁଁ ସେ ବାହୁଦ୍ୱୟକୁ ପୃଥକ କରି ଦେଇଥାଆନ୍ତି । ତୁମର ସେ ଶରୀର ଏକ କୁମାରୀର ଶରୀର ନଥିଲା, ନଚେତ ଏତେ ସହଜରେ ତୁମେ ନିଜକୁ ମୋ ହାତରେ ଟେକି ଦେଇ ଥାଆନ୍ତ, ଏବଂ ପର ମୂହୂର୍ତ୍ତରେ

ମୋତେ ଭୁଲି  ଅନ୍ୟ ଏକ ଅଜଣା ବ୍ୟକ୍ତିର ବକ୍ଷଉ ପରେ ନୂତନ ଜୀବନର ସ୍ୱପ୍ନ ଦେଖିନଥାନ୍ତ। ଯଦି ମୋର ଶରୀର ପ୍ରତି ମୋହ ଥାଆନ୍ତା, ତେବେ ହୁଏତ ମୁଁ ମାତ୍ର କେତୋଟି ମୁଦ୍ରା ବିନିମୟରେ ଅନେକ ଯୁବତୀଙ୍କର ଶରୀର ପାଇପାରିଥାନ୍ତି। ମୁଁ ଚାହୁଁଥିଲି ପ୍ରେମ, ଏପରି ପ୍ରେମ ଯାହାକି ମରିପାରିବନି। ପ୍ରେମ ପାଇଁ ମଣିଷ ମରିପାରେ, ହେଲେ ମଣିଷ ପାଇଁ ପ୍ରେମ ମରିପାରିବନି, ଏହି ପରି ପ୍ରେମ ମୁଁ ଚାହୁଁଥିଲି, ତୁମର ଶରୀର ନୁହେଁ। ତୁମର ମନ ଚାହୁଁଥିଲି, ତୁମେ ମନ ଦେଇଥିଲ ବା ଦେବାର ଛଳନା କରି ଥିଲ, ତା ତୁମେ ଜାଣ। ବର୍ତ୍ତମାନ ମୁଁ ତୁମ ମନ ବିଷୟରେ କିଛି କହିବି ନାହିଁ। ଅପବିତ୍ର ମନ ବିଷୟରେ କିଛି କହିବା ମୋ ପକ୍ଷେ ଉଚିତ ହେବ ନାହିଁ, ଏବଂ ମୁଁ ଯେ ନିଜର ସବୁ କିଛି ଏକ ଅପବିତ୍ର ମନର ଭରସାରେ ତାର ଅପବିତ୍ର ଶରୀରକୁ ଦେଇ ଦେଇଛି, ସେଥିପାଇଁ ମୁଁ ବର୍ତ୍ତମାନ ଆତ୍ମଗ୍ଲାନି ଦ୍ୱାରା ଜର୍ଜରିତ। ମୁଁ ଅନୁତାପ କରୁଛି ଏବଂ ତା ସଂଗେ ସଂଗେ ତୁମକୁ ଘୃଣା କରିବା ପାଇଁ ଚେଷ୍ଟା କରି ନିଜମନକୁ ସାନ୍ତ୍ୱନା ଦେଉଛି। ହେଲେ ମନ ଏ ଆଘାତକୁ ଏତେ ସହଜରେ ଭୁଲିବ କେମିତି ?

ତୁମେ  କଅଣ କେବେ ନିଜର କୃତକର୍ମ ପାଇଁ ଅନୁତାପ କରିନଥିବ ? ନିରୋଳା କ୍ଷଣରେ କେବେ ତୁମ ଆଖିରୁ ଦୁଇବୁନ୍ଦା ଲୁହ ବୋହି ପଡିନଥିବ ? ତୁମ ସ୍ୱାମୀ ପାଖରେ ନିଜକୁ ଅକ୍ଷତ ବା କୁମାରୀ ବୋଲି ଦାବି କଲାବେଳେ ତୁମ ଛାତି ଥରି ଉଠିନଥିବ ? ତୁମ ସ୍ୱାମୀର ଅଧରରୁ ତୁମେ ମୋ ଅଧରର ସ୍ପର୍ଶ କଅଣ କେବେ ଅନୁଭବ କରି ପାରିନଥିବ ? ଯେତେ ଛଳନା କଲେ ମଧ ନିଜ ଶରୀରର କ୍ଷତ ଦାଗକୁ ଲିଭେଇ ପାରିବ ? ମଧୁଶଯ୍ୟା ଦିନ ପ୍ରତ୍ୟେକ ନବବଧୂ ପରି ତୁମେ କଅଣ ନିଜ କୁମାରୀତ୍ୱ ପାଇଁ ଗର୍ବ ଅନୁଭବ କରି ପାରିଥିବ ? ଅପବିତ୍ର ଶରୀରକୁ ପବିତ୍ର କହିଲେ ତାହା ପବିତ୍ର ହୋଇ ଯାଏ ନାହିଁ।

ଅତୀତ କେବେ ମରେନି ତରୁ, ସେଇ ଅତୀତ ଦିନେ ବର୍ତ୍ତମାନ ହୋଇ ଠିଆହୁଏ। ତୁମ ଜୀବନରେ ଯଦି ଏମିତି କେବେ ହୁଏ, ତେବେ ତୁମେ କଅଣ କରିବ ? ତୁମ ସ୍ୱାମୀ କେବେ ଯଦି ଜାଣିପାରେ ତୁମ ମୋ ମଧର ଅବୈଧ ସଂପର୍କକୁ ତେବେ ସମାଜ ସମ୍ମୁଖରେ ତୁମେ ମୁଣ୍ଡ ଉଠେଇ ଚାଲିପାରିବ ? ମୁଁ ଚାହିଁଲେ ଏବେବି ତୁମ ସ୍ୱାମୀଙ୍କୁ ଆମ ବିଷୟରେ ସବୁ କଥା କହି ଦେଇ ପାରନ୍ତି। ହେଲେ ମୁଁ ଚେଷ୍ଟା କରି ମଧ ପାରୁନାହିଁ।

ଗତକାଲି ମୀରା ଓ ନୀଳିମା ଦେଖା ହୋଇଥିଲେ। ମୋତେ ସାନ୍ତ୍ୱନା ଦେବାପାଇଁ ସେମାନେ ଚେଷ୍ଟା କରିଥିଲେ। ସେମାନଙ୍କୁ ନିଜ ଦୁର୍ବଳତା ଦେଖାଇବା ପାଇଁ ସଙ୍କୋଚ ଲାଗିଲା, ତେଣୁ ହସିଲି, ସବୁ ଭୁଲି ଯିବାର ଛଳନା କଲି। ସେମାନେ ଆଶ୍ଚର୍ଯ୍ୟ ହୋଇଥିବେ ନିଶ୍ଚୟ। ସେମାନେ ତୁମର ବଂଧୁ ଥିଲେ ନା। ତୁମର ବ୍ୟବହାର ପାଇଁ ଆଜି ସେମାନେ ନିଜକୁ ଅପରାଧିନୀ ଭାବୁଛନ୍ତି। ଆଉ ତୁମେ ? ତୁମେ ସେମାନଙ୍କୁ ନିଜର ସବୁ ଗୋପନୀୟ ବିଷୟ କହିଥିଲ ନା, ଏଥର ସେମାନଙ୍କୁ ଚାହିଁ ଦଂଭରେ

କଥା ହୋଇ ପାରିବ ? ହୁଏତ ତୁମେ ପାରିବ, ତୁମ ପକ୍ଷେ ସବୁ ସଂଭବ ।

ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବିଶ୍ଳେଷଣ କଲାପରେ ମଧ୍ୟ ତୁମକୁ ମୁଁ ଭୁଲି ପାରୁନି, କାରଣ ମୋର କଳ୍ପନା ଗୁଡ଼ିକ ଯେ ଏତେ ଶିଘ୍ର ଧୂଳିସାତ ହୋଇଯିବ, ତା ମୁଁ ଭାବିପାରିନଥିଲି । ପୂର୍ବରୁ କେବେ ସ୍ୱପ୍ନ ଦେଖି ନଥିଲି କିଂବା ଭବିଷ୍ୟତ ପାଇଁ କଳ୍ପନା କରି ନଥିଲି, ତୁମେ ହିଁ ଆସି ମୋତେ କଳ୍ପନା କରିବା ଓ ସ୍ୱପ୍ନ ଦେଖିବା ଶିଖାଇଲ । ତାପରେ... । ମୁଁ ଜାଣୁଛି ତୁମେ ମୋ ସହିତ ଛଳନା କରିଛ । ତୁମେ ଛଳନାମୟୀ । ତଥାପି ମୁଁ ତୁମକୁ ଘୃଣା କରି ପାରୁନାହିଁ । କାହିଁକି ? ହୁଏତ ତୁମର ସେ ଛଳନାକୁ ମୁଁ ସତ୍ୟ ମାନି ନେଇ ଥିବା ଯୋଗୁ ।

ତୁମେ ଛୁଟୀରେ ଗାଁକୁ ଯିବା ପୂର୍ବରୁ କହିଥିଲ ଯଦି ସେମାନେ ମୋତେ ବାଧ କରନ୍ତି, ଅନ୍ୟ ସ୍ଥାନରେ ବିବାହ ଦେବାପାଇଁ ତେବେ ମୁଁ ଆତ୍ମହତ୍ୟା କରିବି । ହେଲେ ତୁମେ ନିଜକଥା ରଖି ପାରିଲ ନାହିଁ । ମୁଁ ଜାଣିଥିଲି ତୁମେ ରଖି ପାରିବନି, ପ୍ରେମକୁ ଏକ ମନ ବିନୋଦନର ଉପାୟ ଭାବି ଯେଉଁମାନେ ପୁରୁଷ ସହିତ ଆଗକୁ ବଢ଼ି ଚାଲନ୍ତି ପାହାଚ ପରେ ପାହାଚ ଅତିକ୍ରମ କରି ସେମାନେ ପ୍ରକୃତରେ ପ୍ରେମ କରୁନଥାନ୍ତି । ସେମାନେ କେବଳ ନିଜର ଦୈହିକ କାମନାର ଅବସାନ ଚାହୁଁଥାନ୍ତି । ଏବଂ ତୁମେ ସେହିପରି ଏକ ଝିଅ, ନିଜ ସ୍ୱାର୍ଥ ପାଇଁ ତୁମେ ଆଜି ଅତୀତକୁ ଭୁଲିବାକୁ ଚେଷ୍ଟା କରୁଛ, ହେଲେ ଅତୀତ କେବେ ହେଲେ ବିସ୍ମୃତିର ଗର୍ଭରେ ଲୀନ ହୋଇଯାଏନି, ଏକଥା ମନେ ରଖିଥିବ ।

ମୁଁ ଜାଣିଥିଲି ତୁମେ ଗାଁକୁ ଗଲେ ସେଠି ହଜିଯିବ । ଆଉ ମୁଁ ତୁମକୁ ଖୋଜି ଖୋଜି ପାଇବିନି । କିନ୍ତୁ ତୁମେ ମୋର ସନ୍ଦେହକୁ ନିଜ ଶରୀର ପ୍ରତିବଦଳରେ ଦୂର କରିଥିଲ, ମୁଁ ତୁମକୁ ନିଜର ସର୍ବସ୍ୱ ଦେଇଥିଲି । ତୁମେ ଗାଁକୁ ଚାଲିଗଲ । ନିଜ ଶରୀରରେ ମୋର ଏକ ପ୍ରତିଛାୟା ନେଇ । ତାପରେ ଦୀର୍ଘ ଦିନର ନୀରବତା । ହଠାତ୍ ଖଣ୍ଡେ ଚିଠି- ଯାହାର ସାରାଂଶ ହେଲା ତୁମ ପରିବାର ତୁମକୁ ନ ଜଣେଇ ଲୁଚେଇ ତୁମର ବିବାହ ଠିକ୍ କରିଦେଲେ, ଏବଂ ତୁମକୁ ଜୋର କରି ବାହାଦେବାକୁ ନିଶ୍ଚିତ କରିଛନ୍ତି, ତୁମେ ନିରୁପାୟ, ଚିଠି ପଢ଼ିଲାପରେ ମୁଁ ନିର୍ବାକ ହୋଇଗଲି । ଏତେ କଷ୍ଟରେ ତୁମେ .... ଆଉ ମୁଁ ଏଠି ଏତେ ନିଶ୍ଚିନ୍ତ । ନିଜ ପ୍ରତି ମୋର ଘୃଣାହେଲା । ମୁଁ ସେଇକ୍ଷଣି ତୁମ ବାପାଙ୍କ ପାଖକୁ ଚିଠି ଲେଖିଲି ଏବଂ ତାର ଉତ୍ତର ପାଇଲି ଛଅ ତାରିଖ ଦିନ, ତୁମ ବାପାଙ୍କ ପାଖକୁ ଦେଇଥିବା ଚିଠି ତୁମେ ପାଇଥିଲ, ଏବଂ ତାର ଉତ୍ତରରେ ମୋତେ ଚୁପ୍ ରହି ତୁମର ବିବାହକୁ ନିର୍ବିଘ୍ନରେ ଅନୁଷ୍ଠିତ କରାଇବା ପାଇଁ ଅନୁରୋଧ କରିଥିଲ । ସତକହୁଛି ତରୁଲତା... ସେଇ ଗୋଟିଏ କ୍ଷଣରେ ତୁମପ୍ରତି ଥିବା ମୋର ପ୍ରେମ, ସ୍ନେହ, ଆନ୍ତରିକତା ସବୁ ହଠାତ୍ ଶୂନ୍ୟରେ ମିଶିଗଲେ ।

ମୁଁ ଜାଣିଲି, ତୁମର ଇଚ୍ଛାରେ ହିଁ ସବୁ ହେଉଛି, ଏବଂ ତୁମେ ଗାଁକୁ ଯିବା ପୂର୍ବରୁ ହିଁ ସବୁ ଜାଣିଥିଲ, ଏବଂ ନିଜର ଛଳନା ଦ୍ୱାରା ମୋତେ ବୋକା ବନେଇ ପାରିଛ

ଭାବି ମନେ ମନେ ଖୁବ୍ ଖୁସୀ ହୋଇ ପାରିଥିଲ । ଗାଁକୁ ଯିବାର ପୂର୍ବରୁ ତୁମେ ସବୁ ଜାଣିଥିଲ ଏବଂ ଗାଁରେ ପହଞ୍ଚି ପୂର୍ବ ନିଶ୍ଚିତ ପ୍ଲାନ୍‌ରେ ମୋତେ ଚିଠି ଲେଖିଲ, ଯେମିତିକି ମୁଁ ତୁମର ଅସଲ ସ୍ୱରୂପ ଜାଣିଲାପରେ, ତୁମକୁ ପତ୍ନୀ ଭାବରେ ଗ୍ରହଣ କରି ନିଜର ଭବିଷ୍ୟତ ଜୀବନକୁ ହିଁ ନିଜେ ନଷ୍ଟ କରିଥାନ୍ତି । ପ୍ରକୃତରେ ଖୁବ୍ ସୁନ୍ଦର ଅଭିନୟ ତୁମେ କରିପାର, ତୁମର ବିବାହ... ଏବଂ ତୁମେ ମାତ୍ର ତିନିଦିନ ପୂର୍ବରୁ ଜାଣିବ... ଆଶ୍ଚର୍ଯ୍ୟ କଥା, କିଏ ବିଶ୍ୱାସକରିବ ? କିନ୍ତୁ ମୁଁ ଏତେ ବୋକା ନୁହେଁ । ଥରେ ତୁମକୁ ଚିହ୍ନିଲାପରେ ଦ୍ୱିତୀୟଥର ଭୁଲ କରିନପାରେ ।

ସାତ ତାରିଖ ଦିନ ତୁମ ବିବାହ ହୋଇଗଲା ବୋଲି ଶୁଣିଲି । ନିମନ୍ତ୍ରଣକାର୍ଡ ପଠାଇଥିଲେ ବିବାହରେ ଯୋଗଦାନ କରିପାରିଥାନ୍ତି, ତୁମେ ସେତକବି କରିପାରିଲ ନାହିଁ, ତେଣୁ ମୁଁ ଏଠାରୁ ଟେଲିଗ୍ରାମ ଜରିଆରେ ଶୁଭକାମନା ପଠେଇ ଦେଇ ସେଦିନ ରାତିରେ ମଦ ପିଇଲି । ଏବଂ ତୁମର ଅସଲ ରୂପକୁ ସ୍ପଷ୍ଟଭାବେ ଚିହ୍ନି ପାରିଲି ।

ତୁମକୁ ବିଶ୍ୱାସ କରି ଭୁଲ କରିଛି । ଏବଂ ଭୁଲର ପ୍ରାୟଶ୍ଚିତ ମୋତେ ହିଁ କରିବାକୁ ପଡିବ । ତୁମେ ମୋତେ ଅଶାନ୍ତି ଦେଇଛ । ହୁଏତ ଭବିଷ୍ୟତରେ ଦରକାର ପଡିପାରେ, ଏମିତି ଭିନ୍ନ ଭିନ୍ନ ପଥରେ ଚାଲୁଚାଲୁ ହୁଏତ କେବେ ତୁମ ସହିତ କୌଣସି ଏକ ଅଜଣା ମୋଡ଼ରେ ଦେଖା ହୋଇପାରେ । ଏବଂ ତୁମେ ମୋତେ ଚିହ୍ନିବାକୁ ମନାକରି ଦେଇପାର, ସେତେବେଳେ ଚିଠିର ମାଧ୍ୟମରେ ତ ତୁମେ ମୋତେ ଚିହ୍ନିବ ଏବଂ ମୁଁ ତୁମକୁ ଚିହ୍ନିବି ।

ତାପରେ ପୁଣି ସେଇ ସକାଳ, ଦ୍ୱିପହର ଓ ସଂଧ୍ୟା ଗୀତ ଗାଇ ଆମକୁ ସ୍ୱାଗତ ଜଣେଇବେ, ହୁଏତ ସେହିଦିନକ ପାଇଁ, ତାପରେ ତୁମକୁ ଓ ମୋତେ ପୃଥକ ହେବାକୁ ପଡିବ ।

ଆଜି ସେଇ ଅଜଣା ମୋଡ ଓ ଭବିଷ୍ୟତର ସେଇ ମଧୁର ମିଳନ କ୍ଷଣ ପାଇଁ ମୁଁ ବଂଧୁମାନଙ୍କ ଗହଣରେ ଚିୟର୍ସ କରି ମଦ ପିଇବି, ତୁମେ ହୁଏତ ସ୍ୱାମୀ ବକ୍ଷରେ ଶୋଇ ଯାଇଥିବ ।

□ *ଗିରିଝର (ନଭେମ୍ବର ୧୯୭୨)ରେ ପ୍ରକାଶିତ ।*



# ଶୂନ୍ୟ ଆକାଶ

କିଛିକ୍ଷଣ ପୂର୍ବେ ଆକାଶ ବକ୍ଷରେ ବାଦଲ ଭାସୁଥିଲେ । ତାପରେ ଆକାଶ ପରିଷ୍କାର ହୋଇଥିଲା । ମଇଳା ଦର୍ପଣକୁ ଓଦା କନାରେ ପୋଛି ଦେଲା ପରି , ମାତ୍ର କ୍ଷଣିକ ମଧ୍ୟରେ ସବୁ ବାଦଲ ପୋଛି ହୋଇଯାଇଥିଲେ । ବର୍ତ୍ତମାନ କିଂତୁ, ଆମନ୍ତ୍ରିତ ନ ହୋଇଥିବା ଅତିଥିପରି, କେତେକ ବାଦଲ ବଜାରୀ ପିଲାଙ୍କ ପରି ଆକାଶ ବକ୍ଷରେ ଡେଉଁଛନ୍ତି ।

ପବନ ଖୁବ ଜୋରରେ ଗଛର ପତ୍ରକୁ ପିଟୁଛି । ମୁଁ ଝରକାର ପର୍ଦ୍ଦାଟା ଟାଣିଦେଉଛି । ରାସ୍ତାରୁ ଧୂଳି ପବନର ମାଡ ନ ଖାଇ ପାରି ମୋ ଚକ୍ଷୁ ମଧ୍ୟରେ ଟିକେ ସ୍ଥାନ ପାଇ ଲୁଚିଯାଉଛି । ସ୍ୱାର୍ଥପର ପ୍ରାଣୀ ପରି ମୁଁ ନିଜ ଚକ୍ଷୁ ମଧ୍ୟରେ କଷ୍ଟ ସହି ଲୁଚାଇବା ପାଇଁ ଜଯାଜ ଚକ୍ଷୁ ମଳି ମଳି ମୁଁ ଝର୍କା ନିକଟରୁ ଓହରି ଆସିଛି ।

ଅନୁଚରମାନେ ରକ୍ତିମ ବର୍ଣ୍ଣ ଧାରଣ କରିଥିବା ରାଜକୁମାର ସୂର୍ଯ୍ୟକୁ, ରାଣୀ ରାତ୍ରିଙ୍କ ଆଦେଶରେ ବାଂଧି ଦେଲାପରେ । ରାଜକୁମାରୀ ସଂଧ୍ୟା ନିଜକର କଳା ପଣତ ଦ୍ୱାରା ଧରାକୁ ଆଚ୍ଛାଦିତ କରି ଦେଲେଣି । ଷ୍ଟ୍ରୀଟ ଲାଇଟ ଜଳି ଉଠିଛନ୍ତି ।

ମୋ ସାର୍ଟରୁ ଏକ ଗଂଧ ବାହାରୁଛି । ଆଃ... । ବାଁ କାଂଧରେ କିଛିକ୍ଷଣ ପୂର୍ବେ 'ସେ' ମଥା ଥାପି କାନ୍ଦୁଥିଲା । ସେହି ଗଂଧ ହେବ ବୋଧହୁଏ ।

ମାଟି ରାସ୍ତାରେ ଟ୍ରକ କିଂବା ବସ୍ ଦ୍ରୁତ ଗତିରେ ଚାଲିଗଲାପରେ ତା ପଛରେ ଯେପରି କିଛି କ୍ଷଣ ପାଇଁ ଧୂଳି ଉଡେ । ଠିକ୍ ସେହିପରି ତା' ଯିବାପରେ ମଧ୍ୟ ସେ ତା' ଶରୀରର ଗଂଧକୁ ମୋର ଏହି ଛୋଟ ପ୍ରକୋଷ୍ଠ ମଧ୍ୟରେ କିଛି କ୍ଷଣ ପାଇଁ ଛାଡି ଯାଇଛି ।

ସେ ଆଜି ଅନେକ କାଂଦିଛି । କିଂତୁ ତେଲ ବୋଳା କାଗଜରେ ସହଜରେ କଲମ ଗାର ପଡେନି । ବ୍ୟକ୍ତି ପ୍ରତି ମୁହୂର୍ତ୍ତରେ ଦୁଃଖକଷ୍ଟ, ଅଭାବ ଅନାଟନ ମଧ୍ୟରେ ଗତି କରି କରି ଅବଶେଷରେ ସୁଖ ଓ ଶାଂତିର ସ୍ୱରୂପ ଭୁଲିଯାଏ । ସୀମା ପାର ହେଲା ପରେ ମନୁଷ୍ୟ ଦୁଃଖକୁ ହିଁ ନିଜର କରିନିଏ । ଆଜୀବନ କାରାଦଂଡ ପାଇଥିବା ବ୍ୟକ୍ତି ଯେପରି ପଚିଶି ବର୍ଷ ପରେ ଉନ୍ମୁକ୍ତ ଆକାଶ ତଳେ ଠିଆ ହୋଇ ଅଡୁଆ ବୋଧ

କରେ, ସେ ଫେରିଚାହେଁ ତାର ପୁରାତନ ସ୍ଥାନ, ଠିକ ସେହିପରି ଜୀବନର ଅର୍ଦ୍ଧେକ ଦୁଃଖର ସମୁଦ୍ର ମଧ୍ୟରେ ବୁଡି ରହିଥିବା ବ୍ୟକ୍ତି, ସୁଖକୁ ସହଜରେ ଆପଣାର କରିପାରେନି ।

ସେ ମୋ ବାଁ କାନ୍ଧରେ ମଥା ଥାପି କାଂଦି ଚାଲିଥିଲା । ପ୍ରଥମେ ଶ୍ରାବଣର ପ୍ରଥମ ବର୍ଷା ପରି, ସେ ନିଜ ଅଂତରର ସମସ୍ତ ଦୁଃଖକୁ ପାଣି ରୂପେ ବୁହାଇ ଦେଲା... । ଧୀରେଧୀରେ କୋହ ଶାଂତ ହେଲା । ଲୋତକର ଧାର ବଂଦ ହୋଇଗଲେ ମଧ୍ୟ, ରହି ରହି ତା' ଶରୀର କଂପନ ମୁଁ ସ୍ପଷ୍ଟ ଅନୁଭବ କରିପାରୁଥିଲି ।

ମନ ହାଲୁକା କରି ସେ ଚାଲିଯାଇଛି ... ପଛରେ ଛାଡି ଶରୀରର ଉନ୍ମତ୍ତ ଗଂଧ ।

ସେ ଦୁଃଖରେ କାଂଦି ହେଲେ ପାରୁଛି । ନିଜ ଦୁଃଖକୁ ମୋ ସମ୍ମୁଖରେ କହି ଶାଂତି ପାଇ ପାରୁଛି । ନିଜ ଉପରେ ହେଉଥିବା ଅତ୍ୟାଚାରକୁ ମଥା ପାତି ସହିବା ବ୍ୟତୀତ ଅଧିକ କଣ ବା ସେ କରିପାରିବ ? ବିଦ୍ରୋହ କଲେ... ନିଜ ପେଟ ବିପ୍ଳବ କରିବ । ତେଣୁ ସେ ସମୟ ପାଇଲେ ମୋ ନିକଟରୁ ଦୁଇ ପଦ ସାଂତ୍ୱନାର ବାଣୀ ଶୁଣିବା ଆଶାରେ ଧାଇଁ ଆସୁଛି । କିଂତୁ ମୁଁ ନୀରବ.... । ମୋ ଦୁଃଖ ମୁଁ କାହା ସମ୍ମୁଖରେ କହିବି ?

ମନ ମଧ୍ୟରେ ଉତପ୍ତ ଲାଭା ପରି ଟକମକ ହୋଇ ଫୁଟୁଥିବା ଉତ୍ତେଜନା ଯଦି ଦିନେ ପ୍ରକାଶ ପାଏ, ତେବେ ହୁଏତ ମୁଁ ପାଗଳ ହୋଇଯିବି ।

ସମୟ ହୋଇଗଲାଣି । ଏଥର ମୋତେ ମୋର ସବୁ ପ୍ରକାରର ଚିଂତା, କାମନା, ଆଶା, ଆକାଂକ୍ଷାକୁ ଏଇ ପ୍ରକୋଷ୍ଠ ମଧ୍ୟରେ ଛାଡି କର୍ମକ୍ଷେତ୍ରରେ ପହଞ୍ଚିବାକୁ ପଡିବ ।

ସାର୍ଟ ଝାଡୁଛି । ତା' ସହିତ ଶରୀର ଓ ମସ୍ତିଷ୍କ ମଧ୍ୟରୁ କିଛି କ୍ଷଣ ପୂର୍ବର ସମସ୍ତ ଚିଂତାକୁ ମଧ୍ୟ ଝାଡି ଦେଉଛି ।

ଟୋପି ପିଂଧିଲା ପରେ ଏଥର ମୁଁ ସେଠ୍ ବନଓ୍ୱାରିଲାଲର ଅତ୍ୟଂତ ବିଶ୍ୱସ୍ତ ଡ୍ରାଇଭର । ମୋର ଡ୍ୟୁଟି ସଂଧ୍ୟା ସାତରୁ ରାତି ଏକ, ତାପରେ ମୋର ଛୁଟି । ଝର୍କାଟା ବଂଦ କରି ବୁଟର ମଚ୍‌ମଚ୍ ଶବ୍ଦ ଦ୍ୱାରା ପ୍ରକୋଷ୍ଠ ମଧ୍ୟରେ ରହିଥିବା ଅତୀତ ଓ ବର୍ତ୍ତମାନକୁ ଭୟଭୀତ କରି ଦ୍ୱାର ବନ୍ଦ କରୁଛି ।

ସମ୍ମୁଖରେ ଜଣେ ସ୍ତ୍ରୀଲୋକ । ସୁନଂଦା ନୁହେଁ ତ... । ନାଁ ସେ ହୋଇନପାରେ । ପ୍ରକୃତରେ କେତେ ସେ ସହୁଛି ।... ଆଉ ତେବେ ହୁଏତ ସେ ବଂଚିଯାଂତା । କିଂତୁ ମୁଁ ଯେ ନିରୁପାୟ... । ତାକୁ ଆଶ୍ରୟ ଦେଲେ ମୋତେ ହୁଏତ ଆଶ୍ରୟ ହୀନ ହେବାକୁ ପଡିବ । ଆଶା ନିକଟରୁ ଯାହା ମିଳୁଛି, ତାହା ମିଳିବ ନାହିଁ । ଆଶା... । ସେଠ ବନଓ୍ୱାରିଲାଲର ପୁତ୍ରବଧୂ... ।

ହୁଁ । ଏ ବାଜେ ଚିଂତା ସବୁ ମୁଂଡରେ କାହିଁକି ? ମୁଁ ପାଦର ଗତି ବଢେଇ ଦେଉଛି ।

ରାତ୍ରିଟା ଏପରି ଭାବରେ ଆତ୍ମ ପ୍ରକାଶ କରିବ ବୋଲି ମୁଁ କେବେ ଭାବିନଥିଲି । ରାତ୍ରି ଆସିଲା ଏବଂ କମ୍ପାର୍ଟମେଣ୍ଟ ମଧରେ ବଲବ୍ ସବୁ ଜଳିଉଠି ଆଗନ୍ତୁକଙ୍କୁ ଅଭ୍ୟର୍ଥନା କଲେ, ଟ୍ରେନ କିନ୍ତୁ କୌଣସି ପ୍ରକାରର ପରିବର୍ତ୍ତନ ପ୍ରତି ଦୃଷ୍ଟପାତ ନକରି ଚାଲୁଥିଲା, ରାତ୍ରି ଆସିବା ସଂଗେ ସଂଗେ ସମସ୍ତ ଧରା ଏକ କଳା ଚାଦର ଘୋଡେଇ ହୋଇ ଶୋଇ ପଡିଲା ।

କୌଣସି ଏକ ଷ୍ଟେସନ, ସିଗାରେଟ୍ ପିଇବାକୁ ଇଚ୍ଛା ହେଲା, ତେଣୁ ସିଗାରେଟ୍ ପିଇଲି, ନିକଟସ୍ଥ ଏକ ଷ୍ଟେସନରେ ଉଠିଥିବା ବୃଦ୍ଧବ୍ୟକ୍ତି ହାତକୁ ତାଙ୍କ ଦିଆସିଲି ବଢେଇ ଦେଇ, ଯଦିଓ ମୁଁ ଅନେକଥର ବଜାରରେ ଗଲାବେଳେ କାହା ନିକଟରୁ ଦିଆସିଲି ମାଗି ସିଗାରେଟ ପିଇଲେ, ଭଦ୍ରତା ଦୃଷ୍ଟିରୁ ଧନ୍ୟବାନ ଦେଇଛି । ତଥାପି ଏଇ ବୃଦ୍ଧ ଗ୍ରାମିଣଟିକୁ ଧନ୍ୟବାଦ ଦେବାକୁ ଇଚ୍ଛା ହେଲା ନାହିଁ । ଟ୍ରେନ ଚାଲିବା ଆରମ୍ଭ କରି ଦେଇଥାଏ, ସମସ୍ତେ ଟିକେ ଟିକେ ସ୍ଥାନରେ ଯେ କୌଣସି ପ୍ରକାର ନିଜକୁ ମୋଡି ମାଡି ହୋଇ ପଡିଥାନ୍ତି । ସକାଳେ ଅନେକ ସମୟ ଯାଏ ଶୋଇ ଥିବାରୁ ଆଖିରେ ନିଦ ନଥିଲା । ଏବଂ ବୃଦ୍ଧଙ୍କ ପାଇଁ ଟିକିଏ ହେଲେ ବି ସ୍ଥାନ ନଥିଲା । ବୃଦ୍ଧ ଟିକେ ସ୍ଥାନରେ ନିଜକୁ ସ୍ଥାପିତ କରି ହାଇମାରି କହିଲେ, ଆଜି ବଡ ଥଣ୍ଡା, ଏବଂ ସମର୍ଥନ ପାଇଁ ମୋତେ ଲକ୍ଷ୍ୟକଲେ । ମୁଁ ସିଗାରେଟ୍ ଧୂଆଁ ଛାଡି ମୁଣ୍ଡ ହଲାଇଲି, ସେ ଟିକେ ହସିଲେ, କହିଲେ, ଭାରି ଭିଡ । ମୁଁ ପୁନର୍ବାର ସ୍ୱିକାରୋକ୍ତିରେ ମୁଣ୍ଡ ହଲାଇଲି, କହିଲି ଯେମିତି ହେଲେ ଲକ୍ଷ୍ୟରେ ପହଞ୍ଚିଲେ ଗଲା ।

ସେ ପ୍ରଶ୍ନ କଲେ କେତେ ଦୂର ଯିବ ?

ମୁଁ କହିଲି ସମ୍ବଲପୁର, ସେ ମନକୁ ମନ କହିଲେ ମୁଁ ବିଳାସପୁର ଯିବି, କେତେ ବେଳେ ବିଳାସପୁର ଆସିବ ତୁମେ ଜାଣିଛ । ମୁଁ ମୁଣ୍ଡ ହଲାଇ ମନାକଲି, ସେ ପୁନର୍ବାର କହିଲେ ଆଜିକାଲି ଦୁନିଆରେ କେତେ ନୂଆ ନୂଆ କଥା ହେଲାଣି, ହେଲେ ଗାଁ ମାନଙ୍କରେ ଯେଉଁ କଥାକୁ ସେହି କଥା, ମୋତେ ଯଦିଓ ଏମିତି ଚର୍ଚ୍ଚା ବିରକ୍ତ ଲାଗେ । ତଥାପି ସେହି ରାତ୍ରିର ସେହି କମ୍ପାର୍ଟମେଣ୍ଟର ବୃଦ୍ଧଙ୍କର ବକ୍ତବ୍ୟ ଭଲ ଲାଗିଲା ଏବଂ ମୁଁ ମନଯୋଗ ସହିତ ଶୁଣିଲି । ସେ କହୁଥାନ୍ତି, ଏଇ ଯୌତୁକ କଥା । କାହିଁ କିଛି ବି ତ ବଦଳି ନାହିଁ । ଦେଖୁନା ମୋ କଥା । ଝିଅକୁ ବାହା କରିବି ବୋଲି କମ୍ କଷ୍ଟ ଉଠେଇଛି । ଯେଉଁଠି ଠିକ୍ କଲି ସେମାନେ ପାଞ୍ଚଶହ ଟଙ୍କା ମାଗିଲେ । ମୁଁ ତ ଗରିବ ଲୋକ । କେଉଁଠୁ ଆଣିବି, ଶେଷରେ ଯାହା ଜମିଥିଲା ବିକିଲି, ତାପରେ ଟଙ୍କା ତିନିଶ ଧରି ଯାଉଛି । ବିଳାସପୁର ବିବାହ ଠିକ୍ କରି ଆସିବି ଟଙ୍କା ଦେଇ । ସେ ଅଣ୍ଟାରେ ହାତ ମାରିଲେ । ମୁଁ ଝରକା ବାଟେ ବାହାରକୁ ଲକ୍ଷ୍ୟ କଲି ଷ୍ଟେସନ ଆସୁଛି ।

ରାତ୍ରି ପରି ସକାଳଟା ଅତର୍କିତ ଭାବେ ଆସି ନଥିଲା, ଧିରେ ଧିରେ କଳା ରଂଗ ହୋଇଗଲା ଏବଂ ଆକାଶର ପୂର୍ବଦିଗ ଏକ ଧଳା ସାଦା କାଗଜରେ ଅଭ୍ୟସ୍ତ ହସ୍ତଚିତ୍ର

କାରି ପରି ଇଷତ୍ ଲାଲ ହୋଇ ଉଠିଲା । କିଛିକ୍ଷଣ ମଧ୍ୟରେ ସକାଳର ମନ ମୋହକ ରୂପ ଦୂର ହୋଇ ଯାଇଥିଲା ।

ଯାତ୍ରାର ଅନେକଟା କଟିଯାଇଛି । ଆଉ ଅଳ୍ପ ସମୟ, ଦିନ ଚାରିଟାରେ ଝାରସୁଗୁଡା ଆଉ ନଅଘଣ୍ଟା, ସତେଇଶ ଘଣ୍ଟାକୁ ଆମେ ଅତୀତରେ ଛାଡି ଆସିଛୁ ଯେପରି ଠିକ୍ ସେହିପରି ଭବିଷ୍ୟତ ନଅଘଣ୍ଟାକୁ ଅତୀତ କଲେ ଲକ୍ଷ୍ୟରେ ପହଞ୍ଚିବା, ଝାରସୁଗୁଡାରୁ ଟ୍ୟାକ୍ସି- ସିଧା ସମ୍ବଲପୁର ।

ଷ୍ଟେସନଟିର ନାଆଁ ମନେ ନାହିଁ, ତିନୋଟି ଆଗନ୍ତୁକ ଡବାର ଭିଡକୁ ଠେଲି ଠେଲି ଭିତରେ ପ୍ରବେଶ କଲେ । ଟ୍ରେନ ଚାଲୁଥାଏ ଜଣେ ପୁରୁଣା ବ୍ୟବସାୟୀ ସ୍ୱରରେ ଆରମ୍ଭ କଲା, ଏକ ଲଗାଇଲେ ଦୁଇ, ଦୁଇ ଲଗାଇଲେ ଚାରି ଚାରି ଲଗାଇଲେ ଆଠ... । ଭାଗ୍ୟ ପରୀକ୍ଷା, ଏକ ବେଡିଙ୍ଗ ଉପରେ ବସି ପଡି ପକେଟରୁ ତାସମୁଠା ବାହାର କଲା, ମୁଁ ଜାଣିଲି ଏମାନେ ଡବା ଭିତର ନିରିହ ଲୋକଙ୍କୁ ଜୁଆ ଖେଳାଇ ଠକି ଚାଲିଯିବେ, ତିନିପତି ବିଷୟରେ ମୋର ପୂର୍ବରୁ କୌଣସି ଧାରଣା ନଥିଲେ ମଧ୍ୟ ଯାହା ଶୁଣିଥିଲି ସେତିକି । ଅନ୍ୟ ଦୁଇଜଣ ତା ଦୁଇ ପଟେ ରକ୍ଷା କାରି ପରି ଠିଆ ହେଲେ, ଏବଂ ଦୁଇଟଙ୍କା ଲଗାଇ ଧିରେ ଧିରେ ଜିତିବା ଆରମ୍ଭ କଲେ । ପ୍ରଥମ ବ୍ୟକ୍ତି ଜିତି ଯାଉଛି । ଆଜି ମୋର ବହୁତ କ୍ଷତି । ଆସ ଭାଇମାନେ ଭାଗ୍ୟ ପରୀକ୍ଷା କର ।

ଧୀରେ ଧୀରେ ତା ଚତୁର୍ଦ୍ଦିଗରେ ଭିଡ ବଢି ଚାଲିଲା । ଏବଂ ମୁଁ ନୀରବରେ ଢୁଳେଇବା ପାଇଁ ଚେଷ୍ଟା କଲି, ହଠାତ୍ ଏକ କୋଳାହଳରେ ଉଠି ବସିଲି ଏବଂ ଡବା ମଧ୍ୟରେ ପ୍ରତ୍ୟେକ ବ୍ୟକ୍ତି ମୋ ନିକଟରେ ବସିଥିବା ବୃଦ୍ଧକୁ ସହାନୁଭୂତି ଚକ୍ଷୁରେ ଲକ୍ଷ୍ୟ କରି କହୁଥାନ୍ତି । ମୁଁ ମନା କରୁଥିଲି ଖେଳନା, ଖେଳନା ହେଲେ ମୋ କଥା କଅଣ ଶୁଣିଲା, ମୁଁ ପରା ଆଖିଠାର ମାରି କହୁଥିଲି, ସେ ଦୁଇ ଜଣ ତା ନିଜ ଲୋକ । ହେଲେ ୟେତ ପ୍ରଥମେ ଦଶ, ତାପରେ ଶହେ ଓ ତାପରେ ଦୁଇଶହ ଲଗେଇ ଦେଲା । ସବୁ ମାରି ସେମାନେ ଚମ୍ପଟ । ମୁଁ ବୃଦ୍ଧାଙ୍କୁ ଲକ୍ଷ୍ୟ କଲି, ସେ ଅଜଣା ଭୟରେ କଳା ପଡିଯାଇଥାନ୍ତି । ସତେ ଯେପରି ନିଜ ଅବିବାହିତ କନ୍ୟାର ଭବିଷ୍ୟତକୁ ନୀରବରେ ଲକ୍ଷ୍ୟ କରୁଥାନ୍ତି । ନିଜକୁ ବୃଦ୍ଧଙ୍କ ବୁଦ୍ଧିକୁ ଗାଳି ଦେଇ ନିଜେ ତାଙ୍କୁ ନ ଖେଳିବା ପାଇଁ ଉପଦେଶ ଦେଇ ଏକ ବ୍ୟଙ୍ଗ ହସ ହସି ଚାଲିଯାଉଥାନ୍ତି । ମୁଁ ବିରକ୍ତ ହେଲି । ଏପରି ଦୁଃସମୟରେ ସାନ୍ତ୍ୱନା ପରିବର୍ତ୍ତେ ଏପରି ଆଘାତ ଦେବାଟା କଅଣ ଭୁଲ ? ଭାବିଲି ସତ କିନ୍ତୁ, ସାନ୍ତ୍ୱନା ଦେବା ପାଇଁ ସାହସ କରି ପାରିଲି ନାହିଁ, ଡବାର ଅସ୍ପଷ୍ଟ ଗୁଂଜନ ଓ ବୃଦ୍ଧଙ୍କ ଦୁଃଖକୁ ଚିନ୍ତା କରି କରି ପୁନର୍ବାର ଚକ୍ଷୁ ବନ୍ଦ କଲି । ପ୍ରକୃତରେ ଅନେକ କ୍ଳାନ୍ତ ହୋଇ ପଡିଥିଲି ।

ହଠାତ୍ ଏକ ମର୍ମନ୍ତୁଦ ଚିତ୍କାର ଏବଂ କୋଳାହଳରେ ମୁଁ ଚମକି ପଡି ଆଖି ଖୋଲିଲି । ଡବାର ପ୍ରତ୍ୟେକ ଚିତ୍କାର କରୁଥାନ୍ତି, କୁହୁଥାନ୍ତି ଆହା ବିଚରା ବୁଢାଟା ଚଳନ୍ତା ଟ୍ରେନରୁ ଡେଇଁ ପଡି ଆତ୍ମହତ୍ୟା କଲା । ଡେଇଁବା ପୂର୍ବରୁ କହୁଥିଲା ମୁଁ ଘୋର

ପାପୀ, ମୋ ଝିଅର ଜୀବନ ନଷ୍ଟ କରି ଦେଲି, କିପରି ବିବାହ କରିବି । ସବୁ ଟଙ୍କାତ ଗଲା । କେତେକ ଟେନ ଟାଣୁଥାନ୍ତି । କିନ୍ତୁ ତୃତୀୟ ଶ୍ରେଣୀର କମ୍ପାର୍ଟ ମେଣ୍ଟ ଟେନ ଖରାପ ଥିବାରୁ ଟ୍ରେନ ସେହିକ୍ଷଣି ଅଟକି ନଥିଲା ।

ତବାରେ ଏକ ଶିହରଣ, ଏକ ଆତଙ୍କ । ଏକ ଚମକ, ଏକ ଉତ୍ତେଜନା ପ୍ରବେଶ କରିଥିଲା ଏବଂ ପ୍ରତ୍ୟେକ ପୂର୍ବଥର ପରି ଗୁଂଜନ କରିବା ଆରମ୍ଭ କରି ଦେଇଥିଲେ, ପୂର୍ବର ଗୁଂଜନ ଯେପରି ନୀରବ ହୋଇ ଯାଇଥିଲା । ଏଟା ମଧ ସେହିପରି ହେବ ଭାବି ମୁଁ ଯଦିଓ ବୃଦ୍ଧଙ୍କ ଶୂନ୍ୟସ୍ଥାନକୁ ଲକ୍ଷ୍ୟ କରି ଗତ ରାତ୍ରିର କେତେକ ଖାପଛଡା ସଂଳାପକୁ ମନେ ପକେଇ ବ୍ୟଥିତ ହୋଇଥିଲି । ତଥାପି ଗୁଂଜନ ଶବ୍ଦରେ ବିରକ୍ତ ହୋଇଥିଲି ଏବଂ ଚକ୍ଷୁ ବନ୍ଦ କରିଥିଲି ।

ଟ୍ରେନ୍ଟ ଅଟକିଥିଲା ଏବଂ କିଛି ତଦନ୍ତ ହୋଇଥିଲା କି ନାହିଁ ଜାଣେନା, କିନ୍ତୁ ସଂଧ୍ୟା ପୂର୍ବରୁ ଝାରସୁଗୁଡାରେ ପହଞ୍ଚିଲା ବେଳେ ଉପଦେଶ ଦେଉଥିବା, ଦୁଃଖ ପ୍ରକାଶ କରୁଥିବା, ଗୁଂଜନ କରୁଥିବା ବ୍ୟକ୍ତିମାନେ ବୃଦ୍ଧଙ୍କର ଅସ୍ତିତ୍ୱକୁ ଭୁଲିସାରି ଟ୍ରେନରୁ ଓହ୍ଲାଇବା ଓ ଶୂନ୍ୟ ସ୍ଥାନକୁ ପୂରଣ କରିବା ଚିନ୍ତାରେ ଲାଗି ପଡିଥିଲେ ।

ଏ ଦୁର୍ଘଟଣା ପାଇଁ କଅଣ ମଣିଷ ଦାୟୀ ନୁହଁ, ଏବଂ ତୁମେ କଣ ମଣିଷ ନୁହଁ ? ମୋ ସମ୍ମୁଖରେ ଯେପରି ବୃଦ୍ଧଙ୍କ ଯୁବତୀ କନ୍ୟା ଠିଆ ହୋଇ ପ୍ରଶ୍ନ କରୁଥିଲା, ଏବଂ ବୃଦ୍ଧ ଅଟ୍ଟହାସ କରୁଥିଲେ, ମୁଁ କିନ୍ତୁ ଉତ୍ତର ନଦେଇ ଟାଙ୍ଗି ଷ୍ଟାଣ୍ଡ ଆଡେ ଭୟରେ ଦୌଡି ଯାଉଥିଲି ।

□ *ଗିରିଝର : ଡିସେମ୍ବର ୧୯୭୩*







# ସଂପର୍କର ସୂତାଖିଅ

ପ୍ରତ୍ୟେକ ଥର ଏ ଯାତ୍ରା ମୋତେ କ୍ଳାନ୍ତ କରି ପକାଏ । ଏଥର ମଧ୍ୟ । ଦୀର୍ଘ ସାତଶହ ମାଇଲର ଟ୍ରେନ ଯାତ୍ରା । ତାପରେ ବସ ଯାତ୍ରା ଦୀର୍ଘ ଅଢେଇ ଶହ ମାଇଲର । ସବୁ ଥର ମୁଁ ବ୍ୟତିବ୍ୟସ୍ତ ହୋଇ ଉଠେ ଏଇ କ୍ଳାନ୍ତିକର ଯାତ୍ରା ଯୋଗୁଁ । ଏଥର କିନ୍ତୁ ମୁଁ ଅତ୍ୟଧିକ କ୍ଳାନ୍ତ ହୋଇ ପଡିଥିଲି ବସ୍‌ରୁ ଓହ୍ଲାଇଲା ସମୟରେ । ଯଦି ମିନାକ୍ଷୀ ସହିତ ସାକ୍ଷାତ ଅତ୍ୟନ୍ତ ଜରୁରୀ ହୋଇନଥାନ୍ତା, ତାହେଲେ ସିଧା କୌଣସି ଏକ ବାରରେ କ୍ଳାନ୍ତି ଦୂର କରି ନିଶ୍ଚିନ୍ତରେ ଦୁଇଦିନ ପାଇଁ ଶୟନ କକ୍ଷ ଛାଡି ନଥାନ୍ତି ।

ମିନାକ୍ଷୀ କାହିଁକି ଯେ ଏତେ ଦୂରରେ ପଡି ରହିଛି, ତା ମୁଁ ପ୍ରତ୍ୟେକଥର ଚେଷ୍ଟାକରି ମଧ୍ୟ ବୁଝି ପାରିନାହିଁ । ପ୍ରତ୍ୟେକ ଥର ମୋ କଥା ପ୍ରତି କୌଣସି ଗୁରୁତ୍ୱ ହିଁ ଦେଉନାହିଁ ସେ । କଲେଜ ସମୟରୁ ନାଁ କରିବା ଜିଦ୍ ତାକୁ ଏଯାଏଁ ଛାଡି ଯାଇ ପାରିନି । କଲେଜ ଛାଡିବାର ଦୀର୍ଘ ସାତବର୍ଷ ହୋଇ ଗଲାଣି । ତଥାପି ମୁଁ ତାର ପ୍ରତୀକ୍ଷା କରିଛି । ଭୀଷଣ ଭାବେ କରିଛି । ଏବଂ ମୋର ଯାହା ଧାରଣା, ଏ ପ୍ରତୀକ୍ଷା ତା' ମନରେ କୌଣସି ପ୍ରକାରର ପ୍ରତିକ୍ରିୟା ସୃଷ୍ଟି କରିପାରିନାହିଁ । ତେଣୁ ମୁଁ ଚିଠି ଲେଖିଛି । ସାମାନ୍ୟ ଯିବେ ସୁବିଧା ପାଇଲେ ଦୌଡି ଆସିଛି । ତଥାପି ସେ ଗଂଭୀର ହୋଇନି । ବରଂ ମୋତେ ହତାଶ କରି ପକାଇଛି ।

ଏଥରକ କିନ୍ତୁ ପରିସ୍ଥିତି ସଂପୂର୍ଣ୍ଣ ଭିନ୍ନ । ପରିବାର ମୋର କୌଣସି ଯୁକ୍ତିକୁ ପ୍ରତ୍ୟେକଥର ପରି ଏଥର ଗ୍ରହଣ କରିପାରି ନାହାଁନ୍ତି । ଏବଂ ବୟସ ମୋତେ ଆଗ କରି ଦୂରେଇ ଯିବା ପୂର୍ବରୁ ତାଂକର ଜିଦ୍, ମୋତେ ବିବାହ କରିବାକୁ ପଡିବ । ମୁଁ ନିଜ ବ୍ୟସ୍ତ ବ୍ୟବସାୟୀ ଜୀବନକୁ ପଛରେ ପକେଇ ହଜାର ମାଇଲ ଦୂରକୁ ଧାଇଁ ଆସିଛି ମିନାକ୍ଷୀ ସହିତ ସାମାନ୍ୟ ଆଲୋଚନା ପାଇଁ, ନିଜ ପରିସ୍ଥିତି ବିଷୟରେ ତାକୁ ବୁଝାଇବା ପାଇଁ । ବସଷ୍ଟାଣ୍ଡରୁ ତା କ୍ୱାର୍ଟର ତିନିମାଇଲ ବାଟ । ସମୁଦ୍ର ପତ୍ତନଠାରୁ ଢେର ଉଚ୍ଚରେ ଥିବା ହେତୁ ଅତ୍ୟଧିକ ଥଂଡା ଏବଂ ଭୀଷଣ କୁହୁଡି । ଏପ୍ରିଲର ଏଇ ଗ୍ରୀଷ୍ମ ଦିନରେ ମଧ୍ୟ ଏଠାରେ ପରିଲକ୍ଷିତ କରିହୁଏ । ମୁଁ ଖୁବ୍ କମ ସମୟ ମଧ୍ୟରେ ନିଜକୁ ଏଇ ଦୀର୍ଘ ପଥ ଯାତ୍ରା ନିମନ୍ତେ ପ୍ରସ୍ତୁତ କରିଥିଲି । ବସ୍‌ରୁ ଓହ୍ଲାଇବା ପରେ

ବାୟୁମଣ୍ଡଳର ଆର୍ଦ୍ରତା ମୋତେ ଓ ମୋ ଶରୀରକୁ ଥରାଇ ଦେଲା । ମୁଁ ପକେଟରେ ହାତ ଭରି ଘୋଡାଗାଡି ନିକଟକୁ ଅଗ୍ରସର ହେଲି ।

ଚତୁର୍ଦ୍ଦିଗରେ ଘନ କୁହୁଡି । ସମୟ ସାଢେ ଆଠ ହୋଇଥିଲେ ମଧ୍ୟ ବାତାବରଣରେ ଭୀଷଣ କୋମଳତା ମୁଁ ସ୍ପଷ୍ଟ ଅନୁଭବ କରିପାରିଲି । ଟ୍ରେନରେ ଆସୁଥିବା ସମୟରେ ମୁଁ ମନେ ମନେ ମିନାକ୍ଷୀକୁ ଚମକେଇ ଦେବି ବୋଲି ଭାବି ମନେ ମନେ ଆନନ୍ଦିତ ହୋଉଉଠିଥିଲି । ସେଇଥିପାଇଁ ନିଜ ଆସିବା ସଂବାଦ ମଧ୍ୟ ଦେଇନଥିଲି । କିନ୍ତୁ ଏଠାରେ ପହଂଚି ମୋତେ ଜଣାପଡୁଛି ଯେମିତି ମୁଁ ମିନାକ୍ଷୀକୁ କିଛି କହିପାରିବି ନାହିଁ । ତା ସମ୍ମୁଖରେ ପ୍ରତ୍ୟେକ ଥର ପରି ଏଥର ମଧ୍ୟ କ୍ଲାନ୍ତ ହୋଇ ପଡିବି । ମନେ ମନେ ମୁଁ ଦୁର୍ବଳ ହୋଇ ଉଠିଲି ।

ଦୀର୍ଘ ସାତବର୍ଷ ମଧ୍ୟରେ ଏଠାକୁ ଆସିବା, ଏଇଟା ମୋର ତୃତୀୟ ଥର । ପ୍ରଥମ ଥର ଆସିଥିଲି ସାତବର୍ଷ ପୂର୍ବେ, ଯେତେବେଳେ ମିନାକ୍ଷୀ ସ୍ଥାନୀୟ କଲେଜରେ ଅଧ୍ୟାପିକା ଭାବେ 'ଜଏନ' କଲା । ସେ ଥର ମଧ୍ୟ ମୁଁ ପ୍ରତିବାଦ କରିଥିଲି । କିନ୍ତୁ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇଥିବା ମିନାକ୍ଷୀ ମୋ ପ୍ରତିବାଦ ପ୍ରତି ଭ୍ରୂକ୍ଷେପ କରିନଥିଲା । ସେ ଜାଣିଥିଲା ମୋ ପ୍ରତିବାଦର ଅର୍ଥ କିଛି ନୁହେଁ । ସେ ଏକ ଖରସ୍ରୋତା ନଦୀ ପରି ଯେ କୌଣସି ପ୍ରତିବଂଧକୁ ଏଡାଇ ଆଗକୁ ଅଗ୍ରସର ହେବାକୁ ନିଜର ଦର୍ଶନ କରିନେଇଥିଲା । ସାମାନ୍ୟ କେତୋଟି ଦିନ ଅବସ୍ଥାନ ପରେ ମୁଁ ଫେରିଯାଇଥିଲି ନିଜ କର୍ମସ୍ଥଳୀକୁ, ହୃଦୟରେ ଆଘାତ ନେଇ, ଏକାନ୍ତ ପ୍ରହରରେ ଏକାକୀତ୍ୱର ଯନ୍ତ୍ରଣା ଉପଲବ୍ଧି କରିବା ପାଇଁ ।

ମଝିରେ ଦ୍ୱିତୀୟଥର ପାଇଁ ଥରେ ବାଧ୍ୟ ହୋଇ ଆସିଥିଲି କେବଳ ତାକୁ 'କନ୍‌ଭିନ୍‌ସ' କରିବା ପାଇଁ ଯେ ବୟସ ଚିରସ୍ଥାୟୀ ନୁହେଁ । ବର୍ଷେ ପରେ ନ ହେଲେ ମଧ୍ୟ ଆଉ ପାଂଚ ବର୍ଷ ପରେ ମୁଁ ବୃଦ୍ଧ ନହେଲେ ମଧ୍ୟ ପ୍ରୌଢ ନିଶ୍ଚୟ ହୋଇଯିବି । ସେଥର ହଠାତ୍ କାହିଁକି କେଜାଣି ନିଜ ସହରରେ ନିଜ ଘରେ ମୁଁ ଅନୁଭବ କରିପାରିଥିଲି ଏକ ଅଦ୍ଭୁତ ସ୍ଥିରତା ମନ ଭିତରେ । କିଛି ଭଲ ଲାଗୁନଥିଲା । ଏବଂ ମୁଁ ଖୁବ୍ ବିଳଂବରେ ଘରକୁ ଫେରୁଥିଲି । ସଂଧ୍ୟାର ଅଧିକାଂଶ ସମୟ 'ବାର୍'ର କୋଳାହଳମୟ ବାତାବରଣ ରେ ହିଁ ଅତିବାହିତ କରି କ୍ଳାନ୍ତ ଓ ଅବସାଦଭରା ମନ ସହିତ ଘରକୁ ଫେରି କେବଳ ଶୋଇବାର ଯାହା ଛଳନା କରୁଥିଲି ।

ତେଣୁ ଆସିଥିଲି ମିନାକ୍ଷୀ ନିକଟକୁ । ତାକୁ ବୁଝାଇଥିଲି । ସେ ହସିଥିଲା । ଯେମିତି ପ୍ରତ୍ୟେକ ଥର ହସେ ମୋ ଦୁର୍ବଳତା ଦେଖି । ମୁଁ ତାକୁ 'କନ୍‌ଭିନ୍‌ସ' କରିବାକୁ ଚେଷ୍ଟା କରିଥିଲି । ଅନେକ ଯୁକ୍ତି କରିଥିଲି । କିନ୍ତୁ ସେ 'କନ୍‌ଭିନ୍‌ସ' ହୋଇଥିଲା କି ନାହିଁ ତାହା ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜାଣିପାରିନଥିଲି । କେବଳ କେତେକ ଅବିସ୍ମରଣୀୟ ମୁହୂର୍ତ୍ତ, ଘଂଟା, ଦିନ ତା ସହିତ ଅତିବାହିତ କରିଥିଲି । ସେ କଲେଜରୁ ମୋ ପାଇଁ ଛୁଟି ନେଇ ଆସିଥିଲା । ଏବଂ ପ୍ରତ୍ୟେକ ମୁହୂର୍ତ୍ତକୁ ତା ସହିତ ଜୀବନର ଏକ ମଧୁମୟ

ଅଧ୍ୟାୟ କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିଥିଲି । ସେଇ କେତେକ ଦିନ ମଧ୍ୟରେ ମୋ ମନରୁ ସ୍ଥିରତା, ଜଡତା ଦୂର ହୋଇଯାଇଥିଲା । ତାର ସାନ୍ନିଧ ହିଁ ସେଇପରି । ମୁଁ ପୁନର୍ବାର ସତେଜ ହୋଇ ନିଜ ସହରକୁ ଫେରି ଆସିଥିଲି । ବସଷ୍ଟାଣ୍ଡରେ ମୋ ହାତକୁ ଚାପି ଧରି କହିଥିଲା, ''ପରେ ଚିନ୍ତା କରି ତୁମକୁ ଲେଖିବି ।''

ଏଇଟା ପ୍ରାୟ ଦଶ ଏଗାର ମାସ ତଳର କଥା । ତାର ପ୍ରତିଶ୍ରୁତି ସତ୍ୱେ ମଧ ମୋ ନିକଟକୁ ଉକ୍ତ ବିଷୟରେ କିଛି ଲେଖିନଥିଲା । ଯଦିଓ ଚିଠି ପ୍ରତ୍ୟେକ ସପ୍ତାହରେ ଆସୁଥିଲା ତା ନିକଟରୁ । ନିହାତି ଫର୍ମାଲ ଚିଠି । ମୋର କେମିତି ଧାରଣା ହେଲା, ସେ ଯେମିତି ଜାଣି ଶୁଣି ଏଇ ପ୍ରସଂଗକୁ ଏଡ଼ାଇବାକୁ ଚେଷ୍ଟା କରୁଛି । ମୁଁ ମନେ ମନେ ଭୀଷଣ ଭାବପ୍ରବଣ ହୋଇ ଉଠିଥିଲି । ମୁଁ ନିଶ୍ଚୟ କରିଥିଲି, ଯେ ପର୍ଯ୍ୟନ୍ତ ସେ ମୋତେ ନିଜ ନିଷ୍ପତ୍ତି ନ ଜଣାଇବ, ସେ ପର୍ଯ୍ୟନ୍ତ ମୁଁ ତାକୁ ଆଉ ଚିଠି ଲେଖିବି ନାହିଁ । ଲେଖି ମଧ୍ୟ ନଥାନ୍ତି, ଯଦି ପରିବାର ବର୍ଗ ଏକ ଜିଦ୍ ଧରି ନଥାନ୍ତେ ।

ସେମାନଂକର ଜିଦ୍ ସମ୍ମୁଖରେ ମୋତେ ମଥାନତ କରିବାକୁ ପଡିଥିଲା । କେବଳ ସେମାନଂକୁ ସାନ୍ତ୍ୱନା ଦେବା ପାଇଁ ଅବିନାଶ ରାୟ ଅବସର ପ୍ରାପ୍ତ ସେଶନଜଜ୍‌ଙ୍କ ଘରକୁ ଯାଇ ତାଂକ କନ୍ୟା ସୁଶ୍ରୀ ଲଲିତା କୁମାରୀଂକୁ ଦେଖିବାକୁ ବାଧ ହୋଇଥିଲି । ତାପରେ ସଂଧ୍ୟାରେ ଟ୍ରେନ ଏବଂ ଯାତ୍ରା ଏକ ନିଷ୍ପତ୍ତି ପାଇଁ ।

ଘୋଡା ଗାଡି ସହରର ମନୋରମ ହ୍ରଦ କୂଳେ କୂଳେ ଏକ ମଧୁର ଗତିରେ ମୀନାକ୍ଷୀର କ୍ୱାର୍ଟର ଅଭିମୁଖେ ଆଗେଇ ଚାଲିଥିଲା । ମୁଁ ସହରକୁ ଲକ୍ଷ୍ୟ କଲି । ସହର, ମୋତେ ଜଣାଗଲା, ଯେମିତି ଏଇ ଦୀର୍ଘ ଦଶ ଏଗାର ମାସ ମଧ୍ୟରେ ଟିକେ ବି ବଦଳି ନାହିଁ । ହ୍ରଦର ବାଁ ପଟ ପ୍ରବେଶ ଦ୍ୱାର ନିକଟସ୍ଥ ପାଇନ ଗଛ ଏବେ ମଧ୍ୟ ଠିକ ସେଇପରି ପବନରେ ହଲୁଛି, ଠିକ୍ ଯେମିତି ଗତଥର ହଲୁଥିଲା । ହୁଏତ ଗଛର ଗଣ୍ଡିରେ ମୋର ଓ ମୀନାକ୍ଷୀର ନାଁ ଏବେ ମଧ୍ୟ ସ୍ପଷ୍ଟ ପଢି ହେଉଥିବ ।

ଥରେ ଥରେ ମୋତେ ଲାଗେ କଲେଜ ଛାଡିବା ପରେ ମୀନାକ୍ଷୀ ଯେମିତି ଖୁବ୍ ବଦଳି ଯାଇଛି । କଲେଜରେ ଏକାନ୍ତ କ୍ଷଣମାନଙ୍କରେ ଭବିଷ୍ୟତ ଚିନ୍ତା କଲାବେଳେ ସେ ବିବାହକୁ ପ୍ରଥମ ସ୍ଥାନ ଦେଉଥିଲା । କିନ୍ତୁ ଅଧାପିକା ହେଲା ଠାରୁ, ଏବଂ ଦୂରରେ ରହିଲା ପର କ୍ଷଣରୁ ସେ ଯେମିତି ବିବାହ କଥା ସଂପୂର୍ଣ୍ଣ ଭୁଲି ଯାଇଛି । ହୁଏତ ମୁଁ ତାକୁ ହତାଶ କରିଛି । ସେ ଚାହୁଁଥିଲା ମୁଁ 'କଂପିଟେଟିଭ' ଦିଏ । ସରକାରଂକ ଅଧୀନରେ ବଡ ଅଫିସର ହୁଏ । କିନ୍ତୁ ମୁଁ ହେଲି ଅବଶେଷରେ ବ୍ୟବସାୟୀ । ଇଟା, ବାଲି ସିମେଣ୍ଟକୁ ନେଇ ମୁଁ ବଂଚିଲି । ସେ ବୋଧହୁଏ ଏଇଟାକୁ ପସନ୍ଦ କରିପାରିଲା ନାହିଁ । ଏବଂ ସତ କହିବାକୁ ଗଲେ ମୋ 'କଂଜରଭେଟିଭ' ମନ ତା'ର ଚାକିରୀ କରିବା ପ୍ରସ୍ତାବକୁ ଆନ୍ତରିକତା ସହିତ ସମର୍ଥନ କରି ପାରିନଥିଲା । କେବଳ ସଂପର୍କର ଏକ ସୂତାଖିଅ ଆମକୁ ଏତେଦିନ ଧରି ବାଂଧି ରଖିଥିଲା ଏବଂ ରଖିଛି ମଧ୍ୟ ।

ମନେ ଅଛି, ଠିକ୍ ମୀନାକ୍ଷୀର ଅଧ୍ୟାପିକା ହେବାର କିଛିଦିନ ପରେ, ଦିନେ ବାପା ସ୍ପଷ୍ଟ କହି ଦେଇଥିଲେ, "ଅଧ୍ୟାପିକା ବୋହୂ ଆମର ଦରକାର ନାହିଁ।"

ମୁଁ ମୀନାକ୍ଷୀକୁ ଠିକ୍ ଏଇ କଥା ଲେଖିଥିଲି। ଉତ୍ତରରେ ସେ ଏଇ କଥାଟିକୁ ସଂପୂର୍ଣ୍ଣ ଏଡାଇ ଦେଇ ମୋତେ ନିଜ ସ୍ୱାସ୍ଥ୍ୟର ଯତ୍ନ ନେବାଲାଗି ଉପଦେଶ ଦେଇଥିଲା। ସେଇଟା ତ ଅନେକ ଦିନ ତଳର କଥା। ତାପରେ ଅନେକ ଘଟଣା ଘଟିଛି। ମୀନାକ୍ଷୀକୁ ସବୁ ଜଣାଇ ଦେବାର କର୍ତ୍ତବ୍ୟରେ ମୁଁ ଅବହେଳା କରିନାହିଁ। ତଥାପି ଥରେ ଥରେ ତାର ନିର୍ଲିପ୍ତତା ଦେଖି ମୁଁ ମନେ ମନେ ଅସହ୍ୟ ହୋଇଉଠେ। ଆଘାତ ପାଏ।

ତାର ବ୍ୟବହାରରୁ କେବେ ଜଣାପଡେ ନାହିଁ ତା ପରିବର୍ତ୍ତନ। କିନ୍ତୁ ଏମିତି କେତେଟା ଜିନିଷ ଅଛି, ଯେଉଁଥିରୁ ମୁଁ ସ୍ପଷ୍ଟ ଜାଣିପାରେ ତା' ଅନ୍ତର ମଧ୍ୟରେ ଘଟିଯାଇଥିବା ପରିବର୍ତ୍ତନ ମାନଂକୁ। ଏବଂ ବିଶ୍ଳେଷଣ କରିବାକୁ ବାଧ ହୁଏ ଏକାନ୍ତରେ, କାହିଁକି ଏ ପରିବର୍ତ୍ତନ ? ଏହାର କାରଣ ମୁଁ ନିଜେ ନୁହେଁ ତ ?

ମୁଁ ଆତ୍ମସ୍ଥ ହେଲି। ଘୋଡାଗାଡିର ଗତି ଧିମେଇ ଆସିଛି। ମୁଁ ସମ୍ମୁଖକୁ ଲକ୍ଷ୍ୟ କଲି। ସହରର ମୁଖ୍ୟ ବଜାର ମଧ ଦେଇ ଘୋଡାଗାଡି ଆଗେଇ ଯାଉଛି। ହଠାତ୍ ଅନୁଭବ କଲି, ମୀନାକ୍ଷୀ ପାଇଁ କିଛି ମୁଁ ଆଣିପାରିନାହିଁ। ଗୋଲାପ ଫୁଲର ଏକ ତୋଡା ନେଇଗଲେ କେମିତି ହୁଅନ୍ତା, ମୁଁ ଭାବିଲି। ମୁଁ ଜାଣିଥିଲି, ଦୁନିଆରେ ଗୋଲାପ ଫୁଲ ତାର ସର୍ବାଧିକ ପ୍ରିୟ। ମୁଁ ଘୋଡା ଗାଡି ଚାଳକକୁ ଅଟକିବା ପାଇଁ ଇଂଗିତ କଲି।

ଅନେକ ଗୁଡିଏ ସରକାରୀ କ୍ୱାର୍ଟର୍ସ ମଧ୍ୟରୁ, ତା କ୍ୱାର୍ଟରଟି ନିତାନ୍ତ ଭିନ୍ନ ଭାବେ ଏକ ଅପରିଚିତ ପାଇଁ ମଧ ପରିଚିତ ହୋଇପଡେ। ଏବଂ ମୁଁ ତାର ଏଇ ଗୁଣକୁ ପସନ୍ଦ କରେ। ଏଇଥି ପାଇଁ ମୁଁ ତାକୁ ଅତୀତର କୌଣସି ଏକ କ୍ଷଣରେ ହଠାତ୍ ଭଲ ପାଇ ବସିଥିଲି। କ୍ୱାର୍ଟର ସମ୍ମୁଖରେ ବିଭିନ୍ନ ପ୍ରକାର ଫୁଲ ମାନଂକର ଏକ ସୁନ୍ଦର ଉଦ୍ୟାନ ହିଁ ତା କ୍ୱାର୍ଟରକୁ ଅନ୍ୟ କ୍ୱାର୍ଟର ମାନଂକଠାରୁ ପୃଥକ କରିଦେଇଛି। ଘୋଡା ଗାଡିଟି ତାରି କ୍ୱାର୍ଟର ସମ୍ମୁଖରେ ଅଟକିଗଲା। ମୁଁ ଓହ୍ଲାଇ ପଡି ଚାଳକକୁ ତାର ପ୍ରାପ୍ୟ ଦେଇ ବାଁ ହାତରେ ନିଜ ସୁଟକେଶ ଏବଂ ଡାହାଣ ହାତରେ ବଜାରରୁ କିଣିଥିବା ଗୋଲାପ ଫୁଲର ତୋଡାଟିକୁ ଧରି ଫାଟକ ଖୋଲି ଉଦ୍ୟାନ ଭିତରେ ପାଦ ଦେଲି।

ଛୋଟ ଏକ 'ନେମ୍ ପ୍ଲେଟ'। ଅକ୍ଷର ଇଂରାଜି। ମୀନାକ୍ଷୀ ମହାପାତ୍ର। ତା ନିକଟରେ କଲିଂବେଲ। ମୁଁ କଲିଂବେଲ୍‌ରେ ଅଂଗୁଳିର ଚାପ ଦେବା ପୂର୍ବରୁ ଥରେ ଚତୁର୍ଦ୍ଦିଗ ନିରୀକ୍ଷଣ କଲି। ପ୍ରତ୍ୟେକ ବସ୍ତୁରେ ତା'ରି ଛାପ ସ୍ପଷ୍ଟ ପରିଲକ୍ଷିତ। ମୁଁ ସନ୍ତୁଷ୍ଟ ହୋଇ ମୁଣ୍ଡ ହଲାଇଲି। ସୁରୁଚିପୂର୍ଣ୍ଣ ଗାଂଭୀର୍ଯ୍ୟତାର ବିଶେଷତ୍ୱ।

ପୂର୍ବର ସମସ୍ତ ଚିନ୍ତା ଓ ଭାରାକ୍ରାନ୍ତ ମସ୍ତିଷ୍କର ବୋଝ ଯେମିତି ହାଲୁକା ହୋଇ ଉଦ୍ୟାନ ମଧ୍ୟରେ ହିଁ ରହିଥିଲା। ମୁଁ ତାର ସାନ୍ନିଧ ପାଇଁ ବ୍ୟାକୁଳ ହୋଇ 'କଲିଂବେଲ୍' ଚିପିବା ପୂର୍ବରୁ ହଠାତ୍ ଦ୍ୱାର ଖୋଲିଗଲା। ଏବଂ ସେ ନିଜର ସମସ୍ତ ମନୋରମ

ଆକର୍ଷଣ ଓ ସୌନ୍ଦର୍ଯ୍ୟ ସହ ମୋ ସମ୍ମୁଖରେ ଠିଆ ହୋଇଗଲା । ସେ ନିଜର ସାଧାରଣ ସ୍ୱାସ୍ଥ୍ୟ, ଖୁବ୍ ଗୋରା ରଂଗ, ଗୋଲ ମୁହଁ, କଳା ଲଂବା କେଶ, ବଡ ବଡ ଲଂବା ଆଖି, ସିଧା ନାକ, ରକ୍ତିମ ଅଧର, ବଂକା ଭ୍ରୂ ସହ ଗଳାରେ ସରୁ ସୁନା ଚେନ୍, କାନରେ ଆଧୁନିକ ଡିଜାଇନ୍‌ର ରିଂ , ଡାହାଣ ହାତରେ ପଟେ କାଚ, ବାଁ ହାତରେ ସ୍କୋୟାର ଘଡି, କଳା ବ୍ଲାଉଜ ଓ ଈଷତ୍ ଗୋଲାପୀ ଶାଢୀ ପିନ୍ଧି ମୋ ସମ୍ମୁଖରେ ଠିଆ ହୋଇଥିଲା ନିତାନ୍ତ ଆଶ୍ଚର୍ଯ୍ୟ ହୋଇ ।

ମୁଁ ତାକୁ ଦେଖି ଚାଲିଥିଲି ନିଜର ସମସ୍ତ କ୍ଳାନ୍ତି ଭୁଲି । ସେ କଲେଜ ବାହାରିଥିଲା ନିଶ୍ଚୟ । ମୁଁ ହଠାତ୍ ତାର ଆଶ୍ଚର୍ଯ୍ୟ ଚକିତ ଭଂଗୀ ଦେଖି ହସି ଉଠିଲି । ସେ ପ୍ରକୃତିସ୍ଥ ହେଲା ।

''କି ଆଶ୍ଚର୍ଯ୍ୟ ! ତମେ ପ୍ରକୃତରେ ମୋ ସାମ୍ନାରେ ଠିଆ ହୋଇଛ ନା ମୁଁ ସ୍ୱପ୍ନ ଦେଖୁଛି ।'' ସେ ମୃଦୁ ହସି ନିଜ ଖୁସି ପ୍ରଦର୍ଶନ କଲା ।

''ପରୀକ୍ଷା କରି ଦେଖ । ତମ ସାମ୍ନାରେ ମୁଁ ଠିଆ ହୋଇଛି ।'' ମୁଁ କହିଲି ।

''ଆସ ଭିତରକୁ ଆସ ।'' ସେ ମୋତେ ଭିତରକୁ ଟାଣିନେଲା ''କିନ୍ତୁ କୌଣସି ପ୍ରକାରର ସଂବାଦ ନ ଦେଇ ଏପରି ଅତର୍କିତ ଭାବେ କାହିଁକି ? ସେ ମୋତେ ଲକ୍ଷ୍ୟ କଲା ।

''ଏମିତି... ତମକୁ ଚମକାଇବା ପାଇଁ ।'' ମୁଁ ନିଜ ଉଦ୍ଦେଶ୍ୟ ପ୍ରଥମରୁ କହିବା ପାଇଁ ଇଚ୍ଛା କଲି ନାହିଁ । ସମ୍ମୁଖରେ ଦିନ ସାରା ପଡିଛି । କେତେବେଳେ ବି କୁହାଯାଇପାରେ ।

ସେ ମୋତେ ପରୀକ୍ଷା କଲା ପରି ଲକ୍ଷ୍ୟ କଲା, ''ସତ କହୁଛ ?''

''ନିଶ୍ଚୟ ।'' ମୁଁ ହସିଲି ''ବିଶ୍ୱାସ ହେଉ ନାହିଁ ?''

ପ୍ରକୃତରେ ମୋର ବିଶ୍ୱାସ ହେଉନାହିଁ । ତମେ ପୁଣି ତମର କୁଲି, ରେଜା, ଲୁହା, ବାଲି... ଇତ୍ୟାଦିଂକୁ ଛାଡି ବିନା କାମରେ ଯେ ଚାଲି ଆସିବ ତା ମୁଁ ବିଶ୍ୱାସ କରି ପାରୁନାହିଁ ।'' ସେ ହସୁଥିଲା । କିନ୍ତୁ ମୋତେ ଲାଗିଲା ଯେମିତି ସେ ପରୋକ୍ଷରେ ମୋତେ ବ୍ୟଂଗ କରୁଛି । ମୁଁ କିଛି କହିଲି ନାହିଁ ।

ସେ ବୋଧହୁଏ ନିଜ ବକ୍ତବ୍ୟର ପଛ ପଟେ ଲୁଚି ରହିଥିବା ବ୍ୟଂଗୋକ୍ତିକୁ ବୁଝିପାରିଲା ଏବଂ ମୋତେ ଗଂଭୀର ହେବା ପାଇଁ ସୁଯୋଗ ନ ଦେଇ ମୋ ହାତର ଗୋଲାପ ଫୁଲ ତୋଡାକୁ ଲକ୍ଷ୍ୟ କରି ପଶ୍ନ କଲା, ''ଫୁଲ କାହାପାଇଁ ?''

''ତମରି ପାଇଁ ।'' ମୁ ତା ହାତକୁ ବଢେଇ ଦେଲି, ''କିନ୍ତୁ ତମ ବଗିଚାର ନୁହେଁ ।''

ସେ ହସି ଉଠିଲା, ''ଫୁଲ ପାଇଁ ଧନ୍ୟବାଦ ।''

ଲୀଳା ତା ଚାକରାଣୀ, ଯିଏ କି ମୋତେ ଭଲ ଭାବେ ଚିହ୍ନେ ଏବଂ ମିନାକ୍ଷୀ ଓ ମୋ ମଧ୍ୟର ସଂପର୍କକୁ ମଧ୍ୟ ବୁଝେ, ଘର ଭିତରୁ ବାହାରି ଆସି ନମସ୍କାର କଲା ।

ମୀନାକ୍ଷୀ ହସିଲା, ''ଲୀଳା ତମକୁ ଭଲ ଭାବେ ଚିହ୍ନିଗଲାଣି ।''

ଲୀଳା ମୋ ସୁଟକେଶ ଧରି ଭିତରକୁ ଚାଲିଗଲା ପରେ ମୀନାକ୍ଷୀ ନିଜ ଘଡି ଦେଖି କହିଲା, ''ତମେ ଗାଧୋଇ ପଡ । ମୁଁ କଲେଜରୁ ଛୁଟି ନେଇ ଆସୁଛି ।''

ମୁଁ ନୀରବରେ ମୁଣ୍ଡ ହଲାଇଲି ।

ଅପରାହ୍ନର ସୂର୍ଯ୍ୟ ହ୍ରଦ ଜଳରେ ପ୍ରତିଫଳିତ ହୋଇ ମୀନାକ୍ଷୀର ଗୋରା ମୁହଁକୁ ଉଜ୍ଜ୍ୱଳ କରି ପକାଇଥିଲା । ସେଇ ପରିଚିତ ପାଇନ୍ ବୃକ୍ଷ ତଳେ ଆମେ ବସିଥିଲୁ । ତା'ର ରେଶମ ପରି ନରମ ଓ କୋମଳ ପାପୁଲିକୁ ନିଜ ହାତରେ ଚାପି ଧରି ମୁଁ ତାକୁ ଚାହିଁଥିଲି । ସେ ଚାହିଁଥିଲା ହ୍ରଦର ନୀଳ ଜଳକୁ ।

ଦିନ ସାରା ଆମେ ଗପିଥିଲୁ ବିଭିନ୍ନ ବିଷୟ ଉପରେ । ଅନେକ ଥର ମୁଁ ଚାହିଁଥିଲି କଥା ପ୍ରସଂଗରେ ମୋ' ଆସିବା ଉଦ୍ଦେଶ୍ୟ ତାକୁ କହିଦେବା ପାଇଁ । ହେଲେ କହି ପାରିନଥିଲି ଏବଂ କହି ନ ପାରିଥିବା ଯୋଗୁଁ ମୁଁ ଅସ୍ଥିର ହୋଇ ଉଠିଥିଲି ।

''ତମ ବ୍ୟବସାୟ କେମିତି ଚାଲିଛି !'' ସେ ମୋତେ ହେଲାଇ ଦେଲା ।

ମୁଁ ତା' ପାପୁଲିରେ ଚୁମା ଦେଲି । ସେ ହସିଲା । ମୁଁ କହିଲି, ''ସେ କଥା କିଛି କୁହ ନାହିଁ । ତମ ନିଜ କଥା କୁହ ।''

ସେ ଦୀର୍ଘ ଶ୍ୱାସ ତ୍ୟାଗ କରି ମୋତେ ଲକ୍ଷ୍ୟକଲା । ମୋ ହାତକୁ ଚାପି ଧରି ହଠାତ୍ ସେ ଭାବପ୍ରବଣ ହୋଇ ଉଠି କହିଲା, ''କେବଳ ଏଇ ମୁହୂର୍ତ୍ତମାନଂକ ପାଇଁ ବଂଚିଛି ।'' ମୋତେ ଲାଗୁଛି ଯେମିତି ପୃଥିବୀ ନିଜ ଗତି ବନ୍ଦ କରି ସ୍ଥିର ହୋଇ ଯାଇଛି ଏବଂ କେବଳ ତମେ ଓ ମୁଁ ବଂଚିଛୁ ।''

ମୁଁ ହସିଲି । ତା ପାପୁଲିରେ ଆଉଥରେ ଚୁମା ଦେଲି ''ମୁଁ ଆଉ ଏକାକୀ ପାରୁନି ମିନୁ । ତମେ ଚିଠିରେ ଲେଖିବ କହିଥିଲ । କିନ୍ତୁ ଲେଖିଲ ନାହିଁ । ଜାଣିଛ, ମୁଁ କେତେ ରାଗିଯାଇଥିଲି ।''

ସେ ହଠାତ୍ ଗଂଭୀର ହୋଇ ଉଠିଲା,''ତମେ କଂପିଟେଟିଭ କାହିଁକି ଦେଲ ନାହିଁ ? ମୋ ଜୀବନର ଏକ ବଡ ସ୍ୱପ୍ନକୁ ଭାଂଗି ଦେଇ ତମକୁ ଲାଭ କଅଣ ମିଳିଲା ?''

ମୁଁ ବ୍ୟସ୍ତ ହୋଇ ଉଠିଲି । ପ୍ରତ୍ୟେକ ଥର ଏ ପ୍ରସଂଗ ଉଠିଲେ, ସେ ମୋତେ ଏଇ ପରି ଆଘାତ କରେ । ଏବଂ ମୁଁ ଇଚ୍ଛାକରି ମଧ୍ୟ ତାକୁ ଆଘାତ ଦେଇ ପାରେନି ।

ସେ ମୋ କାଂଧରେ ମୁଣ୍ଡ ରଖି ହ୍ରଦର ଜଳରେ ଦୃଷ୍ଟିବଦ୍ଧ କରି କହିଲା ''ଗୋଟାଏ କଥା କହିବି, କିଛି ଖରାପ ଭାବିବ ନାହିଁ ?''

ମୁଁ ତାକୁ ଲକ୍ଷ୍ୟ କଲି । ସେ କହିଲା, ''ମୁଁ ତମକୁ କେବେ ଭଲ ପାଇନଥିଲି ।''

ମୁଁ ଚମକି ପଡିଲି । ସେ ହସି ଉଠିଲା, ''ବ୍ୟସ୍ତ ହୁଅନି, ବ୍ୟବସାୟୀ ଅବିନାଶକୁ କେବେ ଭଲ ପାଇନଥିଲି । ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ଅବିନାଶକୁ ମୁଁ ଜୀବନ ଦେଇ ଭଲ ପାଇଥିଲି । କିନ୍ତୁ ତମେ ସେ ଅବିନାଶକୁ ମାରିଦେଲ ।''

ମୁଁ ଦୀର୍ଘଶ୍ୱାସ ତ୍ୟାଗ କଲି । ମୋ ନିଜ ବ୍ୟକ୍ତିଗତ ଜୀବନକୁ ଆକ୍ଷେପ କରି ମୀନାକ୍ଷୀ ମୋତେ ଅନେକ ଛୋଟ କରି ଦେବାକୁ ଚେଷ୍ଟା କରୁଛି । ପ୍ରତିବାଦ କରି ଲାଭ ନାହିଁ ମୁଁ ଏ ମୁହୂର୍ତ୍ତରେ ଯୁକ୍ତି ପାଇଁ ପ୍ରସ୍ତୁତ ନୁହେଁ । ମୋ ହୃଦୟରେ ସମସ୍ତ ତ୍ୟାଗ ଆଶା, କାମନା ଅନେକ ଦିନୁ ଏକ ବିନ୍ଦୁରେ କେନ୍ଦ୍ରୀଭୂତ ହୋଇ ସାରିଥିଲେ । ମୀନାକ୍ଷୀର କୌଣସି ପ୍ରକାରର ଆଘାତ ମୋତେ ଭାବ ପ୍ରବଣ କରିପାରିବ ନାହିଁ ।

ତା ଶରୀରର କୋମଳତା ମୋ ମନକୁ ଆନ୍ଦୋଳିତ କରିବା ଆରଂଭ କରିଦେଇଥିଲା । ତା ଶରୀରରୁ ଏ ନିହାତି ଉତ୍ତେଜକ ଗଂଧ ମୋତେ ସ୍ୱାଭାବିକ ଭାବେ ଉତ୍ତେଜିତ କରୁଥିଲା ଧୀରେଧୀରେ ।

ସେ ମୋ ମୁହଁରେ ହାତ ମାରି କହିଲା, "ଜାଣିଛ, ମୋତେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରୁ ରିସର୍ଚ୍ଚ ଫେଲୋସିପ୍ ମିଳିଛି, ଏଇ ଦୁଇ ତିନି ମାସ ମଧ୍ୟରେ ମୋତେ ଷ୍ଟେଟସ୍ ଯିବାକୁ ପଡିପାରେ ।"

ପ୍ରକୃତରେ ମୁଁ ଆଶ୍ଚର୍ଯ୍ୟ ହୋଇ ପଡିଲି । "ମୋତେ ତ କେବେ ଲେଖିନ ଏକଥା ?"

"ଆଜି କାଲି ଲେଖିବି ବୋଲି ଭାବିଥିଲି । କିଂତୁ ତମେ ନିଜେ ଆସି ପହଂଚିଗଲ ।"

"ଶୁଭକାମନା ।" ମୁଁ ଅଭିନନ୍ଦନ ଜ୍ଞାପନ କଲି ।

"ତୁମେ ଖୁସି ହେଲନି ବୋଧେ" ସେ ସନ୍ଦେହ କରି ମୁହଁ ଉପରକୁ ଉଠାଇଲା ।

ମୁଁ ହସିବାକୁ ଚେଷ୍ଟାକଲି "ମୁଁ ଖୁବ୍ ଖୁସି ମିନୁ... । କିନ୍ତୁ... ।"

ସେ ସଂଯତ ହୋଇ ଉଠିବସି ମୋତେ ଲକ୍ଷ୍ୟ କଲା, "କିନ୍ତୁ... କିନ୍ତୁ ପୁଣି କଅଣ ?"

ମୁଁ ହ୍ରଦକୁ ଲକ୍ଷ୍ୟକଲି । ଛୋଟ ଛୋଟ 'ଶିକାରୀ' ରେ ନାରୀ ପୁରୁଷ ହ୍ରଦର ଜଳରେ ଭାସୁଥିଲେ । ଦୂର ଦେବଦାରୁ ଜଂଗଲ ମଧ୍ୟରୁ ଥଂଡା ପବନ ବହି ଆସୁଥିଲା । ସୂର୍ଯ୍ୟ ପାହାଡ ପଛପଟେ ଲାଲ ହୋଇ ଲୁଚି ଯାଉଥିଲେ । ଲଂବା, କଳା ସଡକରେ ଜନଗହଳି ବୃଦ୍ଧି ପାଇ ଯାଉଥିଲା ।

ସେ ମୋତେ ହଲାଇ ଦେଇ ପ୍ରଶ୍ନ କଲା ଶଂକିତ ହୋଇ, "କିନ୍ତୁ କଅଣ ।"

ମୁଁ ଦୀର୍ଘ ଶ୍ୱାସ ତ୍ୟାଗ କରି ତାକୁ ଅନେଇଲି । ଆଶଂକାରେ ତା ମୁହଁଟା ଆହୁରି ସୁନ୍ଦର ହୋଇ ଉଠିଥିଲା । ମଥାର କଳା କୁଂକୁମ ବିନ୍ଦୁଟି ସଂସାରର ସମସ୍ତ ସୁନ୍ଦରତାକୁ ତା ମୁହଁରେ ଜମା କରି ଦେଇଥିଲା । ପ୍ରଥମେ ମନ ହେଲା, ପ୍ରକୃତ କଥା କହିବି ନାହିଁ । କିନ୍ତୁ ତାର ଅନେକ ଆଘାତର ପ୍ରତିଦାନରେ ମାତ୍ର ଗୋଟିଏ ଆଘାତ ଦେବା ପାଇଁ ପାଉଥିବା ସୁଯୋଗ ଟିକୁ ହାତଛଡା କରିବାକୁ ଇଚ୍ଛା ହେଲା ନାହିଁ ।

ସିଧା ତା ଆଖିକୁ ଚାହିଁ କହିଲି, "ପରିବାର ବର୍ଗ ମୋ ବିବାହ ଯେତେ ଶିଘ୍ର କରିଦେବା ପାଇଁ ପ୍ରସ୍ତୁତ ହୋଇ ସାରିଲେଣି । ମୁଁ ତମରି ମତ ପାଇଁ ଆସିଛି ।"

ସେ ଆଖି ତଳକୁ କଲା । ବାଁ ହାତରେ ମାଟିରେ ଗାର ପକାଉ ପକାଉ ମୋତେ କହିଲା "ମୋ ମତର ପ୍ରୟୋଜନ କଅଣ ?"

"ସାତ ବର୍ଷ ଧରି କେବଳ ତମରି ମତକୁ ହିଁ ଅନେଇ ରହିଛି । ବାରଂବାର ତମ ନିକଟକୁ ଦୌଡି ଆସିଛି । ତଥାପି ତମେ କିଛି ଉତ୍ତର ଦେଇ ନାହଁ । ଏଥର ହୁଏତ ଏତେ ଶିଘ୍ର ପଚାରିନଥାନ୍ତି । କିନ୍ତୁ ତମେ ଯେତେବେଳେ ବିଦେଶ ଯିବାକୁ ପ୍ରସ୍ତୁତ ହୋଇ ସାରିଲଣି । ସେତେବେଳେ ମୁଁ ପଚାରିବାକୁ ବାଧ୍ୟ ହେଲି ।"

ମୀନାକ୍ଷୀ ଦୂର ଦେବଦାରୁ ଜଂଗଲକୁ ଚାହିଁ ଦୀର୍ଘଶ୍ୱାସ ତ୍ୟାଗ କଲା । ମୁଁ ନୀରବ ରହିଲି । ସେ ମୋତେ ଅନେଇଲା, "ତମକୁ ମୁଁ ପୃଥିବୀର ଅନ୍ୟ ଯେ କୌଣସି ପୁରୁଷ ଅପେକ୍ଷା ଅଧିକ ଭଲ ପାଏ । କିନ୍ତୁ ଥରେ ଥରେ ମୁଁ ଭାବେ, ତମ ସହିତ ମୋର ସାକ୍ଷାତ ନ ହୋଇଥିଲେ ଭଲ ହୋଇଥାନ୍ତା, ତମ ପ୍ରେମରେ ମୁଁ ପଡି ନଥିଲେ ଭଲ ହୋଇଥାନ୍ତା । ଏତେ ଯଂତ୍ରଣା, ଚିନ୍ତା, ଦୁଃଖ ହୁଏତ କାହାକୁ ଭୋଗିବାକୁ ପଡିନଥାନ୍ତା । କିନ୍ତୁ ତମ ସହିତ ମୋର ସାକ୍ଷାତ ହେଲା, ମୁଁ ତମ ପ୍ରେମରେ ପଡିଲି । ଏବଂ ଫଳ ବର୍ତ୍ତମାନ ସମ୍ମୁଖରେ । କଅଣ ମୋର ଉପସ୍ଥିତ କର୍ତ୍ତବ୍ୟ, ତା ମୁଁ ଏତେ ଦିନ ଚିନ୍ତାକଲା ସତ୍ତ୍ୱେ ମଧ୍ୟ ବୁଝିପାରୁନାହିଁ ।" ତାଙ୍କର ଆର୍ଦ୍ରତା ମୁଁ ସ୍ପଷ୍ଟ ଅନୁଭବ କଲି ।

ତା ପିଠିରେ ହାତ ଦେଇ ତାକୁ ନିଜେ ଆଡକୁ ଟାଣି ଆଣିଲି । ବିନା ପ୍ରତିବାଦରେ ସେ ମୋ ଶରୀର ଉପରେ ନିଜ ଦେହର ଭାର ଛାଡିଦେଇ ନିଜକୁ ସଂଯତ କଲା ।

"ମୋତେ ଭୁଲ ବୁଝନି ।" ମୁଁ ତା କାନରେ କହିଲି ।

ସେ ହସିଲା, "ମୁଁ ତମକୁ ଅନେକ ଦୁଃଖ ଦେଇଛି । ମୋତେ କ୍ଷମା କରିପାରିବ ?"

ହ୍ରଦର ଜଳଟା କଳା ହୋଇଯାଇଥିଲା । ସହରଟା ଆଲୋକରେ ଉଦ୍‌ଭାସିତ ହୋଇ ଉଠିଥିଲା । ଥଣ୍ଡା ଆରଂଭ ହୋଇ ଯାଇଥିଲା । ମୀନାକ୍ଷୀ ନିଜ ଫରକୋଟଟାକୁ ନିଜ ଛାତି ଉପରେ ଟାଣି ଧରି ମୋତେ ଅନେଇଲା, "ଗୋଟାଏ କଥା କହିବି ରଖିବ ?"

ମୁଁ ମନରେ ଆଶା ଭରି ତାକୁ ଲକ୍ଷ୍ୟ କଲି ।

"ତମେ ବ୍ୟବସାୟ ଛାଡିଦିଅ । ମୁଁ ବିଦେଶ ଯିବି ନାହିଁ । ତମେ ଜାଣନି, ବ୍ୟବସାୟ ପ୍ରତି ମୋର ଗୋଟିଏ 'ଏଲାର୍ଜିକ' ଅଛି । ତମେ ଯଦି ଚାହିଁବ ମୁଁ ଚାକିରୀ ମଧ୍ୟ ଛାଡିଦେବି ।" ସେ ଅଧାଂରରେ ମୋ ଓଠକୁ ସ୍ପର୍ଶକଲା ।

ମୁଁ ହସିଲି "ଅସଂଭବ । ବ୍ୟବସାୟ ଛାଡିଲେ କରିବି କଅଣ ? କଂପିଟେଟିଭ ପାଇଁ ଆଉ ବୟସ ନାହିଁ ।"

ସେ ହଠାତ୍ ଗଂଭୀର ହୋଇ ଉଠିଲା, "ତମକୁ ଦୁଇଟା ଭିତରୁ ଗୋଟାଏ ବାଛିବାକୁ ପଡିବ ମୋତେ ବା ବ୍ୟବସାୟକୁ ।"



ମୁଁ ମଧ୍ୟ ଗଂଭୀର ହୋଇଗଲି, ''ମୁଁ ମଧ ଠିକ ସେଇପରି କହିପାରେ, ମୋତେ ବା ବିଦେଶ ।''

ସେ ଉଠି ଠିଆ ହେଲା । ଦୁଇପଦ ଆଗେଇ ଯାଇ କହିଲା ''ଚାଲ ଥଂଡା ହେଲାଣି ।''

ମୁଁ ଶୟନ କକ୍ଷର ଏକାନ୍ତ ବାତାବରଣରେ ଶୋଇବାକୁ ଚେଷ୍ଟା କରୁଥିଲି । କକ୍ଷର ଝର୍କା, ଦ୍ୱାର ସବୁ ବନ୍ଦ ଥିଲା । ମୁଁ ରେଜେଇ ଭିତରେ ଦିନ ଭିତରର ଘଟଣାବଳୀକୁ ସଂଯୋଗ କରି କୌଣସି ଏକ ନିଷ୍ପତ୍ତିରେ ପହଂଚିବା ପାଇଁ ଚେଷ୍ଟା କରୁଥିଲି । ଏବଂ ମୀନାକ୍ଷୀର ଅନୁପସ୍ଥିତିକୁ ଭୀଷଣ ଭାବେ ଅନୁଭବ କରୁଥିଲି ।

ଦ୍ୱାରରେ କିଏ ଜଣେ ଆଘାତ କଲା । ମୁଁ ଉଠି ଦ୍ୱାର ଖୋଲିଲି । ନାଇଟ୍ ଡ୍ରେସ ପିନ୍ଧି ମୀନାକ୍ଷୀ ମୋ ସମ୍ମୁଖରେ ଠିଆ ହୋଇଥିଲା । ପୂର୍ବର ଗାଂଭୀର୍ଯ୍ୟ ପରିବର୍ତ୍ତେ ତା ମୁହଁରେ ଲାଗି ରହିଥିଲା ଏକ ଅସହାୟ ଏକାକୀ ନାରୀର ବିବଶତା । ତା ଆଖି ଯୋଡାକ ଉତ୍ତେଜନାରେ ଲାଲ ହୋଇ ଉଠିଥିଲା ।

ଦ୍ୱାରବନ୍ଦ କରି ସେ ମୋତେ ଆଲିଙ୍ଗନାବଦ୍ଧ କରି ଧୀର ସ୍ୱରରେ କାନ ପାଖରେ ଅନୁରୋଧ କଲା ''କିସ୍ ମି ।'' ଏବଂ ମୁଁ ତା ଅନୁରୋଧ ରକ୍ଷା କରି ତାକୁ ଚୁମା ଦେଲି ।

ତା ଶରୀରର ଉଷ୍ଣତା ମୋତେ ହଠାତ୍ ଉତ୍ତେଜିତ କରିପକାଇଲା । ଏବଂ ଏକ ନାରୀର ଅନ୍ତରଂଗ ମୁହୂର୍ତ୍ତମାନଂକରେ ଏକ ପୁରୁଷର ନାୟିତ୍ୱ ମୁଁ ତୁଲାଇବାକୁ ଲାଗିଲି । ସେ ଆନନ୍ଦରେ ସିତ୍କାର କରୁଥିଲା । ମୁଁ ପୁଲକିତ ହୋଇ ଉଠିଥିଲି । ତାର ନଗ୍ନ ଶରୀର ଓ ମୋ ନଗ୍ନ ଶରୀରର ଭାର ଖଟ ଉପରେ । ଆମେ ଆମ ନିଜର ସମସ୍ତ ପ୍ରକାର ବ୍ୟବଧାନକୁ ଜୋର କରି ଦୂରେଇ ଦେଇ ଥିଲୁ । କକ୍ଷଟି ଉଷ୍ଣଥିଲା । ବାହାରେ ଭୀଷଣ ଥଂଡା ।

ମୀନାକ୍ଷୀର ଶରୀର ହଠାତ୍ ଢିଲା ହୋଇ ଖଟ ଉପରେ ପଡିଗଲା । ମୁଁ କ୍ଳାନ୍ତିରେ ତା ଛାତିରେ ହାତ ରଖି ଶୋଇ ପଡିଲି ତାର ଅତି ନିକଟରେ । ସେ ମୋତେ ଚୁମା ଦେଲା । ମୁଁ ତା ଆଖି, କାନ, ଗଳା ଏବଂ ଛାତିରେ ଚୁମା ଦେଲି । ସେ ହସି ଉଠିଲା । ମୁଁ ମଧ୍ୟ ହସି ଉଠିଲି । ଦଶ ଏଗାର ମାସ ପରେ ନିଜ ମାନସିକ ଅସ୍ଥିରତାକୁ ଦୂର କରି ମୁଁ କେତେକାଂଶରେ ସହଜ ହୋଇ ପଡିଲି ।

ମୋ ମଥାର କେଶ ମଧ୍ୟରେ ଅଂଗୁଳି ଚାଳନା କରୁ କରୁ ସେ ମୋତେ କହିଲା, ''ତମେ ମୋତେ ସବୁବେଳେ ଏମିତି ରଗାଇ ଦିଅ କାହିଁକି ?''

ମୁଁ ହସିଲି । ମୋର ମନେ ହେଲା ଯେମିତି ମିନାକ୍ଷୀ ମୋ ସହିତ 'କଂପ୍ରମାଇଜ' କରିବା ପାଇଁ ଆସିଛି । ଏବଂ ମୁଁ ଜିତି ଯାଉଛି ।

ନିଜକୁ ସଂଯତ କରି ସେ ଉଠି ଠିଆ ହେଲା, ''ଏଥର ମୁଁ ଯାଏଁ । ଲୀଳା ଯଦି ଆସି ମୋତେ ନ ଦେଖେ, ହୁଏତ ସେ ଅନ୍ୟ ପ୍ରକାର ଭାବିବ ।''

ମୁଁ ତା ହାତ ଧରି ନେଇ ପ୍ରଶ୍ନ କଲି, ''ବିବାହ ବିଷୟରେ କଅଣ ଠିକକଲ ?''

ସେ ଦୀର୍ଘଶ୍ୱାସ ତ୍ୟାଗକରି ଅତି ଧୀର ଭାବେ ନିଜ ହାତକୁ ମୋ ହାତମଧ୍ୟରୁ ଖସାଇ ନେଇ କହିଲା, ''ତମେ ବ୍ୟବସାୟ ଛାଡି ପାରିବ ନାହିଁ। ଏବଂ ମୁଁ ବ୍ୟବସାୟୀର ପତ୍ନୀ ହେବାକୁ ଚାହେଁ ନାହିଁ। ଆମେ ଦୁହେଁ 'ଅନକଂପ୍ରମାଇଜ୍' ପ୍ରକୃତିର। ତେଣୁ... ।'' ସେ ହଠାତ୍ ଅଟକିଗଲା, ଏବଂ ମୋ ଛାତି ଭିତରେ ଏକ ଶୂନ୍ୟତା ସୃଷ୍ଟି ହେଲା।

ମୋତେ ଅନେଇ ସେ ହସିଲା, ''ବିଦେଶ ଯିବା ସୁଯୋଗ ଛାଡି ମୁଁ ଘର କୋଣରେ ପଶିପାରିବିନି ବୋଲି ଧରିନିଅ।''

ମୁଁ ଅସ୍ପଷ୍ଟ ସ୍ୱରରେ ପ୍ରଶ୍ନକଲି, ''ତାହା ହେଲେ ?''

''ତମେ ସ୍ୱାଧୀନ। ଯାହା ଇଚ୍ଛା କରିପାର। ମୁଁ ଆପତ୍ତି କରିବି ନାହିଁ।'' ସେ କହିଲା ଏବଂ ଦ୍ୱାର ନିକଟକୁ ଅଗ୍ରସର ହେଲା।

ମୁଁ ତାକୁ ସେଇପରି ଚାହିଁଥିଲି ଯେତେବେଳେ ସେ ଦ୍ୱାର ଖୋଲି ମୋତେ ପ୍ରଶ୍ନ କଲା, ''ତମେ ବୋଧହୁଏ ଆସନ୍ତା କାଲି ସକାଳ ବସରେ ଯିବ ?''

ମୁଁ ମୁଣ୍ଡ ହଲାଇଲି। ସେ ହସିଲା, ''ମୁଁ ଜାଣିଥିଲି। ଶୁଭରାତ୍ରୀ। ଶୋଇପଡ। ବସ ସାଢେ ଛଅଟାରେ। ମୁଁ ତୁମକୁ ପାଂଚଟାରେ ଡାକିଦେବି।''

ଏବଂ ଦ୍ୱାର ବନ୍ଦ କରି ଚାଲିଗଲା। ମୋତେ ଲାଗିଲା ଶେଷବେଳକକୁ ଯେମିତି ସେ କାନ୍ଦିବା ପାଇଁ ଯାଉଥିଲା। ମୁଁ କିନ୍ତୁ କୌଣସି ପ୍ରକାରର ଦୁଃଖ ଅନୁଭବ କରି ପାରିଲି ନାହିଁ। ଆମ ମଧ୍ୟରେ ଥିବା ସଂପର୍କର ସୂତାଖିଅଟି ଛିଣ୍ଡି ଯାଇଥିଲା।

ହଠାତ୍ କକ୍ଷ' ମଧ୍ୟରେ ମୋତେ ଅଣନିଶ୍ୱାସ ଲାଗିଲା। ମୁଁ ଝର୍କା ଖୋଲି ଭାବିଲି, ''ଘରକୁ ଫେରି ବାପାଂକୁ ମିଷ୍ଟର ରାୟଙ୍କ କନ୍ୟା ସୁଶ୍ରୀ ଲଳିତା କୁମାରୀ ବିଷୟରେ ହିଁ ଭରି ଦେବା ହିଁ ଉଚିତ ହେବ।

ସେ ଦିନ ଏଇ ନିଷ୍ପତ୍ତି ପରେ ମଧ୍ୟ ଅନେକ ରାତିଯାଏଁ ମୁଁ ଶୋଇ ପାରିନଥିଲି।

□ *କଥାକାର : ଜୁଲାଇ ୧୯୭୪*

■■■

# ପ୍ରତିବିମ୍ବ

ମୁଁ ଦେଖୁଥିଲି ଅନେକ ଛାଇମାନଙ୍କୁ । ସେମାନେ ମୋତେ କେନ୍ଦ୍ରକରି ଅଟ୍ଟହାସ୍ୟ କରୁଥିଲେ । ଅଂଧାର ମଧ୍ୟରେ ମୁଁ ସେମାନଂକୁ ଚିହ୍ନିବାକୁ ଚେଷ୍ଟା କରୁଥିଲି । ଜୀବନର ପଥ ମଧ୍ୟଦେଇ ଦେଖାଦେଇଥିବା ପରିଚିତ ଓ ପରିଚିତାମାନେ, ଅତୀତ ମଧ୍ୟରେ ଲୀନ ହୋଇ ଯାଇଥିଲେ । ସେମାନଂକୁ ପୁଣିଥରେ ପଛକୁ ବୁଲି ଚିହ୍ନିବା ପାଇଁ, ମୁଁ ସେଇ ଅଂଧାର ମଧ୍ୟରେ ଯେଉଁ ଚେଷ୍ଟା କରୁଥିଲି, ତାର ସଫଳତା ବିଷୟରେ ମୁଁ ସନ୍ଦିହାନ ଥିଲି ।

ଅଂଧାର । ଘନ ଅଂଧାର । ଅଂଧାର ମଧ୍ୟରେ ମୁଁ ଓ ଛାଇମାନେ । ସେମାନେ କଥା କହୁଥିଲେ । ମୁଁ ଅତୀତ ମଧ୍ୟରେ ନିଜକୁ ହଜେଇ ଦେଇ ତୃପ୍ତ ହେବାକୁ ଚାହୁଁଥିଲି । ମୋ ମସ୍ତିଷ୍କ ମଧ୍ୟରେ ଏକ ଝଡ ସୃଷ୍ଟି ହୋଇଥିଲା । ସମ୍ମୁଖର ପଥଟା ନିସ୍ତବ୍ଧ ଓ ଶୁନଶାନ୍‌ଥିଲା ।

ମୋତେ ଯେଉଁମାନେ ସୃଷ୍ଟି କରିଥିଲେ ଏବଂ ନିଜର ସ୍ନେହ ମମତା ଦେଇ ଦୁନିଆର ସବୁ ସୁଖ ଦେଇଥିଲେ, ସେମାନଂକୁ, ମୋତେ ପ୍ରଥମ ଥର ଯିଏ ପ୍ରେମ କରିବା ଶିଖେଇ ଥିଲା, ନାରୀ ପୁରୁଷ ମଧ୍ୟରେ ସଂପର୍କକୁ ବିଶ୍ଳେଷଣ କରି ଏକାନ୍ତ ପ୍ରହରରେ ନିଜର ସବୁ କିଛି ମୋତେ ଦେଇ ତୃପ୍ତ ହୋଇ ମୋତେ ତୃପ୍ତ କରାଇଥିଲା, ସେଇ କହିଥିଲା ପୁରୁଷର ପୌରୁଷତ୍ୱର ମାପକାଠି କେବଳ ନାରୀ ଏବଂ ତାପରେ ହଠାତ୍ ଯିଏ ସାମାଜିକ ଝଡର ପ୍ରଭାବରେ ମୋ ନିକଟରୁ ଦୂରକୁ ଚାଲିଯାଇଥିଲା, ତାକୁ; ଯେଉଁମାନେ ମୋତେ ସାହାଯ୍ୟ କରିଥିଲେ; ଯେଉଁମାନେ ମୋ ଦ୍ୱାରା ଉପକୃତ ହୋଇଥିଲେ, ସେମାନଙ୍କୁ ନିଜର ସବୁ କିଛି ଛାଡି ଯିଏ ମୋତେ ନିଜର ସବୁକିଛି କରି ଆସିଥିଲା ଯୌବନର ନୈବେଦ୍ୟ ନେଇ ଏବଂ ପ୍ରତିଦାନରେ ଯିଏ ମୋ ଠାରୁ ପାଇଥିଲା କେବଳ ଅପମାନ, ଅବହେଳା କିନ୍ତୁ ପ୍ରତିବାଦ କେବେ କରିନଥିଲା, ତାଙ୍କୁ; ଏବଂ ନିଜର ଯୌବନକ୍ଷୁଧା ନିବାରଣର ପରିମାଣ ସ୍ୱରୂପ ଯେଉଁ କେତୋଟି ଜୀବଂକୁ ସୃଷ୍ଟି କରିଥିଲି, ସେମାନଂକୁ ଖୋଜୁଥିଲି । ମୁଁ ଜାଣିଥିଲି ସେମାନେ ନିଶ୍ଚୟ ମୋର ଆଖପାଖରେ ଉପସ୍ଥିତ ଥିବେ । କାରଣ ମୁଁ ସେମାନଙ୍କୁ ଅନେକ କିଛି ଦେଇଛି ଏବଂ

ସେମାନଂକ ଠାରୁ ଅନେକ କିଛି ପାଇଛି। ମୁଁ ସେମାନଂକୁ ଭୁଲି ପାରିନି। ତେଣୁ ଏଇଟା ସ୍ବତସିଦ୍ଧି କଥା, ସେମାନେ ମଧ୍ୟ ମୋତେ ଭୁଲି ପାରି ନଥିବେ।

ଅତୀତକୁ ଫେରି ଯାଉଥିଲି। ମୁଁ କିନ୍ତୁ ଆଗକୁ ପାଦ ପକାଉଥିଲି। ହେଲେ ପାଦ ମୋର ପଛକୁ ପଡୁଥିଲା। ମୁଁ ସବୁ ବୁଝିବାକୁ ଚେଷ୍ଟା କରୁଥିଲି। କିନ୍ତୁ କିଛି ବୁଝି ପାରୁନଥିଲି। ମୋ ଆଖି ଆଗରେ ଜନ୍ମ ନେଉଥିଲା ଏକ ଶିଶୁ ଏବଂ ପରକ୍ଷଣରେ ସେ କିଶୋର ହୋଇ ମୋତେ ଅନେଇ ହସୁଥିଲା। ସମସ୍ତେ ତାକୁ ରବୀନ୍ଦ୍ର ଡାକୁଥିଲେ। ପରକ୍ଷଣରେ ମୁଁ ଦେଖିଲି କିଶୋର ଯୁବକରେ ପରିବର୍ତ୍ତିତ ହୋଇ ମୋତେ ଲକ୍ଷ୍ୟ କରୁଛି। ମୁଁ ବ୍ୟସ୍ତ ହୋଇ ମୋ ସାମ୍ନା ଅଂଧାରକୁ ଅଣ୍ଡାଳି ପକେଇଲି। ଦର୍ପଣଟା ମୋ ସାମ୍ନାରେ କିଏ ରଖିଲା ?

x x x x x x x

"ଜୀବନରେ ବଡ ହେବାକୁ ହେଲେ ପ୍ରଥମ କଥା କଅଣ ଜାଣୁ ରବି ?"

"କଅଣ ବାପା ?"

"ସହନ ଶୀଳତା, ତାପରେ ନିଜ ମଧରେ ଲୁଚି ରହିଥିବା ମଣିଷକୁ ଚିହ୍ନିବା ହେଉଛି ଦ୍ୱିତୀୟ ମୁଖ୍ୟ କଥା। ସବୁବେଳେ ସବୁ କଥାକୁ ଏମିତି ଆଡ଼େଇ ଦେବାଟା ଉଚିତ ନୁହେଁ। ଆଗକୁ ବଢିବାକୁ ହେଲେ ପଛକୁ ବୁଲି ଚାହିଁବା ଉଚିତ ନୁହେଁ।"

"ଏଇଟା କଅଣ ଉପଦେଶ ?"

"ବିଦ୍ରୋହୀ ହେବା ଭଲ କଥା ରବି। ହେଲେ ତୋର ଏ ବିଦ୍ରୋହ କାହା ବିରୁଦ୍ଧରେ, ନିଜ ବିରୁଦ୍ଧରେ ନା ଆମ ମାନଂକ ବିରୁଦ୍ଧରେ ?"

"ଆପଣ ମୋତେ ଭୁଲ ବୁଝୁଛନ୍ତି।"

"କରିବା ବଡ ରବି। କହିବା କରିବା ମଣିଷର ଧର୍ମ।"

"ମୁଁ ମଧ ମୋର କର୍ତ୍ତବ୍ୟ କରୁଛି।"

"ମିଛ କଥା। ତୁ ନିଜକୁ ଠକୁଛୁ। ଦୁନିଆର ସବୁ ପ୍ରକାର ସୁଖ ତୋତେ ମୁଁ ଦେଇଛି। କ'ଣ ଦେଇନି କହ ? ତା ସତ୍ତ୍ୱେ ତୁ ତୋ କର୍ତ୍ତବ୍ୟରେ ଅବହେଳା କରି ଚାଲିଛୁ। ଆମ ଦାନର ପ୍ରତିଦାନ ଦେ ରବି।"

ଯୁବକ ହସୁଥିଲା। ମୁଁ ରାଗିଗଲି। ନିଜ ଜନ୍ମଦାତା ପିତା ପ୍ରତି ଏ ପ୍ରକାର ଉପହାସ ମୁଁ ଅନ୍ତତଃ ସହ୍ୟ କରିପାରିବି ନାହିଁ।

x x x x x x x

"ମୁଁ ଗର୍ଭବତୀ ରବି।"

"ନାରୀ ପୁରୁଷ ମଧରେ ଯୌନ ସଂପର୍କ ସ୍ଥାପନ ହେଲେ ଗର୍ଭବତୀ ନାରୀ ହିଁ ହୁଏ। ପୁରୁଷ ନୁହେଁ।"

"ତୁମେ ଉପହାସ କରୁଛ।"

"ମୁଁ ଆନନ୍ଦିତ।"

"ମୁଁ କିନ୍ତୁ ଚିନ୍ତିତା। 'ଏବୋର୍ସନ' କରିବାର ବ୍ୟବସ୍ଥା କରିଦିଅନ୍ତ ନାହିଁ।"

"ମୁଁ ଭାବୁଛି ଘରେ ସମସ୍ତଂକୁ ଏକଥା କହିଦେବି।"



''ଲାଭ ନାହିଁ । ବାପା ମୋର ବିବାହ ଠିକ କରି ସାରିଲେଣି ।''

''ତରୁଲତା ! ତୁମେ ପ୍ରେମକୁ କଅଣ ବୋଲି ଭାବୁଛ ? ଶାରୀରିକ ସଂପର୍କ ପରେ କଅଣ ପ୍ରେମ, ପ୍ରେମ ହୋଇ ରୁହେନି ? ତୁମେ ଅନ୍ୟକୁ ବିବାହ କରି ସୁଖୀ ହୋଇ ପାରିବ ।''

''ଜାଣେନି । ତଥାପି ପିତାମାତାଙ୍କ ଆଦେଶ ମାନି ନେବା ବ୍ୟତୀତ ମୋର ଆଉ କିଛି ଚାରା ନାହିଁ ।''

''ତା ମାନେ ତୁମେ ଏ ଯାଏଁ ମୋ ସହିତ ଛଳନା କରି ଆସୁଥିଲ ।''

''ରୁଦ୍ରମାଧବ ଓ ତୁମ ମଧ୍ୟରେ ଢେର ପାର୍ଥକ୍ୟ ।''

''ରୁଦ୍ରମାଧବ ?''

''ମୋ ଭାବୀ ସ୍ୱାମୀ ।''

କୁମାରୀ ତରୁଲତା ନନ୍ଦ ଓ ଯୁବକ ଦୁହେଁ ଭିନ୍ନ ପଥରେ ଚାଲିଗଲେ । ମୁଁ ନୀରବରେ ଠିଆ ହୋଇ ସେମାନଙ୍କୁ ଦେଖୁଥିଲି । ଯୁବକ ପ୍ରତି ସହାନୁଭୂତି ଦେଖାଇବା ପାଇଁ ଇଚ୍ଛା ଥିଲେ ସୁଦ୍ଧ ମୁଁ ଚୁପ ରହିଲି । ଏବଂ ତାପରେ ଯେଉଁଦିନ କୁମାରୀ ନନ୍ଦ, ଶ୍ରୀମତି ଦ୍ୱିବେଦୀରେ ପରିଣତ ହେଲେ, ରୁଦ୍ରମାଧବର ପତ୍ନୀ ରୂପେ ଦୁନିଆ ଆଖିରେ ପରିଚିତା ହେଲେ, ସେଇଦିନ ମୁଁ ଯୁବକଟିକୁ ଏକ ବାରରେ ବସି 'ରମ୍' ପିଉଥିବାର ଦେଖିଲି । ମୋ କାନ ପାଖରେ ଏକ ଦୁଇମାସର ଭ୍ରୁଣ ଚିତ୍କାର ଛାଡି କାନ୍ଦୁଥିଲା । ମୁଁ ମଧ୍ୟ ସେଦିନ ନିଜ ଅଜାଣତରେ ସେଇ ଯୁବକ ନିକଟରେ ବସି 'ରମ୍' ପିଇଲି ।

x x x x x x x

''କେତେଦିନ ଏମିତି ବାହାରେ ବାହାରେ ବୁଲିବୁ ?''

''ଘରେ ରହି ମଧ କଅଣ କରିବି ବୋଉ ? ମୁଁ କିଛି କରିବାକୁ ଚାହୁଁଛି । କିନ୍ତୁ ତୁମେମାନେ ମୋତେ ସେ ସୁଯୋଗ ଦେବା ପାଇଁ ନାରାଜ । ମୁଁ ବଂଚିବାକୁ ଚାହେଁ । କିନ୍ତୁ ତୁମେମାନେ ମୋତେ ବଂଚିବାକୁ ଦେଉ ନାହିଁ । ତେଣୁ ଆଉ ମୋର ଉପାୟ କଅଣ ?''

''ତୁ ଏକଥା କହି ପାରୁଛୁ ?''

''ନ କହି ଆଉ ରହିପାରୁନାହିଁ । ମୁଁ ହତାଶ ହୋଇ ପଡିଛି । ସବୁକିଛି ଭୁଲିବାକୁ ଚାହୁଁଛି । ହେଲେ କିଛି ଭୁଲିପାରୁନାହିଁ ।''

''ତୋ ଦେହ କଅଣ ହେଲାଣି ଦେଖୁଛୁ ?''

''ମୋ କଥା ମୁଁ ଠିକ୍ ବୁଝିବି ବୋଉ । ତୁ ଚିନ୍ତା କରନା ।''

ଶୁଣ ରବି । ତୋ ବିବାହ ଆମେ ଠିକ କରିଛୁ । ଏବଂ ତୋତେ ସେ ବିବାହ କରିବାକୁ ପଡିବ । ଅନ୍ତତଃ ଏତିକି ତୋ ଠାରୁ ମୁଁ ଆଶା କରୁଛି । ତୁ ମୋ କଥା ଭାଙ୍ଗିବୁ ନାହିଁ ବୋଲି ମୋର ବିଶ୍ୱାସ ।

''ଯଦି ମୁଁ ମନା କରେ ।''

''ତୁ ମନା କଲେ ମଧ ତୋତେ ବିବାହ କରିବାକୁ ପଡିବ ।''

ଏବଂ ମୋ ଆଖି ଆଗରେ ଯୁବକର ବିବାହ ହୋଇଗଲା । ନର୍ମଦା ପରି ସ୍ତ୍ରୀ ପାଇଲା ପରେ ମଧ ଯୁବକ ନିଜର ସ୍ୱଭାବ ଛାଡି ପାରିଲାନି । ପ୍ରଥମ ଅସଫଳ ପ୍ରେମ ଓ ଛଳନାମୟୀ ତରୁଲତାକୁ ଭୁଲି ପାରିଲାନି । ପିତାମାତା ଆଶା କରିଥିଲେ ଏକ

ସୁଖୀ ପରିବାର । ହେଲେ ପାଇଲେ କଅଣ ? ମୁଁ ସବୁ ଦେଖିଲି ଏବଂ ନିରବରେ ଅଶ୍ରୁପାତ ହିଁ କଲି । ଯୁବକ ପ୍ରତି ମୋର ଘୃଣା ଜାତ ହେଲା । ମୁଁ ତାକୁ ଘୃଣା କଲି । ହଁ ମୁଁ ରବିକୁ ଘୃଣା କଲି ।

x x x x x x x

"ତୁମେ ପୁଣି ଡ୍ରିଂକ କରିଛ ।"

"ତୁମର ଆପତ୍ତି କାହିଁକି ?"

"ସେ ଦିନ ପ୍ରତିଜ୍ଞା କରିଥିଲ ମୋ ଦେହ ଛୁଇଁ । ତଥାପି... ।"

"ପ୍ରତିଜ୍ଞା ! ଆଃ ! ପ୍ରତିଜ୍ଞାର ମୂଲ୍ୟ କଅଣ ? ଆଉ ଥରେ ମଧ୍ୟ ପ୍ରତିଜ୍ଞା କରିଥିଲି ତାକୁ ଯେତେବେଳେ ଭୁଲିପାରିଲି, ଏ ପ୍ରତିଜ୍ଞାକୁ କାହିଁକି ମନେରଖିବି ? ନାରୀମାନଂକ ପାଖରେ କରିଥିବା ପ୍ରତିଜ୍ଞାର ମୂଲ୍ୟ କିଛି ନାହିଁ । ନାରୀମାନେ କେବେ ବିଶ୍ୱସ୍ତ ହୋଇ ପାରିବେ ନାହିଁ । ସର୍ବଦା ଛଳନା କରିବା ତାଂକର ଧର୍ମ ।

"ତୁମେ ଅତୀତ ପାଇଁ ବର୍ତ୍ତମାନକୁ କାହିଁକି ଦାୟୀ କରୁଛ । ଜଣଙ୍କର ଭୁଲ ପାଇଁ ଅନ୍ୟ ଜଣକୁ ଶାସ୍ତି କାହିଁକି ?"

"ପ୍ରତି ନାରୀ ସମାନ । ପ୍ରତ୍ୟେକଂକର ସେଇ ଏକା ମନ... ଏକା ସ୍ୱଭାବ । ତୁମେ ମଧ ଛଳନା କରୁଛ । ମୁଁ ତମକୁ ବିଶ୍ୱାସ କରିପାରିବି ନାହିଁ ।"

"ମୋର ଭୁଲ ? ମୋର ଅପରାଧ ?"

"ତୁମେ ନାରୀ... ସେଇ ହେଉଛି ତୁମର ଭୁଲ... ।"

"ତୁମେ ପାଟି କରନି । ମନିଷ ଓ ସରିତା ଉଠିଲେ କଅଣ ଭାବିବେ । ସେମାନେ ବଡ ହେଲେଣି । ତାଂକ ଆଗରେ ନିଜର ସମ୍ମାନ ତଳକୁ ଖସାଅନି ।"

"ଚୁପକର ।"

ମୁଁ ବିସ୍ଫାରିତ ନେତ୍ରରେ ଦେଖୁଥିଲି ଏକ କକ୍ଷ ମଧରେ ଥିବା ଏଇ ଦୁଇଜଣଂକୁ । ନର୍ମଦା ସବୁ ଅତ୍ୟାଚାର ସହି ଚାଲିଥିଲା ଏବଂ ପୁରୁଷ ଅତ୍ୟାଚାର କରି ଚାଲିଥିଲା । ମନିଷା ଓ ସରିତା ଦୁଇଟି କିଶୋର ଦ୍ୱାର ପାଖେ ନିଦଭରା ଚକ୍ଷୁରେ ନିଜ ପିତାମାତାଙ୍କୁ ଦେଖୁଥିଲେ ଆଶ୍ଚର୍ଯ୍ୟ ହୋଇ । ମୁଁ ନୀରବ ଦର୍ଶକ । ଅନେକ ଥର ଉଚ୍ଛାହୁଏ ଏ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ । ହେଲେ ବଡ ଅସହାୟ ମୁଁ । ମୋର ସ୍ୱର ନାହିଁ । କଂଠ ନାହିଁ । ମୁଁ କେବଳ ଦେଖିବା ମୋର ଧର୍ମ । ଏବଂ ବିଶ୍ଳେଷଣ କରି ଅଶ୍ରୁପାତ କରିବା ମୋର ଶକ୍ତି । ମୁଁ ତେଣୁ କାନ୍ଦୁଥିଲି ।

x x x x x x x

ମୋ ଆଖି ଆଗରେ ସବୁ ପରିବର୍ତ୍ତନ ହୋଇଗଲା । ବର୍ଷ ପରେ ବର୍ଷ ବିତିଗଲା । ପରିବର୍ତ୍ତନଶୀଳ ଦୁନିଆରେ ସବୁ ବଦଳିଗଲା । କେବଳ ବଦଳିଲା ନାହିଁ ଉକ୍ତ ପୁରୁଷର ସ୍ୱଭାବ । ପ୍ରତ୍ୟେକ ତା ସାଂଗ ଛାଡି ଦୂରେଇ ଗଲେ । ନିଜ ପରିବାର ମଧରେ ସେ ଥିଲା, ହେଲେ ନିଜ ପରିବାର ଠାରୁ ଅନେକ ଦୂରରେ ଥିଲା । ତାରି ଆଖି ଆଗରେ ତାର ସନ୍ତାନମାନେ ନଷ୍ଟ ହୋଇଗଲେ । ପିତା ମାତା ରୁଦ୍ଧ କକ୍ଷ ମଧରେ ମୋ ପରି ନୀରବ ଦର୍ଶକ ହୋଇ ରହିଗଲେ । ନର୍ମଦା ଧିରେ ଧିରେ ଭାବନାହୀନ ହୋଇ ପଡିଲା । ଏବଂ ତରୁଲତା ବେଶ୍ୟା ପାଲଟିଗଲା । ପୁରୁଷ କିନ୍ତୁ ସବୁ ଦେଖି ନ ଦେଖିଲା ପରି

ରହିଗଲା । ଏବଂ ତାପରେ ଆଲୋକ ତା ପାଖରୁ ଦୂରେଇ ଗଲା । ରହିଗଲା ଖାଲି ଅଂଧାର । ସେଇ ଅଂଧାର ମଧ୍ୟରେ ତା ସହିତ କେହି ନଥିଲେ । କେବଳ ମୁଁ ତା ପଛେ ପଛେ, ତା ଛାଇ ପରି, ତା ସହିତ ଆଗେଇ ଚାଲିଲି । କିଛି ଦିନ ପରେ ଦେଖିଲି, ମୁଁ ର 'ମୁଁ'ତ୍ୱ ତା ସହିତ ମିଶିଯାଇ ଏକ ହୋଇ ଯାଇଛି । ଏବଂ ଯୁବକଟି ବୃଦ୍ଧ ହୋଇଯାଇଛି ।

x x x x x x x

କେତେପଥ ଯେ ମୁଁ ଅବିରାମ ଭାବେ ଚାଲିଥିଲି ତାର ହିସାବ କେହି ରଖି ପାରିନାହାଁନ୍ତି । ସ୍ୱୟଂ ମୁଁ ମଧ୍ୟ ରଖି ପାରିନି । ଆଲୋକ ଠାରୁ ଦୂରେଇ ଅଂଧାର ମଧ୍ୟରେ ପ୍ରବେଶ କରିବା ଦିନଠାରୁ ଆଲୋକର ସନ୍ଧା ଖୋଜିବା ପାଇଁ ଚେଷ୍ଟା ସୁଦ୍ଧା କରିନି । ଅଂଧାର ମୋ ପାଇଁ ବରଦାନ । ହଠାତ୍ ଅତୀତର ସ୍ମୃତି ମୋ ନିକଟରୁ ଦୂରେଇ ଯାଉଛି । ମୁଁ ବର୍ତ୍ତମାନକୁ ଫେରିଆସୁଛି । ଆଖିର କୋଣରେ ପାଣି । ସବୁ ଝାପସା ଝାପସା ଦେଖାଯାଉଛି । ପୁଣି ସେଇ ଛାଇମାନେ । ମୁଁ କାନ୍ଦୁଥିଲି ତାହା ହେଲେ । କିନ୍ତୁ କାହିଁକି ? ଅନୁତାପ ତ ମୁଁ ଆଜି ପର୍ଯ୍ୟନ୍ତ କେବେ କରିପାରିନି । ଅତୀତକୁ ବିଶ୍ଳେଷଣ କଲେ ଏତେ ଯଂନ୍ତ୍ରଣା କାହିଁକି ? ଏତେ ବ୍ୟଥା କାହିଁକି ? ସ୍ୱପ୍ନ ଭାଂଗିଗଲେ ଏତେ ଦୁଃଖ ଲାଗେ କାହିଁକି ? ସାଥି ହଜିଗଲେ ଏତେ ଆଘାତ ଲାଗେ କାହିଁକି ? ମନ ଥରେ କ୍ଷତ ହେଲେ ଚିହ୍ନ ଲିଭେ ନାହିଁ କାହିଁକି ?

ଏତେ କାହିଁକିର ଉତ୍ତର କିଏ ମୋତେ ଦେବ ? ଆଜି ପର୍ଯ୍ୟନ୍ତ ତ କେହି ମୋତେ ବୁଝିବା ପାଇଁ ଚେଷ୍ଟା ସୁଦ୍ଧା କରିନାହାନ୍ତି । ମୋ ଭିତରର ମଣିଷକୁ କେହି ଚିହ୍ନି ପାରିନାହାନ୍ତି । ମୋ ମାନସିକ ବ୍ୟାଧିକୁ ଦୂର କରିବା ପାଇଁ କେହି ଚାହିଁ ନାହାଁନ୍ତି । ତେଣୁ ମୁଁ କାହିଁକି କାହାକୁ ବୁଝିବା ପାଇଁ ଚେଷ୍ଟା କରିବି । ମୁଁ ହିଂସ୍ର ହୋଇ ଉଠିଲି । ହାତମୁଠା କରି ସାମ୍ନା ଦର୍ପଣକୁ ଶୂନ୍ୟରେ ପିଟିଦେଲି । ଦର୍ପଣର କାଚ ଶବ୍ଦ କରି ଭାଂଗିଗଲା । ଏବଂ ଯୁଗ ଯୁଗ ଧରି ଲୁଚି ରହିଥିବା ଆଲୋକର ପ୍ରଖରତାରେ ମୋ ଆଖି ବୁଜି ହୋଇ ଆସିଲା ମୁଁ କିଛି ଦେଖି ପାରିଲି ନାହିଁ ।

ହଠାତ୍ ଆଖି ଖୋଲିଲି । ଛାଇମାନଂକର ପରିଚିତ ମୁଖ ମୋ ସାମ୍ନାରେ ପରିଷ୍କାର ହୋଇ ଉଠିଲା । ସେମାନେ ମୋର ଅତି ଆପଣାର । ମୋ ପିତା, ମାତା, ସ୍ତ୍ରୀ, ସନ୍ତାନ, ବଂଧୁ ଏବଂ ପଛପଟେ ପ୍ରୌଢା ତରୁଲତା... । ସମସ୍ତେ ଆପଣାର । ସେମାନେ ଚିତ୍କାର କଲେ । "ରବି ! ଆମକୁ ଦେଖ... ଆମେ ତୁମର ନିଜର... ।" ମୁଁ ହସିଲି । ଯାହା ହେଉ ଏତେ ଦିନ ଧରି ଖୋଜୁଥିଲି, ଅବଶେଷରେ ସେମାନଂକୁ ପାଇ ପାରିଲି । ମୋ ହସ ହସ ମୁହଁକୁ ଚାହିଁ ମୋ ଚତୁର୍ଦ୍ଦିଗରେ ଥିବା ମୋର ପରିଚିତମାନଂକର ମୁହଁରେ ଆଶ୍ଚର୍ଯ୍ୟର ଭାବ ଫୁଟି ଉଠିଲା । ମୁଁ ପାଟିକଲି, "ମୁଁ ସମସ୍ତଂକୁ ଚିହ୍ନେ... ସମସ୍ତଂକୁ । ଆଲୋକରେ ସବୁ ପରିଷ୍କାର ହୋଇଉଠିଛି ।

ଏବଂ ପରକ୍ଷଣରେ ଆଉ କାହାକୁ ମୁଁ ଚିହ୍ନି ପାରିଲି ନାହିଁ । ପୁନର୍ବାର ସେଇ ଅଂଧାର ।

□ *ଆସନ୍ତାକାଲି : ନଭେମ୍ବର ୧୯୭୨*





# ଅପରେସନ୍ ପୂର୍ବରୁ

ସୂର୍ଯ୍ୟ ନିଜ ବିଛେଇ ହୋଇ ପଡିଥିବା କିରଣକୁ ଧରା ପୃଷ୍ଠରୁ ଗୋଟେଇବାରେ ବ୍ୟସ୍ତ । ସଦର ହସ୍‌ପିଟାଲର ସାତ ନମ୍ବରର କେବିନରେ ମୋର ବିରକ୍ତ ମନ ସେହି ଘନ ଅନ୍ଧକାର ମଧ୍ୟରେ ନିଜର ଅସ୍ତିତ୍ୱ ଖୋଜିବାରେ ବ୍ୟସ୍ତ । କଡଲେଉଟାଇବା ଚେଷ୍ଟାରେ, ବାମ ପାଦର ଯନ୍ତ୍ରଣା ଯୋଗୁ ଅନିଚ୍ଛା ସତ୍ତ୍ୱେ ମୁଖରୁ ଏକ କଷ୍ଟ ସୂଚକ କ୍ଷୀଣ ଚିତ୍କାର ବାହାରି ପଡିଲା ।

ଉଜ୍ଜ୍ୱଳ ଆଲୋକ ସହିତ ନିଜକୁ ଖାପ ଖୁଆଇ ନେଇ ଲକ୍ଷ୍ୟ କଲି, ନର୍ସ ନୀଳିମା ସୁଇଚରୁ ହାତ କାଢି ମୋ ନିକଟକୁ ଚାଲି ଆସି ଶାସନ କଲା କଣ୍ଠରେ କହିଲା, ''କେତେଥର କହିଛି,'' କଡ ଲେଉଟାଇବା ବେଳେ ମୋତେ ଡାକିବେ ବୋଲି । ଏତେ ଆଘାତ ପରେ ଶକ୍ତିହୀନ ବାମପାଦ ଉପରେ ଯଦି ଏପରି ଭାବେ ଭାର ପକାନ୍ତି, ତେବେ କେବେ ସୁସ୍ଥ ହେବେ କହିଲେ ।'' ହସି ଉଠିଲି, ନୀଳିମା ମୋତେ ସାନ୍ତ୍ୱନା ଦେଉଛି, ମୋତେ ଭୁଲାଉଛି ଯେପରି ମୁଁ କିଛି ଜାଣି ନାହିଁ, ଯେ, ତିନିଦିନ ମଧ୍ୟରେ ହିଁ ଶରୀରରୁ ବାମପାଦଟିକୁ ପୃଥକ କରି ଦିଆଯିବ । ଝୁଲା ହୋଇଥିବା ପାଦକୁ ଲକ୍ଷ୍ୟକଲି, ଶରୀରର ପ୍ରତ୍ୟେକ ଅଙ୍ଗରେ ଯନ୍ତ୍ରଣା ବିଛେଇ ହୋଇ ଚିତ୍କାର କରୁଥାଏ ।

ଚକ୍ଷୁ ଖୋଲି କେବିନ୍‌ରେ ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଲକ୍ଷ୍ୟ କଲି । ଡାକ୍ତର ନରେଶ, ଡାକ୍ତର ରାଜେନ୍ଦ୍ର, ନର୍ସ ନୀଳିମା, ନନ୍ଦିତା ପ୍ରତ୍ୟେକଙ୍କ ମୁଖରେ ମୋ ପାଇଁ ସହାନୁଭୂତିର ସ୍ପଷ୍ଟ ଚିହ୍ନ । ଡାକ୍ତର ନରେଶ କହିଲେ 'କ୍ଷମା କରିବେ' ଆଜି ଭୁଲରେ ପାଦରେ ମର୍ଫିଆ ଇଞ୍ଜେକସନ୍ ଦିଆଯାଇ ନଥିବାରୁ ଯନ୍ତ୍ରଣା ବୃଦ୍ଧି ପାଇଲା ଏବଂ ଅଯଥାରେ ଆପଣ ଏତେ କଷ୍ଟ ସହ୍ୟ କଲେ । ହଁ ଏଥର ଭଲ ଅନୁଭବ କରୁ ଅଛନ୍ତିତ ? ନୀରବରେ ମୁଣ୍ଡ ହଲାଇ ସମ୍ମତି ପ୍ରଦାନ କଲି,

ଘଡିକୁ ଲକ୍ଷ୍ୟକଲି, ରାତି ସାଢେ ଏଗାର, ନର୍ସ ନୀଳିମା କେବିନ୍ ମଧ୍ୟରେ ଆର୍ମଚେୟାର ଉପରେ ଶୋଇ ପଡିଛି । ତା ଗୋରା ମୁଖ ଦୁଧିଆ ବିଦ୍ୟୁତାଲୋକରେ ଅଧିକ ଉଜ୍ଜ୍ୱଳ ହୋଇ ଉଠିଛି । ପୁନର୍ବାର କେବିନ୍‌ର ଚତୁର୍ଦ୍ଦିଗ ନିରିକ୍ଷଣ କଲି, ଦୀର୍ଘ ଦଶଦିନ ଧରି ଏହି କକ୍ଷର ପ୍ରତ୍ୟେକ ବସ୍ତୁ ସହିତ ଅତି ଘନିଷ୍ଠ ଭାବେ ପରିଚିତ ହୋଇ

ଯାଇଛି । ପ୍ରତ୍ୟେକ ରାତିରେ ଯନ୍ତ୍ରଣା ଯୋଗୁ ନିଦ ହୁଏନି, ଆଜି କିନ୍ତୁ ଅନ୍ୟ ଦିନ ପରି ଯନ୍ତ୍ରଣା ନାହିଁ । ଝର୍କା ଦ୍ୱାରା ଅନେକ ବେଳୁ ଆକାଶରେ ସନ୍ତରଣ କରୁ ଥିବା ଚନ୍ଦ୍ରକୁ ଚାହିଁଲି । ମହକ ଭରା ମନ୍ଦ ସମୀର ଅବଶ ମନକୁ ଥରେ ରୋମାଞ୍ଚିତ କରି ଦେଲା । ଚନ୍ଦ୍ର କିରଣର ପ୍ରଭାବରେ ଧରା ଯେପରି ସମ୍ମୋହିତ ହୋଇ ଯାଇଛି । ଭାରି ଏକା ଏକା ଲାଗିଲା, ଭାବିଲି ନୀଳିମାକୁ ଉଠାଇ ତା ସହିତ ଗପିବି, କିନ୍ତୁ ପୁଣି ଭାବିଲି, ଏବଂ ତା' କର୍ମକ୍ଳାନ୍ତ ଶରୀରକୁ ଅଧିକ କଷ୍ଟ ନ ଦେବାକୁ ନିଶ୍ଚୟ କରି ଝର୍କା ଦେଇ ବାହାରକୁ ଚାହିଁଲି, କିନ୍ତୁ ଅତୀତ ସ୍ମୃତିର ପରଦା ପଛପଟୁ ଉଙ୍କିମାରିଲା, ''ସତରେ କେତେ ସାମଞ୍ଜସ୍ୟ ଅଛି ନୀଳିମାର ତା' ସହିତ ।

ସୂର୍ଯ୍ୟଙ୍କର କିରଣ କେବିନ୍‌ର ଚଟାଣରେ ଠୁଳ । ଡାକ୍ତରଙ୍କ ଅନୁମତି ନେଇ, ସିଗାରେଟ୍‌ର ଧୂଆଁ ସହ ନିଜକୁ ବୁଡାଇ ଦେଲି, ନୀଳିମା ପ୍ରବେଶ କଲା, ''ମେଜର ରାଉତ ଆସିଛନ୍ତି'' ସିଗାରେଟ୍ ଫିଙ୍ଗି ଦେଲି, ବହୁତ ଦିନପରେ ମେଜର ଆସିଲେ । ପ୍ରଥମ ଥର ଆସିଥିଲେ ମୋର ଜ୍ଞାନ ଶୂନ୍ୟ ଶରୀର ସହ, ଦ୍ୱିତୀୟ ଆଜି, କେବିନ୍‌ର ଦ୍ୱାରରୁ ସେ ଚିତ୍କାର କଲେ, ''ହ୍ୟାଲୋ କ୍ୟାପେଟେନ୍'' । ଅଭିବାଦନ କଲି । ସ୍ମିତହସି ପ୍ରତ୍ୟୁତ୍ତର ଦେଇ, ଭିତରେ ପ୍ରବେଶ କଲେ । ଉଠିବାକୁ ଚେଷ୍ଟା କଲି, ନିକଟ ଚେୟାରରେ ବସି ମୋତେ ଅଟକେଇ ଦେଇ କହିଲେ ''ଉଠିବାକୁ ଚେଷ୍ଟାକରନା ! ସ୍ଥିର ହୋଇ ପଡିରହ । ମୁଁ ତୁମ ପାଇଁ ଏକ ଖୁସିର ସମ୍ବାଦ ନେଇ ଆସିଛି । ତୁମ ଦରଖାସ୍ତ ଗୃହୀତ ହୋଇ ଯାଇଛି । ତୁମେ ତୁମର ପାଦ ପାଇଁ ସରକାରଙ୍କ ଠାରୁ କ୍ଷତିପୂରଣ ପାଇବ ।'' ମନେ ପଡିଲା, ବନ୍ଧୁମାନଙ୍କ ଅନୁରୋଧ ଯୋଗୁ କ୍ଷତିପୂରଣ ପାଇଁ ଦରଖାସ୍ତ ଦେଇଥିଲି, ତାଙ୍କୁ ଧନ୍ୟବାଦ ଦେଲି ।

ସନ୍ଧ୍ୟା ନିଜର ଗୁପ୍ତ ଅଭିସାର ପାଇଁ ନିଜକୁ ସଜ୍ଜିତ କରିବାରେ ବ୍ୟସ୍ତ, ସକାଳୁ କିଛି ଭଲ ଲାଗୁନଥିଲା, ମେଜରଙ୍କ ପ୍ରସ୍ଥାନ ପରଠାରୁ ଗୋଟିଏ ପ୍ରଶ୍ନ ମୋତେ ବ୍ୟତିବ୍ୟସ୍ତ କରି ପକାଉଥାଏ । ଦେଶର ସମ୍ମାନ ରକ୍ଷା କରିବାକୁ ମୁଁ ଓ ମୋର ପରି ଅନ୍ୟମାନେ ନିଜକୁ ପଙ୍ଗୁ କରି ଦେଲେ, ତାହା କେବଳ କଅଣ କ୍ଷତିପୂରଣ ରୂପେ କିଛି ଟଙ୍କା ପାଇଁ ? ମୋ ନିଜ କଥା ଭିନ୍ନ, ଦୁନିଆରେ ମୋର କେହି ନାହିଁ, କିନ୍ତୁ ଅବିନାଶ-ଘରେ ସ୍ତ୍ରୀ, ଦୁଇଟି ସନ୍ତାନ, ବିଧବା ଭଗ୍ନି ଓ ବୃଦ୍ଧାମାତାଙ୍କୁ ଛାଡି ମୋ ସହିତ ଯାଇଥିଲା । ମୋ ପାଦକୁ କେତୋଟି ବୁଲେଟ ଭେଦ କରି ମୋତେ ପଂଗୁ କରିଦେଲା, କିନ୍ତୁ ତା'ର ବକ୍ଷରେ ମାତ୍ର ଗୋଟିଏ... ମୁଁ ବଞ୍ଚିଗଲି ହେଲେ ସେ ଆଉ ଫେରିଲା ନାହିଁ, ଅବଶ ଶରୀର ସହ ଜ୍ଞାନଶୂନ୍ୟ ହେବା ପୂର୍ବରୁ ମୁଁ ମାତ୍ର ଗୋଟିଏ ଶବ୍ଦ ତା ମୁହଁରୁ ଶୁଣିଥିଲି ''ମ'' ସେହି  ବୋଧହୁଏ ତାର ଶେଷକଥା ପରେ ମୁଁ ଯାହା ଶୁଣିଛି । ଦୁଇଦିନପରେ ଅସ୍ଥାୟୀ ହସପିଟାଲକୁ ସ୍ଥାନାନ୍ତରିତ କଲାବେଳେ ମୋର ଅବସ୍ଥା ଚିନ୍ତା ଜନକ । ଅବିନାଶର ଶରୀର ସେତେବେଳକୁ ଶୁଖି କାଠପରି ହୋଇ ସାରିଥିଲା ।

କିଛି ଦିନ ତଳେ ଅବିନାଶ ବିଧବା ଭଗ୍ନି ମୋ ନିକଟରେ କେତେ ଅଶ୍ରୁ ବୁହାଇଥିଲା, ତାହା ଆଜିବି ମନେ ଅଛି, କହିଲା "ମା" ଖାଇବା ପିଇବା ଛାଡି଼ ଗୋଟିଏ ସ୍ଥାନରେ ନୀରବରେ ବସି ରହୁଛନ୍ତି, ଆଉ ଭାଉଜ ଘର ମଧ୍ୟରେ ଦିନସାରା କାନ୍ଦୁଛନ୍ତି । ଭାଇଙ୍କ ମୃତ୍ୟୁ ସମ୍ବାଦ ପାଇଲା ଦିନଠାରୁ ଘରେ ଚୁଲି ଜଳିନି । ମୁଁ ଜାଣିଥିଲି ଏହାର ଶେଷ ପରିଣତି, ବୃଦ୍ଧ ମାତା ପୁତ୍ର ଶୋକରେ ହୁଏତ ପାଗଳ ହୋଇଯିବେ ଅଥବା ମୃତ୍ୟୁ ପୂର୍ବରୁ ମରିଯିବେ, ସରକାର ନିଶ୍ଚୟ ଅର୍ଥର ସାହାଯ୍ୟ କରିବ । କିନ୍ତୁ ପତ୍ନୀକୁ ତାର ପତି ଦେଇ ପାରିବ ନାହିଁ, ମା'କୁ ତାର ସନ୍ତାନ ଦେଇ ପାରିବ ନାହିଁ, ଭଉଣୀକୁ ତା'ର ଭାଇତ ଫେରାଇ ଦେଇ ପାରିବ ନାହିଁ, ପୁଅକୁ ତାର ବାପା ଦେଇପାରିବନି ।

ସନ୍ଧ୍ୟା ହୋଇଯାଇଥିଲା ଅନେକ ବେଳୁ । ଯୁଦ୍ଧ କାହିଁକି ହୁଏ ଏବଂ ତାର ପରିଣତି ସମ୍ପର୍କରେ ଭାବୁଥିବାର ଅନ୍ଧକାର ସୁଯୋଗ ପାଇ କେବିନ୍ ମଧ୍ୟରେ ନିଜକୁ ପ୍ରତିଷ୍ଠିତ କରି ସାରିଥିଲା । ନୀଳିମାକୁ ଡାକିବା ପାଇଁ ଇଚ୍ଛା ନାହିଁ । କାହିଁକି କେଜାଣି ତାକୁ ଦେଖି ଯୌବନର ଭାରବୋହି ବୋହି ଅବଶ, ଅନ୍ୟ ଜଣଙ୍କର ଏକ ନିର୍ଦ୍ଦେଶ ମୁଖ ଚକ୍ଷୁ ସମ୍ମୁଖରେ ଚଳଚିତ୍ର ପରି ଭାସି ଯାଉଥିଲା, ତା' ସହିତ ତାର ସାନ୍ନିଧରେ ଅତିବାହିତ କରିଥିବା ସେହି କେତୋଟି ମୁହୂର୍ତ୍ତ ଆପେ ଆପେ ସ୍ମୃତି ଭଣ୍ଡାରର ଦ୍ୱାର ଖୋଲି ଦେଉଥିଲା, ଅଜଣା ଏକ ଚିନ୍ତା ମନ ମଧ୍ୟରେ ପ୍ରବେଶ କରି ବାହାରିବା ପାଇଁ ସମ୍ପୂର୍ଣ୍ଣ ଅରାଜି ।

ସନ୍ତରା ପାଖୁଡାଟିଏ ମୋ ହାତକୁ ବଢେଇ ଦେଲା ନିଳିମା । ଧିର ସ୍ୱରରେ କହିଲା କାହିଁକି ଏତେ ପ୍ରହସନ । ଯେମିତି ପାରୁଛ କାଟିଦିଅ ପାଦଟିକୁ, ଭାଗ୍ୟରେ ଥିବତ ବଞ୍ଚିଯିବ ।

କିଛି କ୍ଷଣର ମୌନତାପରେ ସେ କହିଲା "କ୍ୟାପେଟେନ" ମୋତେ ଟିକେ ସାହାଯ୍ୟ କରିବେ, ଚକ୍ଷୁରେ ପ୍ରଶ୍ନବାଚୀ ନେଇ ଲକ୍ଷ୍ୟ କଲି । "ଆପଣ ଚାହିଁଲେ ନିଶ୍ଚୟ ପାରିବେ । ମେଜେରଙ୍କୁ କହି ରେଡକ୍ରସ ସହ ଫ୍ରଣ୍ଟକୁ ଯାଇ ସେବାକରିବାର ଅନୁମତି ଆଣିଦିଅନ୍ତୁ । ମୁଁ ପୂର୍ବରୁ ଦରଖାସ୍ତ ମଧ କରିଥିଲି । କିନ୍ତୁ ଅଧିକ ଅଭିଜ୍ଞତା ନାହିଁ ବୋଲି ସେମାନେ ମନା କରିଦେଲେ । ଆପଣ ଯଦି ମେଜରଙ୍କୁ କହି ମୋର ଟିକେ ସୁପାରିଶ କରି ଦିଅନ୍ତେ, ତେବେ ମୋ ଜୀବନର ଏକ ମହତଇଚ୍ଛା ପୂରଣ ହୋଇ ପାରନ୍ତା ।

ରାତ୍ରି କେତେ ହେବ କେଜାଣି, ଯନ୍ତ୍ରଣା ନଥାଇ ମଧ ନିଦ ଆସୁନି । ସକାଳ ପ୍ରହରରୁ ବାରମ୍ବାର ତା ନିରୀହ ମୁଖ ଆମନ୍ତ୍ରଣ ଭରା ଚକ୍ଷୁ ମନେ ପଡୁଛି ।

ପଙ୍ଗୁଶରୀର ପରି ସେ ମଧ୍ୟ କେବେ ଭୁଲି ହେବନି, ଠିକ୍ ମନେ ଅଛି- ଘାଟୀ ଉପରକୁ ଲକ୍ଷ୍ୟ କଲେ ଗାଁଟି ଦୃଷ୍ଟ ଗୋଚରହୁଏ । ଯୁଦ୍ଧର ବିକଟ ଚିତ୍କାର ଦ୍ୱାରା ପ୍ରଭାବ

ହୀନ ଗ୍ରାମବାସୀମାନଙ୍କର କାର୍ଯ୍ୟକଳାପ ପ୍ରତିଦିନ ମୁଁ ଆଶ୍ଚର୍ଯ୍ୟ ହୁଏ । ସେ ଦିନ ଆମେ ସମସ୍ତେ ଆନନ୍ଦିତ ହୋଇ ପଡିଥିଲୁ, ଶତ୍ରୁର କ୍ରମାଗତ ଦୁଇଦିନ ନୀରବତା ଲକ୍ଷ୍ୟକରି, ସମସ୍ତଙ୍କ ଅନୁରୋଧ ଯୋଗୁ ରାତ୍ରି ଭୋଜି ପାଇଁ ମୁଁ ସୁବେଦାର ଗୁଲାମ ମୁହମ୍ମଦ ସହ ପ୍ରଥମ ଥର ପାଇଁ ସେ ଗାଁଟିରେ ପାଦ ଦେଇଥିଲି । ଗୁଲାମ ମୁହମ୍ମଦ ସହିତ 'ଫିଲୁ' ଘରେ, ଜୀବନର ପ୍ରଥମ ଥରପାଇଁ ପାହାଡ ସୁନ୍ଦରତା ଯେ କେତେ ଉତ୍ତେଜିତ କାରକ ତାହା ଅନୁଭବ କଲି, କେତୋଟି କୁକୁଡା କିଣି ଗୁଲାମ ଫେରନ୍ତ ପଥରେ ମୋର ଅବସ୍ଥା ଲକ୍ଷ୍ୟ କରି ଧୀର ସ୍ୱରରେ କହିଥିଲା, ''କହିବେ ଯଦି... ମୁଁ ନୀରବ ରହିଥିଲି, ଗୁଲାମ ପୁନର୍ବାର ଘର ମଧ୍ୟକୁ ଯାଇ ଫେରିଲା ମୁଖରେ ଅଶ୍ଳୀଳତାର ରଂଗ ନେଇ, ଆମେ ଦୁହେଁ ଆଉ ଫେରିଲୁ ନାହିଁ । ରାତ୍ରି ସାରା ପାହାଡି ଫିଲୁର ସୌନ୍ଦର୍ଯ୍ୟ ମଧ୍ୟରେ ମଗ୍ନ ରହି ସେହି ରାତିକ ପାଇଁ ନିଜକୁ ଭୁଲି ଗଲି ।

ଭୂମିରେ ପଡିଥିବା କେତେଖଣ୍ଡ ନୋଟକୁ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କରି ପ୍ରଶ୍ନ କରିଥିଲି ''ତୁମେ ଆମ ପାଇଁ ଏହି ପଥ ବାଛି ନେଇଛତ'' ଭରା ଗଳାରେ ସେ ଉତ୍ତର ଦେଇଥିଲା, ''ମୁଁ ବେଶ୍ୟା ନୁହେଁ, ଲକ୍ଷ୍ୟ କଲି ତାକୁ, ତାର ଗର୍ବରେ ଉଜ୍ଜ୍ୱଳ ଚକ୍ଷୁ ସହ ଚକ୍ଷୁ ମିଳାଇ ପାରିଲି ନାହିଁ । କଥା ପଦକରେ ସେ କେତେ ବଡ ଗାଳି ଦେଇଗଲା, ସେହି କ୍ଷଣିକରେ ମୁଁ ଚିହ୍ନିଲି ତାର ନାରୀତ୍ୱକୁ । ତାର ମହାନତାକୁ । ନୀରବଚ୍ଛିନ୍ନ ଗତିରେ ବହି ଚାଲିଥିବା ଝରଣା ନିକଟରେ ଅବିନାଶ ମୋତେ ତା' ସହିତ ଏକ ଅଶ୍ଳୀଳ ମୁହୂର୍ତ୍ତରେ ଅସଂଜତ ଅବସ୍ଥାରେ ଦେଖିଲା । ତାପରେ ଅବିନାଶର ଆଗ୍ରହ, ସେ ତାକୁ ଦେଖିବ । ମୁଁ ନିଜ ଭବିଷ୍ୟତ ସହିତ ଫିଲୁର ସଂପର୍କ ବର୍ଣ୍ଣନା କରି ସାରିଲା ପରେ ତା'ର ଆଗ୍ରହ ଦ୍ୱିଗୁଣିତ ହୋଇ ଯାଇଥିଲା ଏବଂ ବାଧ ହୋଇ ସେହି ଝରଣା ନିକଟରେ ଫିଲୁ ସହିତ ତାକୁ ପରିଚୟ କରାଇଥିଲି ।

ହଠାତ୍ ଦୂରରେ କୋଳାହଳ ମନରେ ଚମକ ପୁନର୍ବାର ଯୁଦ୍ଧ ଆରମ୍ଭ ହୋଇଗଲା ବୋଧେ, ଶତ୍ରୁ ସୁଯୋଗ ପାଇ ଲୁଚି ଛପି ଆକ୍ରମଣ କରିଛି ନିଶ୍ଚୟ ।

ଦୁହେଁ ଦୌଡୁଥିଲୁ, ନିଜ ଗାଁ ମୁଣ୍ଡରେ ଠିଆ ହୋଇଥିବା ''ଫିଲୁ''କୁ ଶେଷଥର ପାଇଁ ପଛକୁ ବୁଲି ଲକ୍ଷ୍ୟ କଲି, ତା ନିକଟରୁ ବିଦାୟ ବେଳର କଥା- ମୋତେ ଅପେକ୍ଷା କରିବ... ମୁଁ ନିଶ୍ଚୟ ଆସିବି ଫିଲୁ, ମୁଁ ନିଶ୍ଚୟ ଫେରିବି, ସ୍ମରଣ କରି ଅବିନାଶ ସହ ପାଦମିଳାଇ ଦୌଡିବା ଆରମ୍ଭ କଲି । ଘାଟୀ ଆଉ ଅଳ୍ପ ଦୂର ଥାଏ । ବାତାବରଣର ଶବ୍ଦକୁ ଭାଂଗି ହଠାତ୍ ମେସିନ୍‌ଗନ୍‌ର ଚିତ୍କାର, ପ୍ରଥମେ ଅବିନାଶ ଚିତ୍କାର କରି ଉଠିଥିଲା, କିନ୍ତୁ ସେତେବେଳକୁ ମୋ ବାମପାଦ ଅକାମି ହୋଇ ସାରିଥିଲା, ଅବିନାଶ ମୋ ନିକଟକୁ ଦୌଡି ଆସୁଥିଲା । ବେଳେ ପଥ ମଧ୍ୟରେ ହିଁ ଓଲଟି ପଡିଲା, ତାପରେ ମୁଁ ଆଉ କିଛି ଅନୁଭବ କରି ପାରିନି ।

ଯନ୍ତ୍ରଣାର ଏକ ଲହଡି ମୋ ଶରୀରରେ ପ୍ରତ୍ୟେକ ଭାଗରେ ଖେଳିଗଲା, ମୁଁ ଆବିଷ୍କାର କଲି ନିଜକୁ କେବିନ୍ ଚଟାଣରେ, ଡାକ୍ତର ଓ ନର୍ସମାନଙ୍କ ଗହଣରେ,

ନିଜକୁ କେତେ ବେଳେ ଯେ ବେଡ୍‌ରୁ ଖସି ପଡ଼ିଛି, ତାହା ମୁଁ ନିଜେ ଜାଣି ପାରିନି । ବାମ ପାଦ ମୋଡ଼ି ହୋଇଯାଇ ଅପରେସନ୍ ହୋଇଥିବା ସ୍ଥାନମାନଙ୍କରୁ ରକ୍ତ ଅବିରାମ ଗତିରେ ବୋହି ଚାଲୁଥାଏ ।

ସେହି କ୍ଷଣିକ ମଧ୍ୟରେ ଡାକ୍ତରମାନେ ନିଷ୍ପତ୍ତି କରି ନେଲେ ମୁଁ ଜାଣିଥିଲି ଏପରି ଅବସ୍ଥାରେ ଅପରେସନ୍ ଜରୁରୀ । ନୀଳିମାର ଚକ୍ଷୁର ଅଶ୍ରୁଗୁଡ଼ାକ ଆଉ କୌଣସି ପ୍ରକାରର ବାଧା ମାନିବା ପାଇଁ ପ୍ରସ୍ତୁତ ନୁହନ୍ତି, ଅପରେସନ୍ ଥିଏଟରକୁ ଅପରେସନ୍ ପାଇଁ ପ୍ରସ୍ତୁତ କରିବା ପାଇଁ ଆଦେଶ ଦିଆଗଲାଣି, ଅପରେସନ୍ କଅଣ ହେବ । କିଏ ଜାଣେ ? କେବେ ପ୍ରକୃତରେ 'ପିଲୁ' ସହ ସାକ୍ଷାତ କରି ପାରିବି କି ନାହିଁ କିଏ ଜାଣେ ? ବଞ୍ଚି[illegible] କେଉଁ ସାହସରେ ଏଇ ପଂଗୁ ଶରୀର ନେଇ ତା' ସମ୍ମୁଖରେ ଠିଆ ହେବି ? କେତେଦିନ ସେ ମୋ ପାଇଁ ପ୍ରତୀକ୍ଷା କରିବ ।

ଜୀବନ ଓ ମୃତ୍ୟୁ ମଧ୍ୟରେ ସଂଘର୍ଷରେ କିଏ ଯିବେ ? ଯଦିଓ ମୃତ୍ୟୁର ଆଶା ଅଧିକ, ତଥାପି ଯଦି ଜୀବନ ବିଜୟୀ ହୁଏ ତେବେ ପଙ୍ଗୁ ହୋଇ ନିଜର ଅତୀତକୁ ବିଶ୍ଳେଷଣ କରିବି ଘରେ ବସି[illegible]

ମୁଁ ଷ୍ଟ୍ରେଚରରେ ଶୋଇଛି । ସମ୍ମୁଖରେ ଅପରେସନ୍ ଥିଏଟର । ଭିତରେ ଡାକ୍ତର ଅବନୀ, ଡାକ୍ତର ତପନ, ନର୍ସ ମମତା ଓ ନର୍ସ ବନ୍ଦିତା ଧଳା ପୋଷାକ ପିନ୍ଧି କବରରୁ ଉଠି ଆସିଥିବା ଶବମାନଙ୍କ ପରି ଦେଖାଯାଉଛନ୍ତି ।

ମୋତେ ଭିତରକୁ ନିଆଗଲା, ଥିଏଟରର ଦ୍ୱାରବନ୍ଦ କରିଦିଆଗଲା, ବାହାରେ ଲାଲ ବାଲ୍‌ବ ବୋଧହୁଏ ଜଳି ଉଠିଥିବ ।

□ *ପ୍ରଜାତନ୍ତ୍ର : ଡିସେମ୍ବର ୧୩, ୧୯୭୦*



# ବ୍ୟତିକ୍ରମ

ରାତ୍ରିର ନିସ୍ତବ୍ଧତାକୁ ଭାଂଗି ୱାଲ୍ କ୍ଲକ ଦୁଇଥର ଶବ୍ଦ କରି ନୀରବ ହେଲା ପରେ ପୁନର୍ବାର ସେଇ ନିସ୍ତବ୍ଧତା । ଅନିରୁଦ୍ଧ ବାବୁ ଦୁଇହାତ ଉପରକୁ ଟେକି ଅଳସ ଭାଂଗିଲେ । ଆଜିକାଲି ରାତ୍ରିରେ ତାଂକୁ ନିଦ ହେଉନି । ରାତ୍ରିସାରା କେବଳ ସେ ଝର୍କା ବାହାରକୁ ଖୋଲା ନିର୍ମଳ ଆକାଶକୁ; ଫୁଲର ବଗିଚାକୁ ଚାହିଁ ଚାହିଁ ଅତିବାହିତ କରିବା ପାଇଁ ବାଧ୍ୟ ହେଉଛନ୍ତି ।

ମଶାରୀ ବାହାରେ ମଶାଦଳ ଶଂଖ୍ ଗୁଂଜନ କରୁଛନ୍ତି । ଉପରେ ଫ୍ୟାନଟା ଅନବରତ ଘୂରି ଚାଲିଛି । ୱାଲ କ୍ଲକର ପେଣ୍ଡୁଲମଟା କ୍ରମାନ୍ୱୟରେ ବାଁରୁ ଡାହାଣ ଓ ଡାହାଣରୁ ବାଁକୁ ଗତି କରି ଚାଲିଛି ଏବଂ ତା ସହିତ ସେକେଣ୍ଡ କଂଟାଟା ଟିକ୍ ଟିକ୍ ହୋଇ ଆଗେଇ ଚାଲିଛି । ସେ ବେଡରୁମର ନୀଳ ଆଲୋକ ମଧ୍ୟରେ ଚାରିକାଂଥର ବଂଧନୀ ମଧ୍ୟରେ ଆବଦ୍ଧ ରହି କାହିଁକି କେଜାଣି ବ୍ୟାକୁଳ ହୋଇ ଉଠୁଛନ୍ତି ।

ପ୍ରତିଭା ଦେବୀ ନିଶ୍ଚିନ୍ତରେ ଶୋଇ ଯାଇଛନ୍ତି । ଅନିରୁଦ୍ଧ ବାବୁ ତାଂକୁ ଚାହିଁଲେ ଏବେ ମଧ୍ୟ ଆକର୍ଷଣ ଭରି ରହିଛି ପ୍ରତିଭା ଦେବୀଂକ ମୁଖରେ; ଅଂଗପ୍ରତ୍ୟଗଂରେ । ମନେ ମନେ ଅନିରୁଦ୍ଧ ବାବୁ ନିଜକୁ ଗର୍ବୀ ଅନୁଭବ କଲେ । ପ୍ରତିଭା ଦେବୀଂକୁ ପାଇ ନଥିଲେ ହୁଏତ ସେ ଜୀବନରେ ସଫଳ ହୋଇ ପାରିନଥାନ୍ତେ । ଆଜି ଯେଉଁ ଲକ୍ଷ୍ୟରେ ପହଂଚି ହଠାତ୍ କ୍ଳାନ୍ତ ହୋଇ ବିଶ୍ରାମ କରୁଛନ୍ତି, ତା ହୁଏତ ଜୀବନ ସାରା ଦୌଡି ଦୌଡି ପାଇ ପାରିନଥାନ୍ତେ । ଆଜି ଏକ ସ୍ୱୟଂ ସଂପୂର୍ଣ୍ଣ ବ୍ୟକ୍ତି । ଜୀବନରେ ସବୁକିଛି ପାଇଛନ୍ତି । ସମାଜରେ ସମ୍ମାନ ଅଛି । ଆଉ ଅଧିକ କଅଣ ବା ସେ ଚାହିଁଥାନ୍ତେ ?

କର୍ମ କ୍ଷେତ୍ରରୁ ଅବସର ନେଲାପରେ ସେ ଚିନ୍ତା କରିବା ଛାଡି ଦେଇ ଥିଲେ । ଚିନ୍ତା କରିବା ପାଇଁ ତାଂକ ନିକଟରେ ସାମଗ୍ରୀ ହିଁ କିଛି ନଥିଲା । ଦୁଇ ପୁଅଙ୍କୁ ମଣିଷ କଲାପରେ ସେ ନିଶ୍ଚିନ୍ତ ହୋଇ ଯାଇଥିଲେ । ବଡ ପୁଅ ଏବେ ବିଦେଶରେ ଏବଂ ସାନପୁଅ କାନପୁରରେ ଇଂଜିନିୟର । ଦୁଇ ପୁଅ ବିବାହିତ । ସେ ଆନନ୍ଦରେ ଅବସର ପ୍ରାପ୍ତ ଜୀବନର ମାଧୁର୍ଯ୍ୟକୁ ପ୍ରତିଭା ଦେବୀଂକ ସହ ଉପଭୋଗ କରିବାକୁ ମନସ୍ଥ କରି ଫେରି ଆସିଥିଲେ ନିଜର ଏଇ ପୈତୃକ ବାସଗୃହକୁ । ଖୁବ୍ ଶାନ୍ତ ଏ ଜୀବନ । କିନ୍ତୁ

କିଛି ଦିନ ହେବ ହଠାତ୍ ଏକ ନିଃସଂଗତା, ଅସ୍ଥିରତା । କାହିଁକି ?

ତାଂକୁ ଲାଗେ ଯେମିତି ଜୀବନରେ କିଛି ବାକି ରହିଗଲା । ଜୀବନର ଅର୍ଥ ଏଇଆ ନୁହେଁ । କିଛି ରୋମାଂଚ, କିଛିଟା ଉତ୍ତେଜନା... କିଛି ଯେ ନାହିଁ ଆଉ ଜୀବନରେ । ଜୀବନଟା କଅଣ ଖାଲି, ସନ୍ତାନ ଉତ୍ପତ୍ତି କରି ତାଙ୍କ ପାଇଁ ନିଜ ଜୀବନକୁ ନୀରସ କରିଦେବା ? ସେକ୍ସ ବା ପ୍ରେଷ୍ଟିଜ ଅଥବା ମନି ହିଁ ତ ଜୀବନର ଲକ୍ଷ୍ୟ ନୁହେଁ ।

ସେ ଯେମିତି ଆଜି ପର୍ଯ୍ୟନ୍ତ କେବଳ ଭ୍ରମରେ ହିଁ ପରିଚାଳିତ ହେଉଥିଲେ । ପ୍ରକୃତରେ ତାଂକୁ ଏପରି ଭାବେ ଜୀବନଟା ଅତିବାହିତ କରିବାର ନଥିଲା । ସେ ଥରେ ଥରେ ନିଜ ଅତୀତ ପ୍ରତି ଦୃଷ୍ଟିପାତ କରନ୍ତି । ଦେଖନ୍ତି ଖାଲି ବାଲି ଆଉ ବାଲି । ଯେମିତି ଏକ ମରୁଭୂମି । ଜୀବନଟା ତେବେ କଅଣ କେବଳ ମରୁଭୂମି ? ମରୁଦ୍ୟାନ ପାଇଁ ସେ ଦୃଷ୍ଟିପାତ କଲେ ମଧ ତାଂକ ଆଖି ଆଗରେ ରୁହେ କେବଳ ବାଲି ଆଉ ବାଲି । ସ୍ୱେ ଦୁଃଖ କରନ୍ତି । ଅବଶୋଷରେ ତାଙ୍କ କଂଠ ବାଷ୍ପରୁଦ୍ଧ ହୋଇଉଠେ । କାନ୍ଦିବାକୁ ଇଛା ହୁଏ । କିନ୍ତୁ କାନ୍ଦି ପାରନ୍ତି ନାହିଁ । ପ୍ରତିଭା ଦେଖିଲେ କଅଣ କହିବ ?

ଦୁଃଖ, ଗ୍ଲାନି ଏବଂ ଅବଶୋଷ ଯେତେବେଳେ ତାଂକ ମନଭିତରେ ଦୃଢ଼ ଭାବେ, ଆସନ ଜମାଇ ଦେଇ ହସି ଉଠନ୍ତି, ସେତେବେଳେ ଅନିରୁଦ୍ଧ ବାବୁ ଅତିଷ୍ଠ ହୋଇ ଉଠନ୍ତି । ''ନାଁଃ, ଏମିତି ହେବାର ନଥିଲା । କେଉଁଠି କିଛି ଭୁଲ ରହିଗଲା ।'' ସେଇ ରୁଟିନ ବଂଧା ଜୀବନ ପ୍ରତି ତାଂକର ଘୃଣା ହୁଏ । ଏବଂ ସେ ରାତିରେ ଶୋଇ ପାରନ୍ତି ନାହିଁ । ଚାରିକାନ୍ଥର ବଂଧନୀ ମଧରେ ବନ୍ଦୀ ହୋଇ କେବଳ ସେ ଦୀର୍ଘଶ୍ୱାସ ତ୍ୟାଗ କରନ୍ତି । ମନେପଡେ ସେ ଚାହିଁଥିଲେ ନିଜ ଜୀବନରେ କିଛି ଗୋଟାଏ ବ୍ୟତିକ୍ରମ । କିନ୍ତୁ କାହିଁକି ବ୍ୟତିକ୍ରମ । ସେଇ ତ ଧରାବଂଧା ଜୀବନ । କୁଆଡେ ଗଲା । ସେ ସ୍ୱପ୍ନ !

ସେ ମନେ ମନେ ହସି ଉଠି ସିଗାରେଟରେ ଅଗ୍ନିସଂଯୋଗ କରନ୍ତି । ଏବଂ ଝର୍କା ପାଖେ ଠିଆ ହୋଇ ଖୋଲା ଆକାଶକୁ ଚାହାଁନ୍ତି । ସିଗାରେଟର ଧୂଆଁ ଗୁଡାକ କୁହୁଡି ପରି ତାଂକ ଆଖି ଆଗରେ ଖେଳାଇ ହୋଇଯାନ୍ତି ଏବଂ ତାଙ୍କର ହଠାତ୍ ଯେମିତି ସବୁ ମନେ ପଡିଯାଏ । ପୁନର୍ବାର ସେଇ ଦୀର୍ଘଶ୍ୱାସ । ସେ ଭାବିପାରନ୍ତି ନାହିଁ ଯେ ଯେଉଁ ସ୍ୱପ୍ନକୁ ନେଇ ସେ ଯୌବନ ପର୍ଯ୍ୟନ୍ତ ବଂଚି ଆସିଥିଲେ ତାକୁ ହଠାତ୍ କେଉଁ ଦିନ ଓ କେମିତି ଭୁଲିଗଲେ । ତାଂକର ଲକ୍ଷ୍ୟର କ୍ଷତି ଘଟିଲା କେମିତି ? କିଛି ମନେ ପଡେ ନାହିଁ । ଯେତେ ଭାବିଲେ । ସେ ରାଗରେ ସିଗାରେଟ ଟାକୁ ଲନ୍‌କୁ ଫିଙ୍ଗି ଦିଅନ୍ତି ଏବଂ ପେଣ୍ଡୁଲମଟାକୁ ଚାହିଁ କ୍ରୋଧାନ୍ୱିତ ହୋଇ ଉଠନ୍ତି । ଇଛା ହୁଏ ପେଣ୍ଡୁଲମଟାକୁ ଛିଣ୍ଡାଇ ଦେବା ପାଇଁ ।

ପରକ୍ଷଣରେ ସେ କାନ୍ଦି ଉଠନ୍ତି । ସେ ହଠାତ୍ ଏତେ ଏକାକୀ ହୋଇ ପଡିଲେ କେମିତି ଓ କାହିଁକି ? ଜୀବନର ସବୁ ବୟସ ତକ ଅତିବାହିତ କରି ଆଜି ତାଙ୍କର ହଠାତ୍ ପୂର୍ବର ସେ ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଥିବା ସ୍ୱପ୍ନ ଗୁଡାକ ମନେ ପଡିଲା କାହିଁକି ?

ଡାକ୍ତର ଔଷଧ ଦେଇଛି । ନିଦ ଔଷଧ । ସେ ମନେ ମନେ ଚିନ୍ତାମୁକ୍ତ ହେବାକୁ ଚାହାଁନ୍ତି । ଦିନସାରା ପ୍ରତିଭା ଦେବୀଂକ ସହିତ ବ୍ୟସ୍ତ ରହି ସବୁ ଭୁଲିଯାନ୍ତି । ରାତି ହେଲେ ଔଷଧ ଖାଇବାକୁ ଇଛା ହୁଏ ନାହିଁ । ଅନିଦ୍ରା ରହି ଭାବି ବାକୁ ଭଲ ଲାଗେ । କିନ୍ତୁ ଶେଷ ପ୍ରହରକୁ ମୁଣ୍ଡ ଭାରି ହୋଇ ଉଠିଲେ ସେ ମନେ ମନେ ପରଦିନ ଔଷଧ ନିୟମିତ ଖାଇ 'ବ୍ଲଡି' ଚିନ୍ତାକୁ ଭୁଲିଯିବା ପାଇଁ ଅହେତୁକ ଦୁର୍ବଳତା । ଏଇ କିଛି ଦିନ ହେବ ଚିନ୍ତା ତାଂକ ଦୈନନ୍ଦିନ ଜୀବନର ଏକ ଅଂଗ ହୋଇ ପଡିଛି ।

ଥରେ ଥରେ ତାଙ୍କର ମନେ ହୁଏ ସେ ଯେପରି ଅନିରୁଦ୍ଧ ରାୟ ନୁହନ୍ତି । ଅନିରୁଦ୍ଧ ରାୟ ଯେପରି ଅତୀତର କୌଣସି ଏକ ମୁହୂର୍ତ୍ତରେ ମରିଯାଇଛି । ଏବଂ ତାରି ଶରୀରକୁ ନେଇ ସେ ଏକ ଭିନ୍ନ ବ୍ୟକ୍ତି ଅନିରୁଦ୍ଧ ରାୟର ଭୂମିକାରେ ଏକ ସଫଳ ଅଭିନେତା ପରି ଅଭିନୟ କରିଚାଲିଛନ୍ତି । ନିଜ ପ୍ରତି ତାଙ୍କର ଘୃଣା ହୁଏ ଏବଂ ସେ ସିଗାରେଟ ପରେ ସିଗାରେଟ ଟାଣି ଚାଲନ୍ତି । ତାଂକର ଦୃଢ ବିଚାର ସେ ଭୁଲ କରିଛନ୍ତି । ଜୀବନଟାକୁ ଏମିତି ସାଧାରଣ ଭାବେ ଅତିବାହିତ କରି ସେ ମସ୍ତବଡ ଭୁଲକରିଛନ୍ତି । ତାଂକର ଏକମାତ୍ର ଦୁଃଖ, ସେ ଜୀବନରେ କିଛି enjoy କରି ପାରିନାହାଁନ୍ତି ଏବଂ ତାଙ୍କ ଜୀବନରେ ଆଡଭେଚଂର ବୋଲି କୌଣସି ବସ୍ତୁ ରହିଲା ନାହିଁ ।

ସେ ନିରୁପାୟ ହୋଇ ନିଜ ଭଗ୍ନ ଶରୀରକୁ ଲକ୍ଷ୍ୟ କରନ୍ତି । ଅତିବେଶୀ ହେଲେ ଆଉ ମାତ୍ର ପାଂଚଟା ବର୍ଷ । ତାପରେ ସମସ୍ତେ ଭୁଲିଯିବେ ଅନିରୁଦ୍ଧ ରାୟକୁ । କିନ୍ତୁ ସେ ଚାହାନ୍ତି ନାହିଁ ଲୋକମାନେ ତାଂକୁ ଏତେ ଶୀଘ୍ର ଭୁଲି ଯାଆନ୍ତୁ । ହେଲେ ଆଉ ଯେ ଉପାୟ ନାହିଁ । କିଛି କରିବାର ଶକ୍ତି ନାହିଁ । ନିଜର ସବୁ ଶକ୍ତି ଅଯଥାରେ ବ୍ୟୟ କରି ଆଜି ଶକ୍ତିହୀନ ହୋଇ ପଡିଛନ୍ତି ।

ପ୍ରତିଭା ଦେବୀ ଆଜି ମଧ୍ୟ ବଡ ଟୋପାଏ ସିନ୍ଦୁର ମାରି ତାଙ୍କ ଆଗରେ ଠିଆ ହେଲେ, ସେ ମନେ ମନେ ଶିହରି ଉଠନ୍ତି । ହେଲେ ଉତ୍ତେଜନାହୀନ ଶରୀର ଆଉ ମନ ସହିତ ତାଳ ଦିଅନ୍ତି । ସେ ଲଜ୍ଜା ଏବଂ ଗ୍ଲାନିରେ ମଥାନତ କରି କାନ୍ଥରେ ଝୁଲୁଥିବା ଶିବ ପାର୍ବତୀ ଅଥବା ଗଣେଶ, ଲକ୍ଷ୍ମୀଙ୍କ କ୍ୟାଲେଣ୍ଡରକୁ ଚାହିଁ ଅଯଥାରେ ହାତ ଆଙ୍ଗୁଠି ଫୁଟାନ୍ତି ।

ଆଜି ସଂନ୍ଧ୍ୟାରୁ ବର୍ଷା ହେଉଥିଲା । ସେ ଅନେକ ଦିନପରେ ଆଜି ଟିକେ ଡ୍ରିଂକ କରିଥିଲେ । ବର୍ଷାରେ ଡ୍ରିଂକ କରିବା ତାଙ୍କର ପୁରୁଣା ଅଭ୍ୟାସ । ପ୍ରତିଭା ଦେବୀ ମଧ କିଛି କୁହନ୍ତି ନାହିଁ । ବଡ ଅଫିସର ହେଲେ ସାଧାରଣତଃ ଡ୍ରିଂକ କରିବାକୁ ପଡିଥାଏ । ଏଇଟା ଆରିଷ୍ଟୋକ୍ରେସିର ଲକ୍ଷଣ ।

ବର୍ତ୍ତମାନ ବର୍ଷା ବନ୍ଦ ହୋଇ ଆକାଶ ପରିଷ୍କାର । ହେନାର ସୁଗଂଧ ବାତାବରଣ ରେ ଏକ ମାଦକତା ଭରି ଦେଇଛି । ସେ ଉଠି ପଡିଲେ । ରାତି ଅଢେଇଟା । ପ୍ରତିଭା ଦେବୀ ଶୋଇଛନ୍ତି ନିଦରେ । ତାଂକ ପ୍ରତି ଅନିରୁଦ୍ଧ ବାବୁଙ୍କର ଈର୍ଷା ହେଲା । ଏଇ ନାରୀ

ଜୀବନରେ କେବେ କାନ୍ଦି ନାହିଁ। ତାକୁ କେବେ ସେ କନ୍ଦାଇ ପାରିନାହାନ୍ତି । ହଠାତ୍ ପ୍ରତିଭା ଦେବୀଙ୍କ ଗାଲରେ ଦୁଇଟା ଥାପଡ ମାରି ତାଙ୍କୁ କନ୍ଦାଇବା ପାଇଁ ଇଚ୍ଛା ହେଲା । ପରେ ପରେ ଭାବିଲେ, ହୁଏତ ପ୍ରତିଭା ଦେବୀ କାନ୍ଦି ନପାରନ୍ତି । ଆଶ୍ଚର୍ଯ୍ୟ ହୋଇ କେବଳ ପ୍ରଶ୍ନ ପଚାରି ପାରନ୍ତି । ସେ ଝର୍କା ପାଖରେ ଠିଆ ହେଲେ । ମନଟା କ୍ଷୋଭରେ ଭରିଗଲା । ସେ ତ ଜୀବନରେ କିଛି କରିପାରିଲେ ନାହିଁ ।

ଯେତେବେଳେ ଯାହା ବା କରିଥାନ୍ତେ, ସର୍ବଦା ନିଜର ପରିବାର ବର୍ଗ ତାଂକର ପ୍ରତିବଂଧକ ହୋଇ ଠିଆ ହେଲେ ଏବଂ ତାଙ୍କ ମନ ଭିତରେ ବଂଚି ରହିଥିବା ବ୍ୟତିକ୍ରମର ସ୍ୱପ୍ନ, ଆଡଭେଂଚର ସବୁ ମରିଗଲା ଏବଂ ସେ ଏକ ରୁଟିନ୍ ହୋଇ ପଡିଲେ । ସମସ୍ତେ ତାଂକର ଉପରେ ଖୁସୀ ହେଲେ । କିନ୍ତୁ ସେ ନିଜେ ନିଜ ଉପରେ କେବେ ଖୁସୀ ହୋଇ ପାରିଲେ ନାହିଁ ।

ବର୍ତ୍ତମାନ ସେ ଜାହିଦାକୁ ଚିହ୍ନି ମଧ ପାରିବେ ନାହିଁ । ସିନେମା ହଲରେ, ବସରେ ଅଥବା ରେଷ୍ଟୋରାଁରେ ଅତି ନିକଟରେ ବସିଥିଲେ ମଧ ସେ ଜାଣି ପାରିବେ ନାହିଁ । ଚାଳିଶ ବର୍ଷ କିଛି କମ୍ ବ୍ୟବଧାନ ନୁହେଁ । ସେ ତ ଜାଣି ନାହାନ୍ତି ଜାହିଦା ଏଯାଏଁ ବଂଚିଛି କି ମରିଛି । ତାଙ୍କ ହୃଦୟରେ ଜାହିଦାର ସ୍ମୃତି ଏକ ଦଶମ ଶ୍ରେଣୀରେ ପାଠ ପଢୁଥିବା ସ୍କୁଲ ବାଳିକାର ପ୍ରତିଛବି ପରି ରହିଯାଇଛି । ଯାହାକୁ ସେ ଏଇ ଦୀର୍ଘ ଚାଳିଶ ବର୍ଷ ମଧରେ ମଧ ଭୁଲାଇ ପାରି ନାହାନ୍ତି ।

କାହିଁକି ଯେ ସେ ଆକର୍ଷିତ ହୋଇଥିଲେ । ତା ମଧ୍ୟ ସେ ଜାଣିନଥିଲେ । ନିଜର କଠୋର ଅନୁଶାସନ ପ୍ରିୟ ପିତାଂକୁ ସେ ଜାଣିଥିଲେ ଏବଂ ବଡ ଭାଇଂକୁ ମଧ ବିଶ୍ଳେଷଣ କରିଥିଲେ । ଏକ ମୁସଲମାନ ପରିବାରର କନ୍ୟା ସହିତ ତାଙ୍କର ସଂପର୍କ ଯେ କେବେ ହୋଇପାରିବ ନାହିଁ ତା ମଧ ଜାଣିଥିଲେ, ତଥାପି ଆକର୍ଷଣର ଦୃଢ ରଜ୍ଜୁକୁ ସେ ଛିଣ୍ଡାଇ ପାରିନଥିଲେ ।

ଭାଇ କେବଳ ପଦୁଟିଏ କହିଥିଲେ, ତାଙ୍କର ସ୍ପଷ୍ଟ ମନେ ଅଛି, ''ଏ ସବୁ କାମ କଲେ ମଣିଷ ହୋଇ ପାରିବୁ ନାହିଁ । ମଣିଷ ହଅ ଅନିରୁଦ୍ଧ ।'' ଏବଂ ସେ ମଣିଷ ହୋଇଥିଲେ । ଜାହିଦା ନିଜ ବାପାଙ୍କ ସହ ଅନ୍ୟ ସହରକୁ ଗଲାବେଳେ ଅନିରୁଦ୍ଧ ତାକୁ କେତେକ ପ୍ଲାଷ୍ଟିକ ଫୁଲ ଉପହାର ଦେଇଥିଲେ । ଏବଂ ତାର ସ୍ମୃତି ଆଜି ସେଇ ପ୍ଲାଷ୍ଟିକ ଫୁଲ ପରି ତାଜା ଅଛି ତାଙ୍କ ହୃଦୟରେ ।

ସେ ବିଶ୍ଳେଷଣ କଲେ, ଜାହିଦାକୁ ବିବାହ କରିଥିଲେ କ୍ଷତି କଅଣ ହୋଇଥାନ୍ତା ? କାହିଁକି ଭାଇ ଏମିତି କହିଗଲେ ? ଏବଂ କାହିଁକି ସେ ବିନା ପ୍ରତିବାଦରେ ସେ ସବୁ ମାନିଗଲେ ? ସେ ଏତେ ଭୀରୁ କାହିଁକି ? ନିଜେ ପ୍ରେମର ଆରଂଭରୁ ହଠାତ୍ ମଣିଷ ହେବା ପାଇଁ ଶିକ୍ଷା ପାଇଲେ ଏବଂ ତାଙ୍କରି ପୁଅମାନେ ପ୍ରେମ ବିବାହ କଲେ, ସେ ପ୍ରତିବାଦ ସୁଦ୍ଧା କରି ପାରିଲେ ନାହିଁ ।

ଜାହିଦାର ଚାଳିଶ ବର୍ଷ ତଳର ମୁଖ ତାଂକ ଆଖି ଆଗରେ ନାଚି ଉଠିଲା । ସେ କ୍ରମେ କ୍ରମେ କ୍ରୁଦ୍ଧ ହେବାକୁ ଲାଗିଲେ । କେତେ ଅସହାୟ ସେ । ଆଜି ନିଜର ପ୍ରେମିକାକୁ ସୁଦ୍ଧା ଚିହ୍ନି ପାରିବେ ନାହିଁ । ଏବଂ ତାଂକ ପ୍ରେମିକା ମଧ୍ୟ ତାଙ୍କୁ ଚିହ୍ନିପାରିବ ନାହିଁ । ଚିରଦିନ ପାଇଁ ଜାହିଦାର ସ୍ମୃତି ତାଙ୍କ ହୃଦୟରେ ବଂଚିରହିଥିବ । ଚିରଦିନ ପାଇଁ ସେ ଏମିତି ଅବଶେଷ କରୁଥିବେ । ଏବଂ ଚିରଦିନ ପାଇଁ ସେ ନିଜ ଜୀବନର ମରୁଭୂମି ମଧ୍ୟରୁ ମରୁଦ୍ୟାନ ଖୋଜୁଥିବେ ।

''ନାଁ''– ସେ ହଠାତ୍ ଉତକ୍ଷିପ୍ତ ହୋଇ ଉଠିଲେ । ଆଉ ମୁଁ ସହିପାରିବି ନାହିଁ । ଆଇ ୱିଲ ଡୁ ସମଥିଂଗ ନିୟୁ- ଆଇ ୱାଂଟ ଏଡଭେଂଚର ।'' ସେ ଅସ୍ପଷ୍ଟ ସ୍ୱରରେ କହି ଉଠିଲେ ।

ଆକାଶରେ କେତେଖଣ୍ଡ ଭସା ବାଦଲ ଚନ୍ଦ୍ରକୁ ଘେରି ଯାଇଥିଲେ । ବଗିଚାରୁ ହେନାର ବାସ୍ନା ତଥାପି ଆସୁଥିଲା । ଏବଂ ଅନିରୁଦ୍ଧ ରାୟ ରିଟାୟାର୍ଡ ଶିକ୍ଷା ବିଭାଗ ସେକ୍ରେଟାରୀ ନିଜ ବେଡ୍‌ରୁମର ନୀଳ ନିଷ୍ପ୍ରଭ ଆଲୋକରେ ସେ ଦୁଇହାତ ପିଠିରେ ରଖି ପଦଚାରଣ କରୁ କରୁ ହସି ଉଠୁଥିଲେ । ତାଙ୍କ ବୃଦ୍ଧ ଭଗ୍ନ ଶରୀର ରହି ରହି କଂପି ଉଠୁଥିଲା ଉତ୍ତେଜନାରେ ।

ହଠାତ୍ ସେ ଠିଆ ହୋଇ ଗଲେ । ବାହୁଟେକି ଅଳସ ଭାଂଗିଲେ । ଫ୍ୟାନ ବନ୍ଦ କଲେ । ଏବଂ ଫ୍ୟାନ ତଳେ ଠିଆ ହୋଇ ଅସ୍ପଷ୍ଟ ସ୍ୱରରେ କହି ଉଠିଲେ, ''ମୁଁ ଉପାୟ ପାଇ ଯାଇଛି । ଏଥର ଅତୀତର କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ହଜାଇ ଦେଇ ଥିବା ସ୍ୱପ୍ନର ଅସ୍ତିତ୍ୱକୁ ଆଉ ଖୋଜି ପାଇବା ପାଇଁ ମୋତେ ଏମିତି ରାତି ରାତି ଅନିଦ୍ରା ରହିବାକୁ ପଡିବ ନାହିଁ । କିଂବା ମୁଁ ନିଜକୁ ନିଜ ଭୁଲପାଇଁ ଆଉ ଦାୟୀ କରିବି ନାହିଁ । ମୁଁ ଦୁର୍ବଳ ନୁହେଁ ବୋଲି ପ୍ରମାଣ କରିଦେବି ।'' ଏବଂ ସେ ହସି ଉଠିଲେ ? କଥା ଶେଷ କରି । ନିଜ ଓ ଉତ୍ତେଜନାରେ ଆଖି ଦ୍ୱୟ ତାଂକର ଲାଲ ହୋଇ ଆସିଥିଲା ।

ସେ ଚାଦରଟାଏ ଉଠାଇ ଟେବୁଲରେ ଚଢି ଫ୍ୟାନରେ ଦଉଡି ପରି ବାନ୍ଧିଲେ ଏବଂ ଅନ୍ୟ ପଟେ ଗୋଟିଏ ଫାସ ପରି ଟେବୁଲ ଓହ୍ଲାଇ ଖଣ୍ଡେ କାଗଜରେ ଲେଖିଲେ– ''ଦିସ୍ ଇଜ୍ ଫର ଏଡଭେଚଂର ଓନଲି''– ଏବଂ କାଗଜଟିକୁ ପକେଟରେ ରଖି ଟେବୁଲରେ ଚଢି ଫାଶରେ ବେକ ଗଳାଇ ଦେଇ ଝୁଲି ପଡିଲେ ।

ତାଂକ ବେକଟି ଲମ୍ବା ହୋଇ ଆସିଲା ଏବଂ ମୃତ୍ୟୁ ଜନିତ ଚିତ୍କାରରେ ପ୍ରତିଭା ଦେବୀ ଉଠିଲା ବେଳକୁ, ଆକାଶର ତାରା ଗୁଡ଼ିକ ମଳିନ ପଡିଯାଇଥିଲେ ମଧ୍ୟ ବଗିଚାରୁ ହେନାର ମହକ ତଥାପି ବି କକ୍ଷଟିରେ ମାଦକତା ଭରିବାରେ ଯଥେଷ୍ଟ ସାହାଯ୍ୟ କରୁଥିଲା ।

□ *ପ୍ରତିଭା : ସେପ୍ଟେମ୍ବର, ୧୯୭୯*

# କୌଣସି ଏକ ନାରୀକୁ ଭଲପାଇବା ପରେ

ସେ ଏକ ନାରୀ, ମୋ ପାଇଁ ଅପରୁପ ସୁନ୍ଦରୀ, ତିଗିରିଆ ଗଡ ନିବାସୀ ଡାକ୍ତର ଜନାର୍ଦ୍ଦନ ନନ୍ଦଙ୍କ ଷଷ୍ଠକନ୍ୟା ଓ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଶ୍ରୀ ଅମୂଲ୍ୟ ରତ୍ନ ନନ୍ଦଙ୍କ ଷଷ୍ଠ ଭଗ୍ନୀ କୁମାରୀ ସୁଲତା ନିଜର ବିବାହ ପୂର୍ବରୁ ଥିଲା ମୋର ପ୍ରେମିକା।

ମୁଁ ଏକ ପୁରୁଷ, ଏବଂ ଜୁନ ସାତ ତାରିଖ ଯାଏଁ ଥିଲି କୁମାରୀ ସୁଲତା ନନ୍ଦଙ୍କ ପ୍ରେମିକ।

ସହର- ସମ୍ବଲପୁର, ସ୍ଥାନ- ଏ ସହରର ପ୍ରତେକ ଗଳି କନ୍ଦି,

## ପ୍ରଥମ ଦୃଶ୍ୟ- ଗଂଗାଧର ମେହର କଲେଜ (ମାର୍ଚ୍ଚ ୧୯୭୧)

ପୁରୁଷ- ମୁଁ ତୁମକୁ ଭଲ ପାଏ।

ନାରୀ- ମୁଁ ଫଷ୍ଟ୍ରେଟେଡ, ଜଣକୁ ଭଲ ପାଉଥିଲି। ସେ ମୋତେ ଠକି ଦେଇଛି।

ପୁରୁଷ- ସମସ୍ତେ ସମାନ ନୁହଁନ୍ତି।

ନାରୀ- ସମସ୍ତଙ୍କ ମନବୃତ୍ତି ସମାନ।

ପୁରୁଷ- ମୋତେ ଥରେ ସୁଯୋଗ ଦେଇ ଦେଖ।

ନାରୀ - ଅସଂଭବ।

ପୁରୁଷ- ଅନ୍ୟର ଅପରାଧ ପାଇଁ ଶାସ୍ତି ମୋତେ କାହିଁକି ?

ନାରୀ- ଥରେ ସୁଯୋଗ ଦେଇ ପଛେ ମୋତେ ଅନୁତାପ କରିବାକୁ ପଡିଲେ

ପୁରୁଷ- ତା ହୋଇପାରିବ ନାହିଁ।

ନାରୀ- କିନ୍ତୁ ଏ ସମାଜ... ପରିସ୍ଥିତି

ପୁରୁଷ- ତୁମ ମନରେ ଦମ୍ଭ ଅଛିତ ?

ନାରୀ- ନଥିଲେ କଅଣ ତୁମର ସାନ୍ନିଧ ଦମ୍ଭ ସୃଷ୍ଟି କରିପାରିବ ନାହିଁ ?

ପୁରୁଷ- ନିଶ୍ଚୟ।

## ଦ୍ୱିତୀୟ ଦୃଶ୍ୟ- ରାଜପଥ (ଡିସେମ୍ବର ୧୯୭୧)

ନାରୀ- ଗତକାଲି ତୁମେ ଆସିଲ ନାହିଁ।

ପୁରୁଷ- କାମଥିଲା,

ନାରୀ- ଆଜି ଚିଠି ମଧ୍ୟ ଲେଖି ଆଣିନ।

ପୁରୁଷ- ଭୁଲିଗଲି।

ନାରୀ- ଏମିତି ଦିନେ ମୋତେ ଭୁଲି ଯିବନିତ ?

ପୁରୁଷ- ବାଜେ କଥା,

ନାରୀ- ଭାଉଜଙ୍କ ସହିତ ମୋତେ ଆଉ ଭଲ ଲାଗୁନାହିଁ, ସବୁ ଦିନେ ଜଗି ବସୁଛନ୍ତି।

ପୁରୁଷ- ମାନେ ?

ନାରୀ- ମୋ ବହି ଖେଳାଉଛନ୍ତି ଓ ଫୋନ କଲେ ପାଖରେ ବସି ଯାଉଛନ୍ତି।

ପୁରୁଷ- ଏହା ଭିତରେ ତାଙ୍କର ଟ୍ରାନ୍ସଫର ହୋଇ ଯାଉଛି ପରା।

ନାରୀ- ହଁ ଜାନୁୟାରୀ ଭିତରେ ସେ ଭୁବନେଶ୍ୱର ଚାଲିଯିବେ।

ପୁରୁଷ- ତୁମେ କେଉଁଠି ରହିବ।

ନାରୀ- ମୋ ସାଂଗ ନିଳିମା ଘରେ।

ପୁରୁଷ- ତାହା ହେଲେ ଖୁବ୍ ଭଲ ହେବ।

ନାରୀ- କେମିତି ?

ପୁରୁଷ - (ଆଖିରେ ଆଖି ମିଳାଇ)- ବୁଝି ପାରୁନ।

## ତୃତୀୟ ଦୃଶ୍ୟ- ଫୋନ- (ଜାନୁୟାରୀ ୧୯୭୨)

ନାରୀ- ମୁଁ କାଲି କଟକରୁ ଫେରିଲି।

ପୁରୁଷ- କଅଣ ହେଲା।

ନାରୀ- ହେବ କଅଣ। ସେମାନେ ଦେଖି ଆସିଥିଲେ। ତାପରେ ମୁଁ ଘରେ ମନାକରିଦେଲି। ପରୀକ୍ଷା ନସରିଲେ ମୁଁ ବିବାହ କରି ପାରିବିନି।

ପୁରୁଷ- ମୁଁ ଭାବୁଛି, ତୁମେ ଘରେ ଆମର ଏକଥା ସ୍ପଷ୍ଟ ଭାବେ ପ୍ରକାଶ କରି ଦେଲେ ଭଲ ହେବ।

ନାରୀ- ତୁମେ ବାପାଂକୁ ଜାଣନି, ଭାରି କଂଜରଭେଟିଭ ସେ।

ପୁରୁଷ- ଆମ ଘରେ କିନ୍ତୁ ସମସ୍ତେ ରାଜି।

ନାରୀ- କେବେ ଦିନେ ତୁମ ଘରକୁ ଯିବି।

ପୁରୁଷ - ଆଜି ଆସ,

ନାରୀ- ନା ଆଜି ନୁହେଁ।

ପୁରୁଷ- ଏଥର ଆଉ କିଏ ଅଛି। ଭାଇ ଭାଉଜ ତ ଚାଲିଗଲେ,

ନାରୀ- ସାନ ଭଉଣୀ ନୀରୁ ଅଛି। ସମସ୍ତଙ୍କୁ କହିଦେବ।

## ଚତୁର୍ଥ ଦୃଶ୍ୟ: ଚିଠି (ଫେବ୍ରୁୟାରୀ ୧୯୭୨)

ପ୍ରିୟତମ,

ଆଉ ଭଲ ଲାଗୁନି ଏକା ଏକା, ସବୁ ବେଳେ ତୁମେ ମନେ ପଡୁଛ । ରାତିରେ ବିଛଣାରେ ନିଦ ହେଉନି । ତୁମର ପରଶ ପାଇଁ ମନ ମୋର ବ୍ୟାକୁଳ ହୋଇ ଉଠିଲାଣି । କେବେ ଆସି ମତେ ନେଇଯିବ କୁହ, ଆଉ ରହି ପାରୁନି । ଦିନେ ତୁମକୁ ନ ଦେଖିଲେ କିଛି ଭଲ ଲାଗୁନି, କେବେ ଆସିବ ସେ ଦିନ- ଯେଉଁଦିନ ଆମର ମିଳନ ହେବ ।... ତୁମରି ପାଦ ତଳେ ନିଜର ସବୁକିଛି ଅର୍ପଣ କରି ମୁଁ ପାଇବି ତୃପ୍ତି । ଶେଷରେ ତୁମ ପାଇଁ ଶତଶତ ଚୁମ୍ବନ ପଠାଇଲି, ଏଇ ଚିଠି ମାଧ୍ୟମରେ ଗ୍ରହଣ କରି ତାର ପ୍ରତ୍ୟୁତ୍ତର ଦେବ । ତୁମର ସୁଲତା

## ପଂଚମଦୃଶ୍ୟ:- ଏକ ପ୍ରକୋଷ୍ଠ (ଏପ୍ରିଲ ଏଗାର ୧୯୭୨)

ପୁରୁଷ- ଆଜି ମତେ କେତେ ଭଲ ଲାଗୁଛି ଜାଣ ।

ନାରୀ- କେତେ ?

ପୁରୁଷ- ତାହା କହି ହେବନାହିଁ ।

ନାରୀ- ତୁମ ବୋଉ ଭାରି ଭଲ ।

ପୁରୁଷ- ତୁମେ ମଧ୍ୟ ଖୁବ୍ ଭଲ ।

ନାରୀ- ଶୁଣୁଛି ତୁମେ ଡ୍ରିଙ୍କ କରୁଛ

ପୁରୁଷ- କିଏ କହିଲା ।

ନାରୀ- ଯିଏ କହୁ, ତୁମେ ମୋର ଦେହ ଛୁଇଁ ପ୍ରତିଜ୍ଞାକର ଯେ ଆଉ ତାକୁ ଛୁଇଁବ ନାହିଁ ।

ପୁରୁଷ- ଆଚ୍ଛା ପ୍ରତିଜ୍ଞା କଲି ।

ନାରୀ- ଆଉ ସିଗାରେଟ୍

ପୁରୁଷ- ପ୍ରତିଜ୍ଞା ।

ନାରୀ- (ନୀରବତାପରେ) ଚିଠି ମାଧ୍ୟମରେ ଆଉ... ଭଲ ଲାଗୁନାହିଁ ।

ପୁରୁଷ- ମୋତେ ବି ନୁହେଁ... ତୁମରି ଆପତ୍ତି ନାହିଁତ ?

ନାରୀ- ନା....

(ତାପରେ ଏକ ଦୀର୍ଘ ଚୁମ୍ବନ, ସେଇଟା ଥିଲା ପ୍ରଥମ ଚୁମ୍ବନ)

## ଷଷ୍ଠ ଦୃଶ୍ୟ- ପୂର୍ବର ପ୍ରକୋଷ୍ଠ (ମେ ଏଗାର ୧୯୭୨)

ନାରୀ- ଘରେ କେହି ନାହାଁନ୍ତି ଯେ...

ପୁରୁଷ- କଟକ ଯାଇଛନ୍ତି ।

ନାରୀ- ତୁମେ ମତେ ତା ହେଲେ ମିଛ କହିଲ ।

ପୁରୁଷ- ହୁଏତ କିଛି ଅର୍ଥ ଥାଇପାରେ ।

ନାରୀ- ଅର୍ଥ ?

ପୁରୁଷ- ବୁଝିପାରୁନ ।

(ଚୁମ୍ବନ)

ନାରୀ- ଛୁଟିରେ ମୁଁ ଗାଁକୁ ଯାଇ ଜୁନ ୩୦ରେ ଫେରିବି ।

ପୁରୁଷ- ଏତେ ଦିନ ମୁଁ ଏକାକୀ ରହିବି କେମିତି ।

ନାରୀ- ରହିବାକୁ ଚେଷ୍ଟା କରିବ । ତାପରେ ପରୀକ୍ଷା ଶେଷ ହେଲେ କୋର୍ଟରେ ଯାଇ ଆଗରୁ ଦରଖାସ୍ତ କରିଦେଇ ଥିବ ।

ପୁରୁଷ- ଆଉ ଏତେ ଦୂରତ୍ୱ ଭଲ ଲାଗୁନି ।

(ଆଲିଙ୍ଗନ)

ନାରୀ- ମୋତେ ବି ଭଲ ଲାଗୁନି ।

(ପର୍ବତ ଶିଖରର ବରଫ ସୂର୍ଯ୍ୟଙ୍କ ପ୍ରଖର କିରଣରେ ତରଳି ବାକୁ ଆରମ୍ଭ କଲେ)

ନାରୀ- ଛି, ଏକଅଣ କରୁଛ ।

ପୁରୁଷ- ଆପତ୍ତି କରନି । ଧର୍ଯ୍ୟ ଧରି ତୁମେ ରହିପାରୁଛ ।

ନାରୀ- କିନ୍ତୁ ବିବାହ ପର୍ବରୁ...

ପୁରୁଷ ତୁମେ ଦୃଢ । ମୁଁ ଦୃଢ... ତା ସତ୍ତ୍ୱେ...

ନାରୀ- ଯଦି କିଛି ହୋଇଯାଏ ତୁମେ ଦାୟୀ...

ପୁରୁଷ- ହଁ...

ନା- ଆଲିଂଗନ, ଚୁମ୍ବନ, (ବାତାବରଣ ଉଷ୍ମ)

ନାରୀ- ମୁଁ ଆଉ ପାରୁନି... ଜଳୁଛି....

(ଏବଂ ଦୁଇଟି ଶରୀର ଏକ ହୋଇଗଲେ)

## ସପ୍ତମ ଦୃଶ୍ୟ- ଚିଠି (ମେ ୨୭ ୧୯୭୨)

ପ୍ରିୟତମ,

ମୁଁ ଗାଁରେ ପହଞ୍ଚିଲି, ଏଠି ବଡ ବିଭ୍ରାଟ ହୋଇଛି । ଘରେ ତୁମ ମୋ କଥା ଜାଣିପାରିଛନ୍ତି । ଏବଂ ମୁଁ ତୁମ ବିନା ରହି ପାରୁନାହିଁ । ଦେହ ଓ ମନର ମିଳନ ପରେ ଆଉ ଏ ବିଚ୍ଛେଦ ମୁଁ ସହିପାରିବିନି, ଯଦି ଏମାନେ ଘରେ ବାଧ କରନ୍ତି ମୁଁ ବିଷ

ଖାଇଦେବି। ତୁମ ସନ୍ତାନର ମା' ହେବାର ଗୌରବ ମୋର ଦରକାର।

ତୁମର ସୁଲତା

## ଅଷ୍ଟମ ଦୃଶ୍ୟ : କାର୍ଡ ଚିଠି (ମେ ୩୧-୧୯୭୨)

ମୋର ବିବାହ ହେଉଛି ପ୍ରିୟତମ, ଘରେ ଜବରଦସ୍ତି ମୋର ବିବାହ ଅନ୍ୟ ସ୍ଥାନରେ କରାଇ ଦେଉଛନ୍ତି, ମୋତେ ଭୁଲ ବୁଝିବ ନାହିଁ। ଦେହ ଓ ମନ ସବୁତ ତୁମକୁ ଦେଇଛି ଯାହାକୁ ବିବାହ କରିବି, ସେ କେବଳ ଦେହଟା ପାଇବ। ମନଟା ନୁହେଁ, ମନ ଚିରଦିନ ତୁମର। ତୁମର ଲତା

## ନବମଦୃଶ୍ୟ: ଚିଠି (ଜୁନ୍ ୩, ୧୯୭୨)

ତୁମେ ବଡ଼ "ଅନ୍‌ଲକି" ପ୍ରିୟତମ। ହାତ ପାଖରେ ସବୁ ପାଇ କିଛି ପାଇପାରିଲ ନାହିଁ। ଏବଂ ମୁଁ ତୁମକୁ ସବୁଦେଇ ମଧ କିଛି ଦେଇ ପାରିଲି ନାହିଁ। ବିବାହ ମୋର ସାତ ତାରିଖରେ, ମୋତେ ଭୁଲିଯିବ ଏବଂ ନିଜର ଉନ୍ନତି କରିବ।

## ଦଶମଦୃଶ୍ୟ: - ରାସ୍ତା(ଜୁଲାଇ ୧୯୭୨)

ବଂଧୁ- ଶୁଣିଲି ସୁଲତାର ବିବାହ ହୋଇଗଲା।

ପୁରୁଷ- ହଁ

ବଂଧୁ- ଏତେ କଥା ପରେ ମଧ ସେ ବିବାହ କରିପାରିଲା।

ପୁରୁଷ- ସେ ପରିସ୍ଥିତିର ତାଡନାରେ ବାଧ ହେଲା।

ବଂଧୁ- ମିଛ କଥା, ନିଜେ ନ ଚାହିଁଲେ କେହି ଏତେବଡ ଶିକ୍ଷିତ ଝିଅଟାକୁ ଜୋର କରି ବିବାହ ଦେଇ ପାରିବେ ନାହିଁ।

ପୁରୁଷ- ମାନେ ?

ବଂଧୁ- ମାନେ ସେ ତୋ ସହିତ ଛଳନା କରିଛି, ତୋତେ ଠକିଛି।

## ଏକାଦଶ ଦୃଶ୍ୟ: ଚିଠି (ଅଗଷ୍ଟ ୧୯୭୨)

ସୁଲତା,

ତୁମେ ମୋତେ ଠକିଦେଇ ଚାଲିଗଲ, ଭଲକଥା। କିନ୍ତୁ ମୁଁ ତୁମକୁ ଛାଡିବି ନାହିଁ; ତୁମଠାରୁ ପ୍ରତିଶୋଧ ନେବି। ସମସ୍ତଙ୍କୁ ସବୁକଥା ଖୋଲି କହିଦେବି। ସବୁ ପ୍ରକାଶ କରିଦେବି। ତାପରେ ଦେଖିବ... ସମସ୍ତେ ତୁମକୁ ଘୃଣା କରିବେ।

ଦ୍ୱାଦଶ ଦୃଶ୍ୟ: ଚିଠି (ସେପ୍ଟେମ୍ବର ୧୯୭୨)

ତୁମ ଚିଠି ପାଇଛି, ଏବଂ ତୁମକୁ ଘୃଣା କରିବା ଆରମ୍ଭ କରି ଦେଇଛି। ପ୍ରତିଶୋଧ ନେଇ ତୁମେ କଅଣ ଶାନ୍ତି ପାଇ ପାରିବ ? ମୋ ସ୍ୱାମୀ ମତେ କ୍ଷମା କରି ଦେଇଛନ୍ତି ଏବଂ ମୋ ଭାଇ ତୁମକୁ ଦେଖିଲେ ତୁମର ଏଇ କର୍ମ ପାଇଁ ଶାସ୍ତି ଦେବ।

## ଶେଷରେ:-

ମୁଁ ହସୁଥିଲି । ଅତୀତର ତିଗିରିଆ ଗଡ ନିବାସୀ ଡାକ୍ତରଙ୍କ କନ୍ୟା କୁମାରୀ ସୁଲତାନନ୍ଦ ଏବଂ ବର୍ତ୍ତମାନର ଖଣ୍ଡସାହୀ ନିବାସୀ ଡାକ୍ତର ଅଭିରାମ ଦ୍ୱିବେଦୀଙ୍କ ପୁତ୍ର ବଧୂ ଏବଂ ଇଂଜିନିୟର ରୁଦ୍ର ମାଧବ ଦ୍ୱିବେଦିଙ୍କ ପତ୍ନୀ ଶ୍ରୀମତୀ ସୁଲତା ଦ୍ୱିବେଦିଙ୍କ ଚିଠି ପଢି ହସୁଥିଲି । କୌଣସି ଏକ ଝିଅକୁ ଭଲ ପାଇଲା ପରେ ଘୃଣିତ ହୋଇ ମୁଁ ହସୁଥିଲି । ମୋ ହାତରେ ଥିଲା ଶହେ ଅଠେଇଶ ଖଣ୍ଡ ପ୍ରେମ ପତ୍ର । ମୁଁ ହସୁଥିଲି ନାରୀର ଛଳନାକୁ ଦେଖି । ତାର ପରିବର୍ତ୍ତନକୁ ଲକ୍ଷ୍ୟ କରି ।

ସମସ୍ତେ କହୁଛନ୍ତି କାହାଣୀ ସମାପ୍ତ ହୋଇଯାଇଛି । କିନ୍ତୁ ମୋ ମତରେ କାହାଣୀ ସମାପ୍ତ ହୋଇନି ବରଂ ସେଇଠୁ ଆରମ୍ଭ ହୋଇଛି ଏକ ''ଅଫ୍‌ବିଟ୍'' ଫିଲ୍ମର କାହାଣୀ ପରି, ଘୃଣା ଏବଂ ପ୍ରତିଶୋଧର ନୂତନ ଏକ କାହାଣୀ । ଏଇଟା ହିଁ ମୋ ପାଇଁ ଆରମ୍ଭ ।



□ *ଇତ୍ୟାଦି : ଡିସେମ୍ବର ୧୯୭୨*



# କେତୋଟି ସ୍ୱୀକାରୋକ୍ତି

ରାମ !

ମୁଁ ରାମ । ପୁରାଣର ନାମ, ଚରିତ୍ର ଜଣେ ଅତିମାନବର ଚରିତ୍ର । ମୁଁ ସଦା ଚେଷ୍ଟିତ ନିଜକୁ ଅତିମାନବ କରିବାକୁ । ଛୋଟ ପରିବାରରେ ଜନ୍ମ ହୋଇ ସାନଭାଇ ପ୍ରତି ଅଶେଷ ସ୍ନେହ ମମତା ଢାଳି ଆସିଛି । ମା ମୋର ମମତାର ଉତ୍ସ । ବାପାଂକ ଗଂଭୀର ମୁଖ ପଛେ ଲୁଚିଛି ଏକ ସ୍ନେହର ଝରଣା । କିଶୋର ଅବସ୍ଥାରୁ ହିଁ ଅଗାଧ ସ୍ନେହ ମମତା... ମୋତେ ନିଷ୍ଠୁର କରିପାରିନି । କୃତୀ ଛାତ୍ର... ସୁନାମ ମିଳିଲା । ଘରେ ସଂପତ୍ତି ଅମାପ । ଭବିଷ୍ୟତ ଚିନ୍ତା କରିନି କେବେ ।

ଯୁବକ ପ୍ରାଣରେ ମୋର କେବେ ସ୍ପନ୍ଦନ ଜାତ ହୋଇନି । ବିଭିନ୍ନ ଧର୍ମର ଦର୍ଶନ ମଧ୍ୟରେ ବୁଡି ରହି... ମୋଟା ମୋଟା ଧର୍ମଗ୍ରନ୍ଥ ମଧ୍ୟରେ ନିଜକୁ ବୁଡାଇ... ମୁଁ ଭୁଲିଲି ବସଂତର ଜୁଆର । ଜୁଆର ସମୁଦ୍ର ବକ୍ଷରେ ଧୀରେ ଧୀରେ ବଢିଚାଲିଲା । ଯୀଶୁଂକର Ten Commantmentsକୁ ବିଶ୍ଳେଷଣ କରୁ କରୁ... ହରାଇଲି ବସଂତ ବସଂତ... ଯୌବନ... । ଭଙ୍ଗା ଦେଖି ପ୍ରକୃତିସ୍ଥ ଯେତେବେଳେ ହେଲି ସେତେବେଳେ ମୁଁ ପ୍ରୌଢ । ସମସ୍ତ ଆଶା... ଆକାଙ୍କ୍ଷା... କାମନା... କଳ୍ପନା... ଉତ୍ତେଜନାକୁ କିଏ ଯେପରି ... ବୁଢୀ ଅସୁରୁଣୀର ଗପ ପରି... ସାତ ତାଳ ପାଣି ମଧ୍ୟରେ ନାଗସାପ ମାନଙ୍କ ଜଗୁଆଳୀରେ ରଖା ହୋଇଥିବା ସିଂଦୁକ ମଧ୍ୟରେ... ସୁନା ଫରୁଆରେ ବଂଦ କରି ରଖିଦେଲା । ଶୁଷ୍କ ଭୂମିରେ ଗୋଲାପ କେବେ ଫୁଟିଛି । କିଂତୁ ମା'କୁ ମନା କରି ପାରିଲିନି ।

ବିବାହ ହେଲା... ଯେଉଁ ବିବାହ ଦଶବର୍ଷ ପୂର୍ବେ ହୋଇଥାନ୍ତା । ସେହି ବିବାହ ବେଦୀରେ ପଂଡିତ ମନ୍ତ୍ର ଉଚ୍ଚାରଣ କଲା ସମୟରେ... ମୁଁ ପ୍ରଜ୍ୱଳିତ ଅଗ୍ନି ମଧ୍ୟରେ ଖୋଜିଲି ବିତିଲା ଦଶବର୍ଷ । ବାସର ଘରେ ପତ୍ନୀର ଅବଗୁଂଠନ ଉଠାଇଲି । ନିଜକୁ ନିଜ ମଧ୍ୟରେ ସୀମିତ ରଖିଥିବା ବ୍ୟକ୍ତିକୁ ଅନ୍ୟର ବ୍ୟକ୍ତିତ୍ୱ ଚମକାଇ ଦେଲାପରି... ଅଂଧକାର ଅଭ୍ୟସ୍ତ ବ୍ୟକ୍ତି ଆଲୋକର ପ୍ରଖରତାକୁ ସହ୍ୟ କରି ନପାରିଲା ପରି... ମୁଁ ପତ୍ନୀର ସୁନ୍ଦରତା ନିକଟରେ ମଥା ନତ କରି ତୁଳନା କଲି ତା'ର ଯୌବନୋଦ୍ଦୀପ୍ତ

ଶରୀରକୁ ରଂଗ ପରିବର୍ତ୍ତନ କରିଥିବା ମୋ କେଶ ସହିତ । ଲାଜ ଲାଗିଲା । ସହଜ ହୋଇ ପାରିଲିନି । ଅଜାଣତରେ ବ୍ୟବଧାନ ରହିଗଲା ଆମ ମଧ୍ୟରେ । ଯେଉଁ ସୀତା ରାମର ସହକର୍ମିଣୀ... ସହଧର୍ମିଣୀ ହୋଇ ଛାୟା ପରି ଶରୀରରୁ କେବେ ପୃଥକ କରି ନହୋଇଥାନ୍ତା, ସେ ଆପେ ଆପେ ଦୂରେଇଗଲା ।

ଆମ ଦୁହିଁଙ୍କ ବୟସର ବ୍ୟବଧାନ... ଦୁହିଁଙ୍କ ମଧ୍ୟରେ ବ୍ୟବଧାନ ରୂପ ନେଲା । ରାତିରେ ବିଛଣାରେ ମୁଁ ଲକ୍ଷ୍ୟ କରିଛି... ଅନୁଭବ କରିଛି... ମୋ ଆଲିଙ୍ଗନ ମଧ୍ୟରେ ତା' ଶରୀର କଂପେ... ତା' ଅଧର ଯେପରି ମୋ ଅଧର ନ ଚାହିଁ... ଦୂରକୁ ଲକ୍ଷ୍ୟ କରି ରହିଥାଏ ଖୋଜିଲା ଦୃଷ୍ଟିରେ । ଶରୀର ମିଳନ ସହିତ... ମନ ମିଳିଲା ନାହିଁ । ବାଧ୍ୟ ହୋଇ ମୁଁ ଦୂରେଇଗଲି ମୋର ପୂର୍ବସ୍ଥାନକୁ... ପରିବାର ସହିତ କୌଣସି ସଂପର୍କ ନରଖି । ''ସାନ ଭାଇ ଯୁବକ... ଠିକ ସଂଭାଳି ନେବ ପରିବାରର ଚିନ୍ତାକୁ ।'' ଉତ୍ତର ଦେଲି ବାପାଙ୍କର ପ୍ରଶ୍ନରେ ।

''ହଁ ! ସେ ଠିକ ସଂଭାଳି ଦେଲା ମଧ୍ୟ...'' ବ୍ୟଥିତ ପ୍ରାଣର ସ୍ୱୀକାରୋକ୍ତି ।

ଲକ୍ଷ୍ମଣ:

ମୁଁ ଲକ୍ଷ୍ମଣ.. ରାମଂକର କନିଷ୍ଠ ଭ୍ରାତା । ଆଧୁନିକ ସମାଜରେ ଜନ୍ମ ହୋଇଥିଲେ ମଧ୍ୟ.. ପରିବାରର ପ୍ରଭାବ... ବଡ ଭାଇ ରାମଂକର ପ୍ରଭାବ ଦ୍ୱାରା ମୁଁ ଚେଷ୍ଟା କରିଥିଲି ଲକ୍ଷ୍ମଣ ଚରିତ୍ରରେ ନିଜକୁ ଗଢି ନେବାକୁ । କିନ୍ତୁ ପାରିଲିନି । ନିକଟ ସଂପର୍କୀୟ କହିଲେ... ଦୁଇଭାଇ ହେଲେ ମଧ୍ୟ ଚରିତ୍ର କେତେ ଭିନ୍ନ । ବଡଭାଇ ହସନ୍ତି । କିନ୍ତୁ ସ୍ନେହରେ କାଣିଚାଏ ମଧ୍ୟ କୃପଣତା କରିନାହାନ୍ତି । ମାତା ପିତାଙ୍କୁ ଭକ୍ତି ନକରି ମୁଁ ଭକ୍ତି କରେ ବଡଭାଇଙ୍କୁ ।

ହଠାତ୍ କାହିଁକି କେଜାଣି ବଡଭାଇ ନିଜକୁ ପୃଥକ୍ କରି ନେଇ ସଦାସର୍ବଦା ନିଜ ଲାଇବ୍ରେରୀରେ ବିତାଇଲେ । ବାପା ମା ସ୍ଥିର କଲେ ବିବାହ କରିବାକୁ । ମୋର ସେତେବେଳେ କଲେଜରେ ଦ୍ୱିତୀୟ ବର୍ଷ । ଭାଇଂକ ବିବାହ ପରେ ଭାଉଜଂକ ସହିତ... ନିଜର ଅତିରିକ୍ତ ଅବକାଶ ସମୟ ବିତାଇବା ନିମନ୍ତେ ମୁଁ ଆତୁର ହେଲି । ବିବାହ ହେଲା । କିଂତୁ ଯେଉଁ ପରି ଭାଉଜ ମୁଁ ଖୋଜୁଥିଲି... ପାଇଲିନି । ଗଂଭୀର ମୁଖରେ ତାଂକର ସର୍ବଦା ଏକ... ବେଦନା ପରିଷ୍କାର ପ୍ରତିଫଳିତ ହୋଇ ରହିଥାଏ । ମନ ଖୋଲି କଥା କହନ୍ତିନି ।

ବିବାହର କିଛିଦିନ ପରେ ଭାଇ ପୁନର୍ବାର ଫେରିଗଲେ ନିଜର ପୂର୍ବ ସ୍ଥାନକୁ । ଖରା ଦିନ ଛୁଟି । ଦିନେ ସାହସ କରି ଭାଉଜଂକ ନିକଟରେ ଦ୍ୱିପ୍ରହରେ ପହଂଚିଲି । ସେ ଦିନ କାହିଁକି କେଜାଣି ପ୍ରଥମ ଥର ପାଇଁ ଭାଉଜ ମୋତେ ଲକ୍ଷ୍ୟ କରି ପ୍ରଫୁଲ୍ଲିତ ହେଲାପରି ଜଣାଗଲେ । ନିଜର ଅସ୍ତବ୍ୟସ୍ତ ଶାଢୀ ପ୍ରତି ଦୃଷ୍ଟି ନଦେଇ ଏକ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଲକ୍ଷ୍ୟ କଲେ ମୋତେ । ମୁଁ ଯୁବକ.. ଭାଉଜ ହେଲେ ମଧ୍ୟ ସେ ଯୁବତୀ... ଶରୀରର ପ୍ରତ୍ୟେକ ଅଂଗ ଉପର ନେଇ ଥରେ ଚକ୍ଷୁ ବୁଲାଇ ଆଣିଲି । ଯୌବନ

ନିଶାରେ ଚକ୍ଷୁ ଦୁଇଟି ଅର୍ଦ୍ଧ ଉନ୍ମୀଳିତ... ଆମନ୍ତ୍ରଣ ଜଣାଇ । କେମିତିକା ଏକ ଶିହରଣ... ଏକ ଅପୂର୍ବ ଛନ୍ଦ... ଦକ୍ଷ ଚିତ୍ରକାରର ତୂଳୀ ପରି ... ମଦ ନିଶା ପରି... ଚତୁର୍ଦ୍ଦିଗକୁ ରଂଗୀନ କରିଦେଲା । ଛେପ ଢୋକି କହିଲି, ''ଭାଉଜ ଖେଳିବ ?'' ପଲଂକରୁ ଅଳ୍ପ ଉଠି ଶରୀରକୁ ଆଉ ଟିକେ ବଂକେଇ ଇଂଗିତ ପୂର୍ଣ୍ଣ ସ୍ୱରରେ କହିଲେ... ''ଖେଳିବ.. ମୋ ସହିତ''... ସ୍ୱର ଟିକେ ଧୀର କରି କହିଲେ... ''ମୁଁ ଯେ କେବେଠୁଁ...''

ତାଙ୍କ ଶରୀର ମୋ ଶରୀର ସହିତ ଘଷି ହେଉଥାଏ । ତାସ ମୁଠାଟା ମୋ ହାତରୁ ଖସି ପଡିଲା । ସେ ମୋତେ ଭିଡି ଧରିଲେ । ଉତ୍ତେଜନାରେ ତାଙ୍କ ଶରୀର ଥରୁଥାଏ । ମୁଁ ପ୍ରତିବାଦ କଲି... ''ନାଁ ଭାଉଜ । ଏଇଟା ଠିକ ନୁହେଁ ।'' ତାଙ୍କର ହାତସ୍ପର୍ଶ ମୋତେ ବ୍ୟାକୁଳ କରିଦେଲା । ଆଉ ଆପତ୍ତି କରି ପାରିଲିନି । ମୁଁ ଲକ୍ଷ୍ମଣର ମୁଖାଟା ଓହ୍ଲାଇଁ ଫିଙ୍ଗିଦେଲି । କେଉଁ ଯୁଗରେ... ଲକ୍ଷ୍ମଣ ସୀତାଂକର ପାଦ ଦେଖୁଥିଲେ କିଂତୁ ଆଜି... । ମୁଁ ନିଜକୁ ତାଙ୍କ ହାତରେ ଟେକି ଦେଲି । ସେହି ଦିନ ସେହି ମୁହୂର୍ତ୍ତରେ... ଆମ ମଧ୍ୟରେ ଥିବା ବ୍ୟବଧାନ ଦୂର ହୋଇଗଲା । ଆଉ ପାର୍ଥକ୍ୟ ବାକି ରହିଲା ନାହିଁ ।

କିଛି ଦିନ ପରେ ଦିନେ ବାପା ପଚାରିଲେ ଭାଇଙ୍କୁ.... ''ତୁ ଏପରି ହେଲେ ସଂସାର କିପରି ଚଳିବ । ପରିବାରକୁ କିଏ ସଂଭାଳିବ ।'' ଭାଉ ଉତ୍ତର ଦେଲେ- ''ଲକ୍ଷ୍ମଣ ସଂଭାଳି ଦେବ ଯେ ।'' ଭାଇଙ୍କ ସ୍ୱରରେ ମୁଁ ଏକ ଇଂଗିତ ଖୋଜିଲି । ହଁ । ମୁଁ ଠିକ ସଂଭାଳିଦେବି । ଅପରାଧୀର ... ଅପରାଧର... ସ୍ୱୀକାରୋକ୍ତି ।

ସୀତା:

ପ୍ରତ୍ୟେକ କୁମାରୀ ପରି ମୁଁ ମଧ୍ୟ ସ୍ୱପ୍ନ ଦେଖିଥିଲି... ବଡ ଘରର... ଯୁବକ ସ୍ୱାମୀର... ବିଳାସବ୍ୟସନ... କଳ୍ପନାର ରଂଗୀନ ତୂଳୀ ଦ୍ୱାରା... ସ୍ୱପ୍ନର ଦୁନିଆଟା ରଂଗୀନ ହୋଇ ଥିଲା । ସମସ୍ତେ କୁହଂତି ମୁଁ କୁଆଡେ ଭାରି ସୁନ୍ଦରୀ । ଗର୍ବିତା ମନ ଦେଇ... ବଢିଲା ଯୌବନକୁ ବେଖାତିର କରିବାର... ଫଳ ପାଇଲି ରମେଶ ଭାଇଙ୍କ ନିକଟରୁ । ଅପରିଚିତ ପଥରେ... ହାତ ଧରି ଦେଇଗଲେ ରମେଶ ଭାଇ । ପ୍ରତିବାଦ କଲିନି । ଦୁଃଖ ମଧ୍ୟ ଲାଗିଲାନି । ଉଦ୍ଧତ ଯୌବନ ମୋର ପ୍ରଥମ ଥର ପାଇଁ ହାର ମାନିଲା ପୁରୁଷର ପୁରୁଷତ୍ୱ ନିକଟରେ । ରହସ୍ୟ... ରହସ୍ୟ ହୋଇ ରହିଲାନି । ବିବାହ ପ୍ରସ୍ତାବ ପଡିଲା । ଠିକ ହୋଇଗଲା ଶୁଣିଲି । ବାହାରକୁ ଯିବା ଆସିବାରେ ପ୍ରତିବଂଧକ ସୃଷ୍ଟି କଲେ ପରିବାରବର୍ଗ । ପୁରୁଷର ସାହଚର୍ଯ୍ୟ ପାଇଥିବା ଶରୀର... କଂଟକିତ ହୋଇ ଉଠିଲା... ବିନା ସାନ୍ନିଧ୍ୟରେ । ଆପତ୍ତି କଲି । ... କିନ୍ତୁ ଆପତ୍ତି ମୋର କେହି ଶୁଣିଲେନି ।

ବିବାହ ହୋଇଗଲା । ବିବାହ ପୂର୍ବରୁ ଭାବୀ ସ୍ୱାମୀଙ୍କର ଖଂଡେ ଫଟୋ ମଧ୍ୟ ମୋତେ ଦେଖିବାକୁ ଦିଆଗଲା ନାହିଁ । ଅଜଣା... ଅଦେଖା... ଏକ ପ୍ରୌଢ ପୁରୁଷର ହସ୍ତରେ ମୋ' ହସ୍ତ ଦିଆଗଲା । ବିବାହ ବେଦୀ ମୋ ଶରୀର ରୋମାଂଚିତ ହେଲା

ନାହିଁ । ଚୁପ ଚାପ ଶାଶୁ ଘରକୁ ଆସିଲି । ବାହ୍ୟ ଆଡ଼ଂବର ଓ ସାଜସଜ୍ଜା ଦେଖି ଆଶ୍ୱସ୍ତ ହେଲି । ଯାହା ହେଉ ସ୍ୱପ୍ନ ମୋର ବ୍ୟର୍ଥ ହୋଇନି ।

ପ୍ରଥମ ରାତି... ଯେଉଁ ରାତି ପ୍ରତି ନାରୀ ପାଇଁ ଅବିସ୍ମରଣୀୟ... ସେହି ରାତିରେ... ତାଙ୍କ ମୁଖର ସେହି ଶୁଷ୍କ ଚର୍ମ ମୋତେ ବ୍ୟଥିତ କଲା । ସେହି କ୍ଷଣ ପରଠାରୁ ତାଙ୍କର ସ୍ପର୍ଶରେ ମୁଁ ପାଇଲି କୌଣସି ଏକ ଶୁଷ୍କ ପଥରର ସ୍ପର୍ଶ । ନୀରବରେ ମୁଁ ପଡି ରୁହେ । ସେ ନିଜର ଉତ୍ତେଜନା ଶାଂତ କରି ଶୋଇ ପଡନ୍ତି । କିନ୍ତୁ ଶୋଇ ପାରେନି ମୁଁ... କଳ୍ପନା ମଧ୍ୟରେ ଖୋଜି ବସେ ରମେଶ ଭାଇଙ୍କର ସ୍ପର୍ଶ । ମନରେ ଆଗ୍ନେୟଗିରି ମୁଣ୍ଡ ଟେକେ ।

ବ୍ୟବଧାନକୁ ବଢାଇ ସେ ମୋ ନିକଟରୁ ଦୂରେଇଗଲେ । ତାଙ୍କ ସାନଭାଇ .... ସତେ ଯେପରି ରମେଶ ଭାଇଙ୍କର ଅନ୍ୟ ରୂପ । ପରିବାର ମଧ୍ୟରେ ରହି ସୁଯୋଗ ପାଏନା... ମନରେ କିନ୍ତୁ ତାଙ୍କ ଛବି ରହି ସାରିଥାଏ । ରମେଶ ଭାଇ ପରେ ସେ ହିଁ ମୋତେ ବ୍ୟସ୍ତ କରି ପକାଇଥାନ୍ତି । ସେ ଦିନ ସେ ଆସିଲେ । ତାଙ୍କୁ ଲକ୍ଷ୍ୟ କରି ମୁଁ ନିଜକୁ ସଂଯତ କରି ପାରିଲିନି । ମୁଁ ମଧ୍ୟ ସୀତା ହୋଇ ପାରିଥାନ୍ତି । କିଂତୁ ସମୟ କରି ଦେଲାନି... ମନର ସ୍ୱପ୍ନ... ଏକ କୁମାରୀର କଳ୍ପନା ସତେ ଯେପରି ପାଣି ଫୋଟକା ପରି ମିଳେଇଗଲା । ତଥାପି ମୋର ସୀତା । ତଥାପି ମୋର ସୀତା ହୋଇ ନପାରିବା ନିମନ୍ତେ ଦାୟୀ କିଏ ?... ମୁଁ ଭାବେ ମୋର ପିତାମାତା ଓ ମୋର ସ୍ୱାମୀ... ଅନେକାଂଶରେ ରମେଶ ଭାଇ ମଧ୍ୟ ।

ସେ ଦିନ ସ୍ୱାମୀ ଆସିଲେ... କହିଲେ... ''ମୁଁ କିଛି ଦିନ ପାଇଁ ବାହାରକୁ ଯାଉଛି, ଚଳିଯିବ ତ ।''

ମୁଁ କିଛି କହିଲି ନାହିଁ... ପ୍ରୟୋଜନ ମଧ୍ୟ ନଥିଲା । ସେ କେମିତି ଏକ ଅର୍ଥପୂର୍ଣ୍ଣ ସ୍ୱରରେ କହିଲେ ''ଲକ୍ଷ୍ମଣ ଅଛି... ସେ ସବୁ ସଂଭାଳି ନେବ ଯେ ।''

ମୁଁ ଚମକିଲି, - ''ଜାଣି ପାରିନାହାନ୍ତି ତ ? କିଂତୁ କ୍ଷତି କ'ଣ ?'' କହିଲି- ''ହଁ ଠିକ କହିଲ ।'' ସେ ନୀରବରେ ମଥାନତ କରି ବାହାରକୁ ଚାଲିଗଲେ ।

''ହଁ ! ଠିକ କହିଛ, ସେ ଠିକ ସଂଭାଳି ନେବେ ।'' ଦର୍ପିତ ସ୍ୱରର ସ୍ୱୀକାରୋକ୍ତି ।

□ *ପଞ୍ଚରଙ୍ଗ : ମାର୍ଚ୍ଚ ୧୯୭୦*



# ଜୋକର

ହୃଦୟରେ ବଢିଉଠୁଥିବା, ଜମାଟ ବାନ୍ଧିଥିବା ଉତ୍କଣ୍ଠା, ଆଗ୍ରହ, ଭୟ ଦୂର ହୋଇ ଭରିଗଲା ଏକ ସ୍ୱଚ୍ଛ, ଧାରାବାହିକ ମନଖୋଲା ହସ । ବାତାବରଣର ନିସ୍ତବ୍ଧତା ଦୂର ହେଲା । ବାଘ ଖେଳ ପରେ ଜୋକି ଖେଳ ପାଇଁ ପ୍ରସ୍ତୁତି । ଚାରିପଟେ ଲୁହା ବାଡା ଦିଆ ହୋଇଥିଲେ ମଧ୍ୟ ହିଂସ୍ର ସର୍ବଦା ହିଂସ୍ର... ବାଘ ସର୍ବଦା ବାଘ.. । କିନ୍ତୁ ମଣିଷ ମଧ୍ୟ କମ ନୁହେଁ । ହିଂସ୍ରକୁ ମଧ୍ୟ ଭୟଭୀତ କରାଇଥାଏ... ତଥାପି... ଭୟ ଥାଏ । ହିଂସ୍ର ପ୍ରାଣୀର ମନ ସୁଯୋଗ ଖୋଜୁଥାଏ । କେତେବେଳେ କୌଶଳ ଦେଖି... ମଉକା ଦେଖି ପରାଧୀନତାକୁ ଦୂର କରି ସ୍ୱାଧୀନ ରୂପେ ନିଜର ଗୁରୁଗଂଭୀର ଚିତ୍କାର ଶୁଣାଇବା ପାଇଁ । ବିରାଟ ତଂବୁ ମଧ୍ୟରେ ବିଭିନ୍ନ ଶ୍ରେଣୀର ଦର୍ଶକମାନେ ମଧ୍ୟ ଭୟରେ ଜାକି ଜୁକି ହୋଇ ବସିଥାନ୍ତି । ଯାହା ହେଉ ବାଘ ଖେଳ ସରିଲା... ଏବେ ଦୋଳି ଖେଳ ହେବ । ଏକ ହିଂସ୍ର ପଶୁ ପରେ ଶାଂତ ପଶୁ ଆସିବ ଦର୍ଶକମାନଂକ ସମ୍ମୁଖକୁ । ବାଘକୁ ମନୁଷ୍ୟ ନିଜର କୌଶଳ ଦ୍ୱାରା ବଶୀଭୂତ କରି ନିଜର ମନ ମୁତାବକ କାମ ଆଦାୟ କରୁଛି । କିନ୍ତୁ ସେହି ମନୁଷ୍ୟ... ଅବଶ୍ୟ ଅନ୍ୟ ସଂପ୍ରଦାୟର ସତେ ଯେପରି ଜଣେ ବାଘ ଜଣେ ଛେଳି... ସମାଜର ବଂଧନ ମଧ୍ୟରେ ବାଂଧି ହୋଇ... ସ୍ୱାଧୀନ ହୋଇ ମଧ୍ୟ ପରାଧୀନ ଥାଇ... ନିଜର ବିବଶତାକୁ ଲୁଚାଇ ... ଜଂତାରେ ଥିବା ପଶୁପରି... ଖେଳ ଦେଖାଏ । ଦେଢ ଶହ ଫୁଟ ଉପରୁ ଡେଇଁ ପଡେ ତଳେ ବଂଧା ହୋଇଥିବା ଜାଲ ଉପରେ । ଦର୍ଶକ ଆନନ୍ଦରେ ତାଳି ପିଟନ୍ତି ।

ଗ୍ରୀନ ରୁମରେ ସେ ନିଜକୁ ଚିତ୍ରିତ କରୁଥାଏ । ନିଜର ମୁଖ ଉପରେ ଏକ ମୁଖା ରୂପେ... ନାକରେ ରବର ଲଗାଇ ନାକକୁ ଫୁଲାଇ... ବିଭିନ୍ନ ରଂଗର ରଂଗ ଦ୍ୱାରା ମୁହଁକୁ ଚିତ୍ରିତ କରି... ଢିଲା ରଂଗିନ ପ୍ୟାଂଟ ସାର୍ଟ ପିନ୍ଧି... ମୁଣ୍ଡରେ ଟୋପି ପିନ୍ଧି । ଗ୍ରୀନ ରୁମ ବାହାରେ... ପଡିଆରେ ଦର୍ଶକମାନେ ହସୁଥାନ୍ତି ଉଚ୍ଚସ୍ୱରରେ... ତାର ସମପନ୍ଥୀ ମାନଙ୍କର ବିଭିନ୍ନ ଅଂଗଭଙ୍ଗୀ ଦ୍ୱାରା । ଚିତ୍ରଣ ଶେଷ ହେଲା । ଶିଶୁମାନେ ଧଳା କାଗଜ ଉପରେ ବିଭିନ୍ନ ରଂଗ ବୋଳି ଏକ କଦର୍ଯ୍ୟ କୃତି କଲା ପରି... ସେ ଦର୍ପଣରେ ମୁହଁ ଦେଖି ଚମକି ପଡିଲା । କ୍ଷଣେ ଠିଆ ହେଲା । ଛାତି ଥରିଲା । କିପରି

କିନ୍ତୁ ଏହା ବ୍ୟତୀତ ଅନ୍ୟ ଉପାୟ ନାହିଁ... ଯେପରି ସର୍କସକୁ ଚାକିରି କରି ଆସିବା ବ୍ୟତୀତ ତାର ଅନ୍ୟ ଉପାୟ ନଥିଲା... ଯେପରି ଈଶ୍ୱରଙ୍କର ତାକୁ ଚାରିଫୁଟ କରି ଗଢିବା ବ୍ୟତୀତ ଅନ୍ୟ ଉପାୟ ନଥିଲା... ଯେପରି ତାର ବାପାମାଂକର ତାକୁ ମାଇନର ସ୍କୁଲରୁ ଉଠାଇ ଆଣିବା ବ୍ୟତୀତ ଅନ୍ୟ ଉପାୟ ନଥିଲା... ଯେପରି ତାଙ୍କର ତା'କୁ ଏକା ଏ ବିରାଟ ଦୁନିଆରେ ଛାଡି ଅଦିନରେ ମରିଯିବା ବ୍ୟତୀତ ଅନ୍ୟ ଉପାୟ ନଥିଲା... ଯେପରି ବୁଲିବୁଲି ଦୁଇମୁଠା ଭଲ ଭାବେ ଖାଇବାକୁ ନପାଇ ସର୍ବଦା ନିଜର ଶରୀର ଗଠନ ପାଇଁ ସମସ୍ତଙ୍କର ଉପହାସ ହେୟର ପାତ୍ର ହୋଇ ସର୍କସକୁ ଚାକିରି ପାଇଁ ଆସିବା ବ୍ୟତୀତ ଅନ୍ୟ ଉପାୟ ନଥିଲା... ଯେପରି ସର୍କସ ମ୍ୟାନେଜରଂକର ତା ପ୍ରତି ଦୟା ଦେଖାଇ 'ଜୋକର' କରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା... ଏବଂ ଯେପରି ବାଧ ହୋଇ ମ୍ୟାନେଜରଙ୍କର କଥା ମାନିନେବା ବ୍ୟତୀତ ତାର ଅନ୍ୟ ଉପାୟ ନଥିଲା ।

ସୁପର ଭାଇଜର ଜଣକ ଚିତ୍କାର କରି ଗ୍ରୀନରୁମ ମଧ୍ୟକୁ ପଶି ଆସିଲେ,... ''କିବେ ତୁ ଏ ଯାଏଁ ଯାଇନୁ ।'' ନୀରିହ ଦୃଷ୍ଟିରେ ଲକ୍ଷ୍ୟ କଲା ସେ ସୁପର ଭାଇଜରଂକୁ । କହିଲା... ''ମୁଁ କିଛି ଜାଣିନି... ମୋତେ ବଡ ଡର ଲାଗୁଛି... ଏତେ ଲୋକଙ୍କର ସମ୍ମୁଖରେ ମୁଁ କ'ଣ କରିବି ?'' ହସିଲା ସୁପର ଭାଇଜର... ପୁରୁଣା ଲୋକ... ଆଦେଶ ଦେବା ସ୍ୱରରେ କହିଲା... ''କିଛି ନାହିଁ ବେ, ତୁମ ଜୋକରଂକ କେମ ଭାରି ସହଜ, ଡେଇଁବ, ନାଚିବ, ଗଡିବ । ଯାହା ଇଚ୍ଛା କରିବ । କିଏ ପଚାରୁଛି ତୁମ କାମକୁ । ଦର୍ଶକ ଖୁସ ହେଲେ ଗଲା । ତୁମେମାନେ କାନ୍ଦିଲେ ମଧ୍ୟ ସେମାନେ ହସିବେ । ଆଗ ଲୋକେ ମଧ୍ୟ ଚାହୁଁଛନ୍ତି ଖାଲି ଗଡା ପଡା ।'' ସେ ବୁଝିଲା ତା'ର କର୍ତ୍ତବ୍ୟ । ସୁପର ଭାଇଜର ଚାଲିଗଲେ । ସେ ମଧ୍ୟ ନିଜ ଚାକିରୀର ପ୍ରଥମ ଦିନରେ ଅଧିକ ବିଳଂବ ନ କରି ଗ୍ରୀନ ରୁମ ମଧ୍ୟରୁ ବାହାରି ପ୍ରବେଶ କଲା ସର୍କସ ପଡିଆ ମଧ୍ୟରେ ।

ପଡିଆ ମଧ୍ୟରେ ଉଜ୍ଜ୍ୱଳ ଆଲୋକର ପରିଧି ମଧ୍ୟରେ ଅନେକ ଲୋକ ଯନ୍ତ୍ର ପରି କାମ କରିଚାଲିଥାନ୍ତି । ଦେଢଶହ ଫୁଟ ଉପରେ ଦୋଳି ଝୁଲା ହେଉଥାଏ । ତଳେ ଜାଲ ବଂଧା ହେଉଥାଏ । ବାଁ କୋଣରେ ଅର୍କେଷ୍ଟ୍ରା ବାଜୁଥାଏ । ଧଳା ପୋଷାକ ପିନ୍ଧି ଅନେକ ଲୋକ ବାଦାମଭଜା... ପାନ... ସିଗାରେଟ... ଆଳୁଚିପ୍ସ ବିକୁଥାନ୍ତି... ତିନି ଜଣ 'ଜୋକର'... ଦୌଡା ଦୌଡି ହେଉଥାନ୍ତି... ଲୋକମାନେ ମନଖୋଲି ହସୁଥାନ୍ତି... ପିଲାମାନେ ତାଳି ପିଟୁଥାନ୍ତି... ଷ୍ଟେଜ ନିକଟରେ ଜଣେ ଛୋଟ ପିଲା ଉତ୍ସୁକ ହୋଇ ତାକୁ ଲକ୍ଷ୍ୟ କରି ରହିଥାଏ । ଥରେ ଅତି ଦୃଢତାର ସହ ସେ ଚତୁର୍ଦ୍ଦିଗରେ ଚକ୍ଷୁ ବୁଲାଇ ଆଣିଲା ।

ତିନିଜଣ ଜୋକର ତା'କୁ ଚାହିଁଲେ । ନିଜ ନିଜ ଭିତରେ କିଛି କଥାବାର୍ତ୍ତା ହେଲେ । ସେ ଅଣ୍ଟାରେ ହାତ ଦେଇ ସେମାନଙ୍କୁ ଲକ୍ଷ୍ୟ କଲା । କାହାକୁ ସେ ଚିହ୍ନିନି । ଚିହ୍ନିଥିଲେ ଭଲ ହୋଇଥାନ୍ତା । ମିଶି ପାରିଥାନ୍ତା, କିନ୍ତୁ ଚିହ୍ନିନି... କିଛି କଥା ନାହିଁ କାଲି ଚିହ୍ନିବ । କିନ୍ତୁ ଆଗନ୍ତୁକକୁ ସେମାନେ କିପରି ଗ୍ରହଣ କରିବେ କେଜାଣି । ଜଣେ ହାତରେ ପଟା ଖଣ୍ଡେ ଧରି ଚାଲି ଆସିଲା ତା' ନିକଟକୁ । ପଟାଟିର ମଝିରେ ଫାଙ୍କା... ଫାଙ୍କା ଆବାଜ ପାଇଁ । ଦର୍ଶକ ଦେଖିବେ ମାଡ... ଶୁଣିବେ ଶବ୍ଦ... ଆନନ୍ଦିତ ହେବେ ଜୋକରର ତୀବ୍ର ବେଦନା ବିଷୟରେ ଚିନ୍ତା କରି, ତାର ଅଭିନୟ ଦେଖି... ରଂଗବୋଳା ମୁଖ ଦେଖି । ... କିନ୍ତୁ ଅନୁଭବ କରିପାରିବେ ନାହିଁ ତା'ର ସ୍ପର୍ଶ ।

ନିତମ୍ବରେ ଆଘାତ କଲା ଆସିଥିବା ଜୋକରଟି । ଶବ୍ଦ ଜୋରରେ ଶୁଭିଲା... କିଂତୁ କଷ୍ଟ ହେଲାନି । ଫାଙ୍କା ଆବାଜ... କିନ୍ତୁ ସେହି ଫାଙ୍କା ଆବାଜ ମଧ୍ୟରେ ମିଶିଗଲା ଅନେକ ଶବ୍ଦ... ହୃଦୟର... ଆଶାର... ଆତ୍ମାର... କାମନାର ଭବିଷ୍ୟତର... ଅତୀତର... ବର୍ତ୍ତମାନର... ଶରୀରର ପ୍ରତ୍ୟେକ ଅଂଗର ସ୍ୱାଧୀନତାର... ମସ୍ତିଷ୍କର ଚିନ୍ତା ଶକ୍ତିର... ବିବେକର... । ଏତେ ଶବ୍ଦ ମିଶିଲେ ହିଁ ତ ଫାଙ୍କା ଶବ୍ଦ ସୃଷ୍ଟି ହୁଏ । ସେ ଆଘାତ ପାଇଲା ପରଠାରୁ ସତେ ଯେପରି ଏକ ଯନ୍ତ୍ର । ଆଘାତ ଯେପରି ଚାବି । ଚାବି ଦିଆଗଲା ପରେ ମାଙ୍କଡ ନାଚେ... ମଦ ପିଏ । ମୁହଁରୁ ସିଗାରେଟ ଧୂଆଁ ଛାଡେ, ଭାଲୁ ବାଜା ବଜାଏ.. । ଚାବି ସରିଗଲେ ସବୁ ସ୍ଥିର... ଘଡି ବଂଦ ହୋଇଯାଏ । ଆଲାର୍ମ ଶବ୍ଦ ବଂଦ ହୋଇଯାଏ । ସେ ନାଚିବା ଆରଂଭ କରିଛି... କାରଣ ବର୍ତ୍ତମାନ ଫୁଲ୍ ଚାବି ଦିଆ ହୋଇଛି । କିନ୍ତୁ ନାଚ ସରିବ କେବେ ? କେବେ ଚାବି ସରିବ ? ବୋଧହୁଏ ମୃତ୍ୟୁ ଆସିଲେ... । ଆଘାତ ପାଇଲା ପରେ ସେ ଆଗନ୍ତୁକ ସହିତ ମିଶିଗଲା । ଚାବିଦିଆ କଂଢେଇ ପରି... ବର୍ତ୍ତମାନ ସେ ନାଚିବ... ଫଟା ପଟାରେ ମାଡ ଖାଇବ... ମାଡ ମାରିବ... ମୁହଁ ବଂକେଇ ଗାଳି ଦେବ... ମୁଣ୍ଡ ତଳକୁ କରି ମାଟିରେ ଗଡିବ... କାହାର ଟୋପି ଚୋରି କରି ନେବ.. । ଏବେ ଶୋ ସରିଲେ ଚାବି ଶେଷ ହେଲା ପରି ଥକ୍କା ମାରି ବସିଯିବ ।... ମୁହଁରୁ ରଂଗ ଛଡେଇବ... ।

ପ୍ରଥମ ଲାଇନ୍‌ରେ ବସିଥିବା ଛୋଟ ପିଲାଟି ଏବେ ମଧ୍ୟ ତାକୁ ଲକ୍ଷ୍ୟ କରି ରହିଛି । ଉତ୍ସୁକ ଦୃଷ୍ଟିରେ ସେ ଅନ୍ୟ ତିନି ଜଣ ପେଶାଦାର ପୁରୁଣା ଜୋକରଂକ ସହିତ ନିଜକୁ ଖାପ ଖୁଆଇ ନେଇ ନେଲା । କେତେ ଶିଘ୍ର ସେମାନେ ଚିହ୍ନିଗଲେ ନିଜ ନିଜର ଆତ୍ମାକୁ... ନିଜର ପେଶାକୁ... ନିଜର ଲକ୍ଷ୍ୟକୁ ସେମାନଙ୍କର ପ୍ରକୃତ ମୁଖ ଯାହାହେଉ ପଛେ ଏହି ରଂଗର ମୁଖା ସେମାନଂକୁ କରିଛି ଏକ । ପୃଥିବୀ ଓ ଚଂଦ୍ର ଦୁହେଁ ଦୁହିଁଙ୍କର ମାଧ୍ୟାକର୍ଷଣ ଶକ୍ତି ଦ୍ୱାରା ଏକ ନିର୍ଦ୍ଦିଷ୍ଟ ଦୂରତାରେ ବଂଧା ହୋଇଥିଲା ପରି ସେମାନଙ୍କର ଅନ୍ତରଙ୍ଗତା... ମଧ୍ୟ ଏକ ନିର୍ଦ୍ଦିଷ୍ଟ ଦୂରତା ମଧ୍ୟରେ ସୀମାବଦ୍ଧ । ତା'

ବାହାରକୁ କିଂବା ଭିତରକୁ ସେମାନଙ୍କର ପ୍ରବେଶ ନିଷେଧ... ଯାଇପାରିବେ ନାହିଁ।

ଦୋଳି ଖେଳ ଆଉ ଟିକିଏ ପରେ ଆରଂଭ ହେବ। ଅର୍କେଷ୍ଟ୍ରାର ସ୍ୱର ଧିମା ହେଉଛି। ପିଲାଟି ତା'କୁ ଚାହିଁଛି... ବୋଧହୁଏ ନିଜର କୌଣସି ପରିଚିତର ମୁଖା ଖୋଜୁଛି ରଂଗ ଭିତର ଦେଇ। ସେ ହସିଲା। ପିଲାଟି ମଧ ହସିଲା। ଏକା ଡିଆଁକେ ପଟା ଫିଙ୍ଗି ପିଲା ନିକଟରେ ପହଞ୍ଚିଲା। ପିଲାଟି ତା ମା ନିକଟକୁ ଘୁଞ୍ଚିଗଲା। ମା ନିଜର ପଣତ କାନି ମଧ୍ୟରେ ଲୁଚାଇ ଦେଲେ। ସତେ ଯେପରି ସମ୍ମୁଖରେ କୌଣସି ଜଂତୁ। ପଶୁକୁ ଆଦର କରିଲେ କ୍ଷତି ନାହିଁ... କିଂତୁ ମନୁଷ୍ୟ ହୋଇ ମନୁଷ୍ୟକୁ ଭୟ। ଦୂରରୁ ଲକ୍ଷ୍ୟ କରି ପ୍ରତ୍ୟେକ ଅଂଗଭଂଗୀରେ ମନଖୋଲି ହସିଲେ କ୍ଷତି ନାହିଁ... କିନ୍ତୁ ନିକଟକୁ ଆସିବ ଏପରି ଏକ କଦର୍ଯ୍ୟ ବେଶରେ... ନାଁ ନା...।

କଷ୍ଟ ହେଲା ତାକୁ। ଆଖି କୋଣରେ ଲୁହ ଜକେଇଲା। କିନ୍ତୁ ବୋଳା ହୋଇଥିବା ରଂଗ ତା' ମୁଖର ପ୍ରକୃତ ଭାବକୁ ସ୍ପଷ୍ଟ ରୂପେ ପ୍ରତିଫଳିତ କଲା ନାହିଁ ଦର୍ଶକ ସମ୍ମୁଖରେ। ସେ ମନଦୁଃଖରେ ଫେରିଲା। ଦର୍ଶକମାନେ ହସିଲେ।

ଦୋଳି ଖେଳ ପାଇଁ ଖେଳୁଆଡମାନେ ଦଉଡି ଧରି ଚଢୁଛନ୍ତି ଉପରକୁ। ସେ ତଳେ ଠିଆ ହୋଇ ଚାହିଁରହିଥାଏ ଉପରକୁ। ଚାରି ଆଡେ ନିସ୍ତବ୍ଧ। କାରଣ ଜୀବନ ମୃତ୍ୟୁର ଖେଳ। ଜୀବନ ମୃତ୍ୟୁର ଖେଳକୁ ଚୁପ ହୋଇ ଦେଖିବ... ପ୍ରତିବାଦ କରିବ ନାହିଁ... ଆପତ୍ତି କରିବ ନାହିଁ... କେବଳ ନୀରବ ଦର୍ଶକ ରୂପେ ଦେଖିଯିବ... କାରଣ ପଇସା ଦେଇ ଖେଳ ଦେଖି ଆସିଛି।

ସୁପରଭାଇଜର ଦୂରରୁ ତାକୁ ଡାକି ଡାକିଲେ। ସେ ଧୀରେ ଧୀରେ ତାଂକ ନିକଟରେ ପହଞ୍ଚିଲା। ସେ କହିଲେ- "ତୁ ଚଢ ବେ।" ସେ କିଛି ବୁଝି ପାରିଲା ନାହିଁ। ସୁପରଭାଇଜର କ୍ରୋଧଭରା କଣ୍ଠରେ କହିଲେ- "ଆବେ ଉପରକୁ ଚଢ।" ନିର୍ଦ୍ଦେଶ କଲେ ଉପରକୁ। ଯେଉଁଠାରେ ଦୋଳି ଖେଳର ଖେଳୁଆଡମାନେ ଠିଆ ହୋଇଥାନ୍ତି। ଯେଉଁଠାରେ ସେମାନେ ଦୋଳି ଖେଳିବେ ଏବଂ ତାପରେ ଜାଲ ଉପରକୁ ଡେଇଁବେ କୌଶଳ ପ୍ରଦର୍ଶନ କରି। "ମୁଁ ଜାଣିନି" ସେ ଧୀର କଣ୍ଠରେ କହିଲା। "ଆବେ ଏଥିରେ ଜାଣିବାର କ'ଣ ଅଛି। ତୁ ଦୁଇଥର ଝୁଲିବୁ। ତାପରେ ତଳକୁ ଡେଇଁ ପଡିବୁ। ତଳେ ଜାଲ ଅଛି। କିଛି ହେବନି। ଯା। ଅଧିକା ପଇସା ମଧ ପାଇବୁ।" ସୁପର ଭାଇଜର ବୁଝାଇଲେ। ଆଉ ଆପତ୍ତି କଲାନି।

ଉପରେ ପ୍ଲାଟଫର୍ମରେ ଠିଆ ହୋଇ ଜଣକ ପରେ ଜଣକର ଝୁଲିବା ଦେଖିଲା। ପ୍ରତ୍ୟେକ ଠିକ ମଧ ଭାଗରେ ଡେଉଁଥାନ୍ତି। ଏବଂ ଠିକ ମଧ ଭାଗରେ ଜାଲ ବଂଧା ହୋଇଥାଏ। ସେ ପ୍ରତୀକ୍ଷା କରିଥାଏ ତା'ର ନମ୍ବର। ଭାବିଲା- "ଯଦି ଠିକ ମଝିରେ ନ ପଡି ଟିକେ ଏପଟ ସେପଟ ହୁଏ, ତେବେ ?

ରେଲିଂ ଧରେଇ ଦେଇ ବାଧ କରି ଖେଳୁଆଡମାନେ ତା'କୁ ଠେଲି ଦେଲେ । କେବଳ ଦୁଇଟି ଦଉଡିର ସହାୟତାରେ ସେ ଝୁଲିଲା । ପୃଥିବୀର ମାଧ୍ୟାକର୍ଷଣ ତାକୁ ଟାଣିଲା ତଳକୁ । ସେ ଏପଟ ସେପଟ ହେଉଥାଏ ରେଂଲିଧରି, ପାଟିରୁ ଯନ୍ତ୍ରଣା ଓ ଭୟର ଚିତ୍କାର ବାହାରୁ ଥାଏ । ଦର୍ଶକମାନେ ହସୁଥାନ୍ତି । ଢିଲା ପ୍ୟାଂଟ ପବନ ଦ୍ୱାରା ଶରୀରରୁ ପୃଥକ ହୋଇଗଲା... ଦର୍ଶକମାନେ ହସି ହସି ପେଟ ଧରି ଗଡିଗଲେ ।

ପାପୁଲି ତା'ର ଝାଳରେ ଭରିଗଲା । ଏବଂ ଠିକ ମଧ୍ୟ ଭାଗକୁ

ପୂର୍ବରୁ ରେଲିଂରୁ ପାପୁଲି ଦୁଇଟି ଖସିଗଲା । ମାଧ୍ୟାକର୍ଷଣ ଶକ୍ତି ତା'କୁ ଟାଣିଲା... ସେ କୌଣସି ବସ୍ତୁର ସାହାଯ୍ୟ ନ ପାଇ ଚିତ୍କାର କଲା । ପ୍ରତ୍ୟୁତ୍ତରରେ ଦର୍ଶକ ହସିଲେ । ସେ ତଳକୁ ଲକ୍ଷ୍ୟ କଲା । ଜାଲ ନିକଟ ହୋଇ ଆସିବା ପରିବର୍ତ୍ତେ ଦୂରେଇ ଗଲା । ମସ୍ତିଷ୍କରେ ଭରିଗଲା ଶୂନ୍ୟତା ।

ହଠାତ୍ ଦର୍ଶକମାନେ ସ୍ତବ୍ଧ ହୋଇଗଲେ । ହସ ବଂନ୍ଦ ହୋଇଗଲା । ଅର୍କେଷ୍ଟ୍ରା ବଂଦ ହୋଇଗଲା । ପ୍ରଥମ ଲାଇନ୍‌ରେ ବସିଥିବା ଛୋଟ ପିଲାଟିକୁ... ମା ତାର'ର କୋଳରେ ଲୁଚାଇ ଦେଇ ଆଖି ବୁଜିଦେଲେ । କାରଣ ଦୋଳିରେ ଝୁଲୁଥିବା ଜୋକରଟି ଜାଲ ଉପରେ ନପଡି ଭୂମିରେ ପଡିଲା... ଦେଢ ଶହ ଫୁଟ ଉପରୁ ।

*□ ଆଭା : ଜାନୁଆରୀ, ୧୯୭୦*



# ପ୍ରତିକ୍ରିୟା

ତାଙ୍କ ସହ ମୋର ସେପରି ବିଶେଷ ପରିଚୟ ନଥିଲା ।

ଦୁଇଟି ପଥିକ ଯେପରି ଭିନ୍ନ ଲକ୍ଷ୍ୟ ନେଇ; କିଛି ସମୟ ପାଇଁ ଗୋଟିଏ ପଥରେ ଚାଲୁଥିଲା ବେଳେ, ସେହି କିଛି ସମୟ ପାଇଁ ବନ୍ଧୁ ହୋଇଯାଇଥାନ୍ତି ଏବଂ ସମୟ ଆସିଲେ ନିଜ ଲକ୍ଷ୍ୟପଥ ଉଦ୍ଦେଶ୍ୟରେ ପୃଥକ ହୋଇଯାନ୍ତି । ସେହି ପରି ଅନେକ ଥର ଘରୁ ଏକ ସଂଗେ ଏକ ସମୟରେ ବାହାରି ବସରେ ବସିଛୁ ଏବଂ ନିଜ ନିଜ କର୍ମକ୍ଷେତ୍ରରେ ଓହ୍ଲାଇ ପଡିଛୁ । ଅନେକ ସେହି କଲୋନୀରୁ ଏକ ସଙ୍ଗେ ଘରୁ ବାହାରନ୍ତି, ଯେଉଁ କଲୋନିରେ ମୁଁ ରୁହେ ଏବଂ ଏକ ବସ୍‌ରେ ଯାତ୍ରା ଆରମ୍ଭ କରନ୍ତି ତେଣୁ ସମସ୍ତଙ୍କୁ ମନେ ରଖିବା ପାଇଁ କେବେ ଚେଷ୍ଟା କରିନି କିବା ପ୍ରୟୋଜନ  ମଧ୍ୟ ପଡିନି ।

ତାଙ୍କ ସହ ସେହି ଦୃଷ୍ଟିରୁ କେବେ କଥାବାର୍ତ୍ତା ହୋଇ ନ ଥିଲା ।

ସରକାରୀ ଚାକିରୀଆର ଜୀବନରେ ଛୁଟି ଖୁବ କମ । ସକାଳରୁ ସଞ୍ଜଯାଏ ଏକ ବୃତ୍ତର ପରିଧିରେ ଘୂରି ଘୂରି କ୍ଳାନ୍ତ ଶରୀରକୁ ନେଇ ସଂଜ ପରେ ଆଉ କୌଣସି ପ୍ରକାରର ମନୋରଞ୍ଜନ କରି ହୁଏ ନାହିଁ । ଶରୀର ଚାହେଁ ବିଶ୍ରାମ । ମନ ତ ଜନ୍ମରୁ ଅମାନିଆ ।

ହାତ ଦୁଇଟି ଗଦା ଗଦା ଫାଇଲକୁ ତନ୍ନ ତନ୍ନ କରି ପରୀକ୍ଷା କରିବା ପାଇଁ ଅଦରକାରୀ ସାବ୍ୟସ୍ତ ହେଲେ, ଦିଆଯାଏ ଅବସର । କୋଡିଏ ପଚିଶ ବର୍ଷର ଅକ୍ଳାନ୍ତ ପରିଶ୍ରମର ଫଳ ମିଳେ ମାତ୍ର କେତେ ଟଙ୍କା- ପେନ୍‌ସନ୍ ।

କେବଳ ପେନସନ୍ ହିଁ ପ୍ରମାଣ କରିଦିଏ ଯେ ମନୁଷ୍ୟ ବୁଢ଼ା ହୋଇ ଗଲାଣି । ଯୁବକ ମନର ସ୍ୱପ୍ନ ସବୁ ଅତର୍ଛିଆ ହୋଇ ପଳାୟନ କରନ୍ତି, ହୃଦୟରେ ଯେଉଁଠି ଟିକେ କୋମଳତା ଥାଏ, ଯେଉଁ କୋମଳତା ଏଇ ମଣିଷକୁ କବି, ଲେଖକ ଓ ଚିତ୍ରକାର କରି ଗଢେ, ସେହି କୋମଳତାର ଚାରିପଟେ ଏକ ଚର୍ବିର ପରସ୍ତ ବେଢି ଯାଏ । ଶରୀରରୁ ଉଷ୍ଣତା ଦୂର ହୁଏ । ତେଣୁ ଚର୍ବିର ପରସ୍ତ ବଢିଚାଲେ ।

ପ୍ରତ୍ୟେକ ସରକାରୀ ଚାକିରିଆ; ଛୋଟ ହେଉକି ବଡ ହେଉ ଏହି ଦୃଷ୍ଟିରେ ସମାନ ପ୍ରତ୍ୟେକ ଏକ ଯନ୍ତାରେ ପଶିଥିବା ପଶୁପରି । ସେଦିନ ରବିବାର ଥିଲା ।

ଘରେ କେହି ନଥାନ୍ତି । ପରଦିନ ମଧ୍ୟ ଛୁଟିଥାଏ । ତେଣୁ ସ୍ଥିର କଲି ସିନେମା ଯିବା ପାଇଁ ।

ଅପରାହ୍ଣରେ ଖୁବ୍ ଶୋଇଲି ଏବଂ ସଂଧ୍ୟାରେ ଘରୁ ବାହାରିଲି । ଅଳ୍ପପଥ ଅତିକ୍ରମ କରିଛି; ସେ ପଛରୁ ଡାକିଲେ... । ବୁଲି ଲକ୍ଷ୍ୟ କଲି । ସେ ଜୋରରେ ହାତ ହଲାଇ ହଲାଇ ମୋ ଆଡକୁ ମାଡି ଆସୁଥାନ୍ତି । ମୋ ନିକଟରେ ପହଞ୍ଚି ଧକ୍କା ମାରିଲା ପରି ପ୍ରଶ୍ନ କଲେ–

କୁଆଡେ ?

ମୁଁ ବିରକ୍ତ ହେଲି, ତେଣୁ ଉତ୍ତର କିଛି ଦେଲିନାହିଁ । ସେ କିନ୍ତୁ ମୋର ଭାବ ଭଙ୍ଗି ପ୍ରତି ଦୃଷ୍ଟିପାତ ନକରି ହସିଲେ । କହିଲେ–

ଯାହାହେଉ ସଂଧ୍ୟାଟା ନଷ୍ଟ ହେବ ନାହିଁ । ଘରୁ ବାହାରିଲା ସମୟରେ ଭୟ ଲାଗୁଥିଲା, କିନ୍ତୁ ଆପଣଙ୍କୁ ଦେଖି- ହଁ, କହିଲେ ନାହିଁ ଯେ କୁଆଡେ ବାହାରି ଥିଲେ ।

ବାଧ୍ୟ ହେଲି ଉତ୍ତର ଦେବାକୁ, ଏମିତି ଟିକେ ସିନେମା ଉଦ୍ଦେଶ୍ୟରେ... ।

ସେ ଘଡିକୁ ଲକ୍ଷ୍ୟ କଲେ ଏବଂ ଉଚ୍ଚସ୍ୱରରେ ହସିଲେ । ମୁଁ ଖୁବ୍ ବିରକ୍ତ ହୋଇ ଉଠିଲି । ଏପରି ହସର ମାନେ ?

ଥରେ ଘଡିକୁ ଲକ୍ଷ୍ୟ କରନ୍ତୁ ତ । ସାଢେ ଛଅ । ସିନେମାହଲ ମାଇଲିଏ ବାଟ । ଫାଷ୍ଟ ସୋ ଦେଖି ପାରିବେ ?

ପ୍ରକୃତରେ ତ । ହସିଲି । ଥରେ ଥରେ ମନୁଷ୍ୟ ଅପ୍ରସ୍ତୁତ ହୋଇ ପଡିଲେ ମଧ୍ୟ ହସେ ।

''ବରଂ ସେକେଣ୍ଡ ସୋ ପ୍ରୋଗ୍ରାମ କରନ୍ତୁ । ଏକସଙ୍ଗେ ଯିବା ।'' ସେ କହିଲେ ।

ମୁଁ ହଁ ଭରିଲି । ସେ ପକେଟ୍‌ରୁ ସିଗାରେଟ ପ୍ୟାକେଟ ବାହାର କଲେ । ମୋତେ ଖଣ୍ଡେ ସିଗାରେଟ ଦେଇ ନିଜେ ଖଣ୍ଡେ ଓଠରେ ଲଗାଇଲେ ଏବଂ ଲାଇଟର ଦ୍ୱାରା ଅଗ୍ନି ସଂଯୋଗ କରି କହିଲେ ।

''ଏମିତି କେତେ ସମୟ ଠିଆ ହେବ । ଚାଲନ୍ତୁ ବୁଲି ଆସିବା ।''

ତା'ପରେ ଆମ୍ଭେ ଚାଲିବା ଆରମ୍ଭ କଲୁ ।

ସଂଧ୍ୟା ଅତର୍କିତ ଭାବେ ଆସି ନଥିବାରୁ, ସହରର ପ୍ରତ୍ୟେକ, ନାନାପ୍ରକାରର ସାଜସଜ୍ଜା ସହ ତାକୁ ଅଭ୍ୟର୍ଥନା ଜଣାଇଥିଲେ । ସନ୍ଧ୍ୟା ଚାଲିଗଲାଣି, କିନ୍ତୁ କିଛିକ୍ଷଣ ପୂର୍ବେ ସେ ସେହିପଥ ଦେଇ ଅତିକ୍ରମ କରିଥିବାର ସୂଚନା ଏ ଯାଏଁ ରହିଛି ।

ଆମେ ଦୁହେଁ ନୀରବ ଥିଲୁ । ମୁଁ ପଥକଡର ସୁସଜ୍ଜିତ ଦୋକାନ ମାନଙ୍କ ପ୍ରତି ଦୃଷ୍ଟି ରଖିଥାଏ, ତେଣୁ ସେ ମୋ ସହ ପାଦ ମିଳାଇ ଚାଲୁଥିଲା ସମୟରେ ସେ କ'ଣ କହୁଥିଲେ ତାହା ଶୁଣିପାରି ନଥିଲି । ତାପରେ ପୁନର୍ବାର ନୀରବତା ।

ହଠାତ୍ ସେ ମୌନତା ଭାଙ୍ଗିଲେ । ମୁଁ ତାଙ୍କୁ ଲକ୍ଷ୍ୟ କଲି ।

''ବନ ଆତ୍ମହତ୍ୟା କରିଛି, ଜାଣିଛନ୍ତି ?''



''ବନ- ।''

''ଆପଣଙ୍କ କ୍ୱାଟରରୁ ତିନୋଟି କ୍ୱାଟର ଛାଡ଼ି, ଚତୁର୍ଥ କ୍ୱାଟରର ସେ ଯୁବକ- ବନବିହାରୀ ଦାସ ।'

''ଓଁ ।'' ମନର ଧଳାପଟାରେ କିଏ ଯେପରି ସେହି ଯୁବକଟିର ଚିତ୍ର କାଟିଦେଲା । ସବୁଦିନେ ଚୁପଥାଏ । କାହା ସହିତ ଦିନେ ମଧ ତାକୁ କଥା ହେବାର ଦେଖି ନାହିଁ ।

ଦୁନିଆରେ ଏପରି ମୃତ୍ୟୁ ଅପମୃତ୍ୟୁ ହେଉଛି; ପ୍ରତି ମୁହୂର୍ତ୍ତରେ ଯେ ଭାବିବସିଲେ ପ୍ରତ୍ୟେକ ପାଇଁ, ହୁଏତ ସାରା ଜୀବନ ବିତିଯିବ । ତେଣୁ ମୁଁ ବନର ଆତ୍ମହତ୍ୟାକୁ ସାଧାରଣ ଭାବେ ଗ୍ରହଣ କରିନେଲି । ଅଧିକ ଆଗ୍ରହ ପ୍ରଦର୍ଶନ କଲି ନାହିଁ ଆତ୍ମହତ୍ୟାର କାରଣ ଜାଣିବା ପାଇଁ । ତାପରେ ଦୁଖ, ଶୋକ, ଅଭାବ, ଅନାଟନ୍ ଏତେ ବୃଦ୍ଧି ପାଇଛି ଯେ ମନୁଷ୍ୟ ଅବଶେଷରେ ଆତ୍ମହତ । ବ୍ୟତୀତ ଅନ୍ୟ କିଛି ଉପାୟ ପାଇ ପାରୁ ନାହିଁ ।

''ବିଚରାର ବୁଢ଼ୀ ମା । ଏ ଖବର ଜାଣିଲେ–।'' କଥା ପୂରଣ ନକରି ସେ ଦୀର୍ଘଶ୍ୱାସ ତ୍ୟାଗ କଲେ ।

ମୁଁ ପ୍ରଶ୍ନ କଲି– ''କେବେକାର କଥା.. ?''

''ଏହି ଆଜି ସକାଳେତ ଗତକାଲି ରାତିରେ ଦୁହେଁ ଏକ ସଙ୍ଗେ ବୁଲିବୁଲି ଫେରିଥିଲୁ । ସବୁଦିନ ପରି ଗମ୍ଭୀର ଥିଲା । ଏପରି ଏକ ପଦକ୍ଷେପ ଯେ ହେବ ତା' ମୁଖରୁ କିଛି ଜଣା ପଡୁନଥିଲା । ଆଜି ତାର ତା' ନିଜ ମା' ନିକଟକୁ ଯିବାର ଥିଲା । ସକାଳେ ପୋଲିସ ଆସିବାରୁ ଜାଣିଲି ଯେ ସେ ଗାଁକୁ ନୁହେଁ...ଏକ ଅସରନ୍ତି ଲମ୍ବା ସହରକୁ ଚାଲିଯାଇଛି ।

ତାଙ୍କ ସ୍ୱର ଯେପରି ଥରି ଉଠୁଥିଲା ସେ ଅତୀତରେ ଭାସି ଯାଇଥାନ୍ତି । ଅନ୍ଧାରରେ ମୁଁ ତାଙ୍କୁ ଲକ୍ଷ୍ୟ କଲି । ସେ ସମ୍ମୁଖକୁ ଲକ୍ଷ୍ୟ କରିଥାନ୍ତି । ମୁଁ ତାଙ୍କର ଭାବପ୍ରବଣତାରେ ବାଧା ଦେଲି ନାହିଁ । କିଛି କ୍ଷଣ ପରେ କହିଲି–

''ଯେତେ ହେଲେ ମା' ତ; ନିଜ ପୁଅର ମୃତ୍ୟୁ ଖବର ଶୁଣି କିପରି ଧୈର୍ଯ୍ୟ ଧରି ରହି ପାରିବେ ?''

ସେ ନୀରବରେ ମୁଣ୍ଡ ହଲାଇଲେ । ଆମେ ଧୀରେ ଧୀରେ ଅନ୍ଧାର ଗଳି ପଛରେ ଛାଡ଼ି ରାଜ ପଥରେ ପାଦ ଦେଲୁ । ଆଲୋକରେ ତାକୁ ପୁନର୍ବାର ଲକ୍ଷ୍ୟ କଲି । କିନ୍ତୁ ତାଙ୍କ ମୁଖ ପୂର୍ବପରି ନିର୍ଲିପ୍ତ ଥାଏ । ସନ୍ଧ୍ୟାଟା ଏହିପରି ଯେ ବିତିବ, ତାହା ମୁଁ ଭାବି ନଥିଲି । ଏମିତି ନୀରବ ହୋଇ ପାଦକୁ ଥକାଇବାର ମାନେ ମୁଁ ବୁଝିପାରୁ ନଥିଲି । ସେ କିଛି କହୁ ନଥାନ୍ତି । କଥା ଆରମ୍ଭ କରିବା ପାଇଁ ମୁଁ ଚେଷ୍ଟା କଲି–

''ମଣିଷ ଜୀବନରେ କଣ ଅଛି... ପାଣି ଫୋଟକା ତ ।''

ଠିକ କହୁଛନ୍ତି, ଏଇ ଦେଖୁ ନାହାନ୍ତି, ଗତ କାଲି ଠିକ ଏହି ପଥରେ; ଏତିକି ବେଳେ ଆପଣଙ୍କ ପରିବର୍ତ୍ତେ ସେ ଚାଲୁଥିଲା । ମୁଁ ତାର ଅତି ନିକଟରେ ଥିଲି କିନ୍ତୁ

ଆଜି ସେ ନାହିଁ । ତାର ଅସ୍ତିତ୍ୱ ମଧ୍ୟ ନାହିଁ ।''

ଯଦିଚ ଏହି ବିଷୟ ଉପରେ ଆଲୋଚନା କରିବାକୁ ମୁଁ ଇଚ୍ଛୁକ ନଥିଲି, ତଥାପି ନୀରବତାକୁ ଭୟକରି କହିଲି —

''ତାଙ୍କ ସହ ମୁଁ କେବେ କଥାବାର୍ତ୍ତା କରିନି । କିନ୍ତୁ ଲକ୍ଷ୍ୟ କରିଛି, ସର୍ବଦା ଯେପରି ସେ ଚିନ୍ତିତ... । ହସିବା ତ କେବେ ଦେଖିନି ।''

''ହଁ '' ସେ ପକେଟରୁ ସିଗାରେଟ ପ୍ୟାକେଟ ବାହାର କଲେ, ''ମୁଁ କ'ଣ ଭାବେ ଜାଣନ୍ତି...? ତା' ଶରୀରର ଶିରା ପ୍ରଶିରାରେ ରକ୍ତ ସହ ଦୁଃଖ କଷ୍ଟ ଯେପରି ଜନ୍ମରୁ ମିଶି ଯାଇଥିଲା ।'' ସେ ମୋତେ ସିଗାରେଟ ଯାଚିଲେ ।

ମୁଁ ମନା କଲି । ସେ ନିଜେ ସିଗାରେଟରେ ଅଗ୍ନି ସଂଯୋଗ କଲେ ଏବଂ ରହସ୍ୟଭରା ସ୍ୱରରେ କହିଲେ—

''ଜାଣନ୍ତି ବନର ଆତ୍ମହତ୍ୟା କରିବାର କାରଣ ?''

ମୁଁ ମୁଣ୍ଡ ହଲାଇ ମନାକଲି । ମନେ ମନେ ହସିଲି ମଧ୍ୟ । ପ୍ରକୃତରେ ମନୁଷ୍ୟ ପ୍ରତ୍ୟେକ କଥାକୁ ରହସ୍ୟଭରା କଣ୍ଠରେ ନ କହିଲେ ଆନନ୍ଦ ପାଇପାରେ ନାହିଁ ।

ସିଗାରେଟ ଧୂଆଁ ଛାଡ଼ି ରହସ୍ୟ ଉଦ୍‌ଘାଟନ କଲେ—

ଅନୁମାନ କରି ପାରିବେ ନାହିଁ ତାହା ହସ କି କାନ୍ଦ ।''

ବେୟରା ଆସିଲା । ସେ କଥା ବନ୍ଦ କଲେ । ଦୁହେଁ ନୀରବରେ ଖାଇଲୁ । ବିଲ ପେମେଣ୍ଟ ମଧ୍ୟ ସେ କଲେ । ମୁଁ ଅନେକ ଜୋର ଦେଲି । କିନ୍ତୁ ସେ ମାନିଲେ ନାହିଁ । 'ଆମ ବନ୍ଧୁତାର ପ୍ରଥମ ଦିନରେ ମୋତେ ହିଁ ପେମେଣ୍ଟ କରିବାକୁ ଦିଅନ୍ତି' କହି ସେ ପେମେଣ୍ଟ କଲେ । ତାପରେ ଆମେ ହୋଟେଲ ଛାଡ଼ି ରାଜପଥରେ ପାଦ ଦେଲା ବେଳକୁ ସାଢେ ଆଠ ।

ପାଦକୁ ସିନେମାହଲ ଉଦ୍ଦେଶ୍ୟରେ ପକାଇ ସେ ଆରମ୍ଭ କଲେ—

ହଠାତ୍ ଦିନେ ଆସିଲା ମୋ ନିକଟରେ ବସି କହିଲା, ଜାଣୁ ମୋର ବିବାହ ହେଉଛି । ମୁଁ ହସିଲି । କହିଲି ଭଲ ହେଲା ଛନ୍ଦହରା ଜୀବନରେ ଛନ୍ଦର ଲହଡ଼ି ଆସିଯିବ । ସେ ଚିତ୍କାର କଲା — ନା... ଏ ବିବାହ ହୋଇ ପାରେ ନା । ମୁଁ ବିବାହ କରି ପାରିବି ନାହଁ । ତା ପରେ ଆପେ ଆପେ ମୋ କାନ୍ଧର ମୁଣ୍ଡ ରଖି କୋହକୁ ଛୁପାଇ, ଯେଉଁ ଦୁଃଖ ଏତେ ଦିନ ଯାଏଁ ଭିତରୁ ଭିତରୁ ଖାଇ ଚାଲିଥିଲା, ପ୍ରକାଶ କରିଦେଲା । ତା ପ୍ରଥମ ପ୍ରେମର ଅସମାପ୍ତ , ଅପୂର୍ଣ୍ଣ କାହାଣୀ । କାହାଣୀରେ ନୂତନତ୍ୱ କିଛି ନଥିଲେ ମଧ୍ୟ, ବ୍ୟକ୍ତିର ବ୍ୟକ୍ତିତ୍ୱରେ ନୂତନତା ଥିଲା । ପ୍ରେମକୁ ଏକ ସତ୍ୟ ମାନି ନେଇଥିବା ନିରୀହ ଯୁବକ ବନ ପ୍ରକୃତରେ ଭାଙ୍ଗି ପଡିଥିଲା । ଅନେକ ସାନ୍ତ୍ୱନା ଦେଲି, ବୁଝାଇଲି ଅତୀତକୁ ଭୁଲି ବର୍ତ୍ତମାନକୁ ଚିହ୍ନ; ଭବିଷ୍ୟତ ପାଇଁ ଚିନ୍ତା କରିବାକୁ ଉପଦେଶ ଦେଲି । ସେ ବୁଝିଲା କି ନାହିଁ ଜାଣିନି, କାରଣ ଦୁଇଦିନ ପରେ ହଠାତ୍ ଅଫିସରୁ ଛୁଟି ନେଇ କେଉଁ ଆଡେ ଚାଲିଗଲା ।

ମୋ ଚତୁର୍ଦ୍ଦିଗରେ ସହରର କୋଳାହଳ ଥିଲେ ମଧ୍ୟ, ମୁଁ ଯେପରି ଏକା ଏବଂ ମୋ ଚତୁର୍ଦ୍ଦିଗରେ ବନର ଆତ୍ମା ଓ ମୋ ନୂତନ ବନ୍ଧୁଙ୍କ ସ୍ୱର ଯେପରି ମିଶି ଯାଇ ନିଜକୁ ଏକ ଜାଲପରି ବିଛେଇ ଦେଇଛି । ମୁଁ ଧୀରେ ଧୀରେ ବାନ୍ଧି ହୋଇ ଯାଉଛି । ନିସ୍ତାର ପାଇବାକୁ ଉପାୟ ନାହିଁ ... ।

''ତା'ପରେ ?'' ମୁଁ ପ୍ରଶ୍ନ କରୁଛି ।

''ତାପରେ କିଛି ଦିନ ପରେ ତା ନିକଟରୁ ଚିଠି ପାଇଲି । ଲେଖିଥାଏ ବିବାହ ଠିକ୍ ହୋଇଯାଇଛି । ମୁଁ ଖୁସି ହେଲି । କିନ୍ତୁ ମୁଁ ଚିଠି ପାଇବାର ଚାରିଦିନ ପରେ ସେ ଫେରି ଆସିଲା । ମୋ ପ୍ରଶ୍ନର ଉତ୍ତରରେ କହିଲା, ନା ବିବାହ ହେଲା ନାହିଁ । ମୁଁ ବିବାହଯୋଗ୍ୟ ନୁହେଁ । ଅନେକ ଚେଷ୍ଟା କଲି ତା ମନରେ ଛପି ରହିଥିବା ରହସ୍ୟକୁ କାଢି ଆଣି ତାକୁ ଟିକେ ଆରାମ ଦେବା ପାଇଁ । କିନ୍ତୁ ପାରିଲି ନାହିଁ । ଏହା ପରଠାରୁ ସଦା ସର୍ବଦା ନିଜ ରୁମରେ ବସି ପିଏ । ଏତେ ପିଏ ଯେ ମତେ ଭୟ ଲାଗେ । ମୁଁ କୁହେ ଏତେ ପିଇନା, ମରିଯିବୁ । କହେ – 'ଭଲ ହୁଅନ୍ତା ।' ଦିନେ ମନକୁ ମନ କହିଲା, 'କହି ପାରିବୁ, ସ୍ୱାମୀର ମୁଖ ନ ଦେଖି ତାର ସ୍ପର୍ଶ ନପାଇ, ବିଧବା ହୋଇ ଥିବା ସ୍ତ୍ରୀର, ବାହାଘର ସାତମାସ ପରେ ଯେଉଁ ସନ୍ତାନ ହୁଏ ତାକୁ ସମାଜ କଣ କୁହେ ?'

ମୁଁ କହିଲି 'ଅବୈଧ' ।

ହସି ଉଠିଲା ସେ ଖୁବ୍ ଯୋରରେ । କହିଲା 'ଏବଂ ସେପରି ସନ୍ତାନ ଯେତେ ବେଳେ ଯୁବକ ହୁଅନ୍ତି ସେତେ ବେଳେ ସେମାନଙ୍କ ସହ କୌଣସି ଭଦ୍ରବ୍ୟକ୍ତି ନିଜ କନ୍ୟାକୁ ବିବାହ ଦେବାପାଇଁ ରାଜି ହୁଅନ୍ତି ନାହିଁ ।- ବାସ୍ ଏହି କାରଣ ପାଇଁ ମୁଁ ଅବିବାହିତ ।'

ମୁଁ ନୀରବ ରହି ତାର ପ୍ରଳାପ ଶୁଣି ଯାଉଥିଲି ଏବଂ ସବୁ ବୁଝି ପାରିଥିଲି ।

ସିନେମାହଲ ନିକଟରେ ଆମେ ପହଞ୍ଚି ସାରିଥିଲୁ । ସିନେମାର ବଡ ପୋଷ୍ଟରରେ ମୋତେ ଲାଗିଲା, ଯେପରି ବନ ଠିଆ ହୋଇଛି; ନିକଟରେ ତା ବୁଢ଼ୀ ମା ଓ ଦୂରରେ ଅନେକ ଜନଗହଳି, ଯେଉଁମାନେ ସମାଜ ରୂପେ ଖ୍ୟାତ । ସେମାନେ ଅଙ୍ଗୁଳି ଉଠାଇ ଯେପରି କହୁଛନ୍ତି; ଏଇ ଦେଖ ଅବୈଧ ସନ୍ତାନ ଫିଲିମ୍‌ର ନାଁ ବଡ ବଡ ଅକ୍ଷରରେ ଲେଖା ହୋଇଛି, କିନ୍ତୁ ମୋତେ ଲାଗୁଛି, ଯେପରି ତାହା ଫିଲିମ୍‌ର ନାଁ ନୁହେଁ, ସେଠାରେ ଲେଖା ହୋଇଛି... 'ଅବୈଧ' । ମୋ କାନ ନିକଟରେ ଯେପରି ଅନେକ ଲୋକ ଚିତ୍କାର କରୁଛନ୍ତି ଅବୈଧ, ଅବୈଧ–

ମୁଁ ବ୍ୟସ୍ତ ହୋଇ ତାକୁ ଲକ୍ଷ୍ୟ କରୁଛି । ସେ ଶୂନ୍ୟ ଚକ୍ଷୁରେ କାଉଣ୍ଟର ନିକଟକୁ ଜନଗହଳିକୁ ଲକ୍ଷ୍ୟ କରିଥାନ୍ତି । ଦୀର୍ଘ ନିଶ୍ୱାସ ଛାଡି କହିଲେ–

''ଏଇଟା ତିନିଦିନ ତଳର କଥା— । ମୁଁ ଯଦି ଟିକିଏ ଜାଣି ପାରିଥାନ୍ତି ।''

ତାଙ୍କ କଣ୍ଠରେ ଅତୀତର ବନ୍ଧୁଙ୍କ ପାଇଁ ଅବଶୋଷ; ସତେ ଯେପରି ଜାଣି ପାରିଥିଲେ, ସମୟର ଚକ୍ରକୁ ଅଟକେଇ ଦେଇଥାନ୍ତେ । ବନ ମରିଗଲା ଭଲ ହେଲା, ମନୁଷ୍ୟ ହୋଇ ମନୁଷ୍ୟ ନିକଟରୁ ହତାଦର ପାଇବା ଅପେକ୍ଷା, ଯାହା ସେ କରିଛି; ଭଲ କରିଛି । ସେ ପ୍ରଶଂସାର ପାତ୍ର— । କିନ୍ତୁ ଆମେ ଭୀରୁ— । ଭୀରୁ ମାନେ ମୃତ୍ୟୁକୁ ଭୟ କରନ୍ତି— ।

''ଗତ ରାତିରେ କେତେ କଥା କହୁଥିଲା, ଯଦି ନିଜର ନିଷ୍ପତ୍ତି କଥା ଭୁଲ ବଶତଃ ବାହାରି ପଡିଥାନ୍ତା— ।''

''ବନ ଜାଣି ପାରିଥିଲା, ଦୁନିଆ ଯାହାକୁ ତାର ବାପା କହୁଛି; ସେ ତାର ପିତା ନୁହନ୍ତି ।''

''ମାନେ... ।'' ମୁଁ ଚମକି ପଡିଲି ।

''ବନ ତା ମା'ର ଅବୈଧ ସନ୍ତାନ ।''

''କିନ୍ତୁ... ।'' ମୁଁ କଥାଟାକୁ ଏତେ ସହଜରେ ଗ୍ରହଣ କରିନେଇ ପାରିଲି ନାହିଁ ।

ଏବଂ ମୋତେ ଲାଗିଲା, ଯେପରି ଆମେ ସମସ୍ତେ ଆମ ବାପ, ମାଙ୍କର ଅବୈଧ ସନ୍ତାନ । ଏକା ବନର ନୁହେଁ, ଆମ ସମସ୍ତଙ୍କର ଆତ୍ମହତ୍ୟା କରିବା ଉଚିତ । ବନ ସହ ପ୍ରଥମେ ମୋର ଦେଖା ହୋଇଥିଲା ଟ୍ରେନରେ । ସେ ଯେପରି ଖୁବ୍ ଦୂରରୁ କହୁଥାନ୍ତି ବର୍ଷ ବର୍ଷ ତଳର ଅତୀତ ମଧ୍ୟରେ ପଶି ସ୍ମୃତିକୁ ଅଣ୍ଡାଳୁ ଥାନ୍ତି ଅତି ମନୋଯୋଗ ସହକାରେ... ।

ସେତେବେଳେ ସେ ଏପରି ଗମ୍ଭୀର ନଥିଲା ଟ୍ରେନରେ । ସେ ମୋ ପରି ମନଖୋଲି ହସୁଥିଲା, ଚିତ୍କାର କରୁଥିଲା ।

ମୋତେ ଏକ ଆଗ୍ରହ ଧୀରେ ଧୀରେ ଟାଣିଧରିଲା ଯେଉଁ ବିଷୟ ଆଲୋଚନା କରିବା ପାଇଁ ମୁଁ ପ୍ରସ୍ତୁତ ନଥିଲି ସେ ବିଷୟରେ ଅଧିକ ଜାଣିବା ପାଇଁ ଆଗ୍ରହ ଜାତ ହେଲା । ମୁଁ ମନ୍ତ୍ରମୁଗ୍ଧ ପରି ପ୍ରଶ୍ନ କଲି—

''ତା' ପରେ... ।''

'' ତା'ପରେ... ଆମେ ଦୁହେଁ ବନ୍ଧୁ ହୋଇଗଲୁ । କଲେଜ ଜୀବନ ବିଷୟରେ ମୋ ସହ ଯୁକ୍ତି କରେ । ତାଜା ହୋଇ କଲେଜରୁ ଫେରିଥାଏ କିନା ।'' ହଠାତ୍ ସେ କଥାବନ୍ଦ କରି, ସିଗାରେଟ୍‌ଟିକୁ ଫୋପାଡି ଦେଲେ । ମୋତେ ଲକ୍ଷ୍ୟ କରି ପ୍ରଶ୍ନ କଲେ—
''କେତେଟା ବାଜିଲା ?''

ମୁଁ ଘଡ଼ି ଦେଖି ଉତ୍ତର ଦେଲି— ''ସାଢେ ସାତ''

ଅତର୍କିତ ଭାବେ କଥା ବନ୍ଦ କରି ଦେବାରୁ, ମୋତେ ବ୍ୟସ୍ତ ଲାଗୁଥାଏ, ତା ପରେ କଅଣ ହେଲା, ଜାଣିବା ପାଇଁ, କିନ୍ତୁ ପଚାରି ପାରୁ ନ ଥାଏ ।

ସେ କହିଲେ – ''ଏଥର ଏଇ ନିକଟରେ କେଉଁଠି ଖାଇନେବା ...କ'ଣ କହୁଛନ୍ତି ।''

ସମ୍ମତି ପ୍ରଦାନ କଲି; ଏବଂ ଦୁହେଁ ନିକଟସ୍ଥ ଏକ ହୋଟେଲ ମଧ୍ୟରେ ପ୍ରବେଶ କଲୁ, ସେ ମୋତେ ପ୍ରଶ୍ନ କଲେ–

''ଆପଣ ଡ୍ରିଙ୍କ କରନ୍ତି ?''

''ନାଁ'' ମୁ ମନାକଲି

''ତେବେ ଆଜି ଟେଷ୍ଟ କରନ୍ତୁ । ବିୟର ନିଅନ୍ତୁ... ଲାଇଟ ଡ୍ରିଙ୍କ''

ମୁଁ କିଛି କହିଲି ନାହିଁ । ସେ ନିଜ ପାଇଁ ରମ୍ ଓ ମୋ ପାଇଁ ବିୟର ଅର୍ଡର ଦେଲେ । ବେୟରାର ପ୍ରସ୍ଥାନ ପରେ ମୁଁ ନିଜକୁ ଆୟତ୍ତ କରି ନ ପାରି ପ୍ରଶ୍ନ କଲି–

''ତା'ପରେ ।''

''ତା'ପରେ ଗତ ଦୁଇ ବର୍ଷ, ଆମ ମଧ୍ୟରେ ପତ୍ର ବ୍ୟବହାର ଚାଲିଥିଲା; ସେ ଅନ୍ୟ ସହରରେ ପୋଷ୍ଟିଙ୍ଗ ପାଇଥାଏ । ପତ୍ରରେ ସେ ଅନେକ ବିଷୟ ଲେଖେ ତା' ସହର ବିଷୟରେ, ଚତୁର୍ଦ୍ଦିଗର ବାତାବରଣ ବିଷୟରେ, ନିଜ ମା' ବିଷୟରେ, ବିତିଲା ଅତୀତ ବିଷୟରେ ।''

ବେୟରାକୁ ଆସୁଥିବାର ଦେଖି, ସେ ନୀରବ ହେଲେ । ବେୟରା ଆମ ଟେବୁଲ ଉପରେ ଏକ ପ୍ରକାରର ପାତ୍ରରେ ଭିନ୍ନ ଭିନ୍ନ ରଙ୍ଗର ଆଲକୋହଲ ରଖିଦେଲା । ଆମେ ଦୁହେଁ ସିଗାରେଟ ଲଗାଇଲୁ ଏବଂ ପାତ୍ର ଟେକି ଚିୟର୍ସ କହିଲୁ । ସେ କହିଲେ-

''ପ୍ରଥମେ ପିଇବା, ବନର ଆତ୍ମାର ସଦ୍‌ଗତି ପାଇଁ ଏବଂ ଦ୍ୱିତୀୟରେ ଆଜିର ଆମର ଏ ବଂଧୁତା ପାଇଁ ।''

ପାତ୍ର ଓଠରେ ଚୁମ୍ବନ ଦେଇ ଫେରିଲା । ସେ ବାଁହାତ ପାପୁଲିରେ ଓଦା ଓଠ ପୋଛି କହିଲେ..

ଦୁଇବର୍ଷ ବିତିଗଲା । ତା'ପରେ ହଠାତ୍ ଚାରିମାସ ତଳେ, କୌଣସି ପ୍ରକାର ସମ୍ବାଦ ନଦେଇ ଦିନେ ରାତିରେ ମୋ ନିକଟରେ ପହଞ୍ଚିଲା କହିଲା, ଯେ ତାର ଟ୍ରାନସଫର ହୋଇ ଯାଇଛି । ମୁଁ ସେହି ଦିନ ଅନୁଭବ କଲି; ତାର ପିଇଥିବାର । ସେ ଖୁବ ଡ୍ରିଙ୍କ କରିଥିଲା ସେଦିନ ।''

''ଏତେ ପରିବର୍ତ୍ତନ... । ପ୍ରକୃତରେ ଆଶ୍ଚର୍ଯ୍ୟ... ।''

''ଆଶ୍ଚର୍ଯ୍ୟ ମୁଁ ପରଦିନ ହୋଇଥିଲି । କାରଣ ସକାଳେ ମୁଁ ଅନୁଭବ କଲି, ଯେପରି ସେ ଦୁଇବର୍ଷ ମଧ୍ୟରେ ପୂରା ବଦଳି ଯାଇଛି । ହସ ନାହିଁ, ଆନନ୍ଦ ନାହିଁ, ଆଜି ତଳେ କଲଗାର । ଅନେକ ପ୍ରଶ୍ନ କଲି, କିନ୍ତୁ କୌଣସିଟିର ଉତ୍ତର ପାଇଲିନି । କିଛି ହୋଇ ନାହିଁ ମୋର, କହି ହସିବାକୁ ଚେଷ୍ଟା କରେ କିନ୍ତୁ ମୋତେ ଲକ୍ଷ୍ୟ ଲାଗେ, ଯେପରି ଏକ କଙ୍କାଳ ମୁଖ ମେଲା କରିଛି । କଙ୍କାଳର ମେଲାମୁଖ ଦେଖି କେହି ସେ ନିଜ କୋହକୁ ଲୁଚାଇବା ଚେଷ୍ଟା କଲେ । ମୁଁ କହିଲି–

''ଛାଡନ୍ତୁ- ଗତ କଥା ଭାବି ଲାଭ— ? ସିଏ ମୁକ୍ତି ପାଇଗଲେ ।''

ସେ ପ୍ରତିବାଦ କଲେ—

''ବନ ସିନା ମୁକ୍ତି ପାଇଗଲା । କିନ୍ତୁ ତାର ବୁଢ଼ୀ ମା... । ସେ କ'ଣ କରିବେ ? କିଏ ଅଛି ତାଙ୍କର ? କିପରି ସେ ବଞ୍ଚିବେ ? କାହା ପାଇଁ ବଞ୍ଚିବେ ? ସିଏ ତ ଆଉ ବନ ପାଇଁ କେବେ ଅନ୍ୟାୟ କରି ନାହାନ୍ତି । ପୁରୁଷ ସର୍ବଦା ନାରୀ ପ୍ରତି ଅନ୍ୟାୟ କରି ଆସିଛି । ସମାଜ କେବେ ନାରୀକୁ ତାର ଉପଯୁକ୍ତ ସ୍ଥାନ ଦେଇ ପାରି ନାହିଁ, ନାରୀର ମର୍ଯାଦା କରି ଶିଖି ନାହିଁ । ସମସ୍ତେ ତାଙ୍କୁ କଷ୍ଟ ଦେଲେ, କଷ୍ଟ ସହିସହି, ଅବୈଧ ସନ୍ତାନକୁ ଛାତିରେ ଲଗାଇ, ନିଜ ସ୍ୱାମୀ ଗାଁ ଛାଡି, ଅନ୍ୟ ଗାଁରେ ପରିଶ୍ରମ କରି ପୁଅକୁ ପାଠ ପଢ଼େଇ ମଣିଷ କଲେ । ମନରେ ହୁଏତ ଭାବିଥିଲେ, ଦିନେ ଏଇ ପୁଅ ତାଙ୍କୁ ସୁଖ ଦେବ... କିନ୍ତୁ... ।''

ମୁଁ ନୀରବ ହେଲି । ଯୁକ୍ତିରେ ହାରିଗଲି । ପ୍ରକୃତରେ ବୃଦ୍ଧା ମା' ତା'ର କିପରି ବଞ୍ଚିବେ ? ସେ ମଧ୍ୟ ଯଦି ଏହି ପରି ମରି ଯାଇ ପାରନ୍ତେ; ତେବେ ହୁଏତ- ।

ସିନେମାରେ ତୃତୀୟ ଘଣ୍ଟି ବାଜିଲା ଯେପରି ମୃତ୍ୟୁ ନିଜର ଆଗମନର ଚିହ୍ନ ସ୍ୱରୂପ ଘଣ୍ଟ ବଜାଇ, ବନକୁ ବୁଢ଼ୀମାଙ୍କୁ ନେବାକୁ ଆସୁଛି । ଶାନ୍ତି ଲାଗିଲା— ଯାହାହେଉ ମୃତ୍ୟୁ ମଧ୍ୟ ଦୟାଳୁ— ।

''ଟିକେଟ ଆଣୁଛି ।'' ତାଙ୍କ ସ୍ୱର ଶୁଭିଲା ।

ମୋତେ ଲାଗିଲା, ଯେପରି ସେ ମୋତେ ମୃତ୍ୟୁର ଅନ୍ଧକାର ମଧ୍ୟକୁ ଟାଣି ନେବାକୁ ଚାହୁଁଛନ୍ତି ।

''ନାଁ —ଇଚ୍ଛା ହେଉନି । ଚାଲନ୍ତୁ ଫେରିଯିବା ।''

ସେ କିଛି କ୍ଷଣ ମୋତେ ଚାହିଁଲେ । ତାପରେ ହସିଲେ ଏବଂ କହିଲେ—

''ଏତେ ଭାବପ୍ରବଣତା ଠିକ ନୁହେଁ ।''

ମୋତେ ଲାଗିଲା; ସେ ଯେପରି ମୋତେ କହୁଛନ୍ତି; ''ବନ ପରେ ଏଥର ତୁମର ପାଳି ।''

ସିନେମା ବୋଧହୁଏ ଆରମ୍ଭ ହୋଇ ଯିବଣି । କିନ୍ତୁ ଆମେ ଧୀର ପଦକ୍ଷେପରେ ଯେଉଁଠାରୁ ବାହାରିଥିଲୁ ସେହିଠାକୁ ଫେରୁଛୁ ।

□ *କଳ୍ପଲୋକ : ସାମୟିକ ସାହିତ୍ୟ ସଂକଳନ, ୧୯୭୨*



# ଅନ୍ୱେଷଣ : ମାନବିକତାର

ଗାଁ ଅନେକ ବେଳୁ ଲୁଚିଗଲାଣି, ପଛକୁ ବୁଲି ଲକ୍ଷ୍ୟ କଲେ ମଧ୍ୟ କେବଳ ଶୂନ୍ୟତା । ଦୂର ଦିଗବଳୟ ଯାହା ଆକାଶ ଓ ଧରାର ଏକ ଭ୍ରମମିଳନ ସ୍ଥଳ ବ୍ୟତୀତ ଅନ୍ୟକିଛି ଦେଖାଯାଉନାହିଁ, ଗାଁ ଉପରର ଆକାଶର ଲାଲ ରଂଗ ମଧ୍ୟ ବଦଳି ଗଲାଣି । ପବନ ଆଉ ଏତେ ବେଗରେ ବହୁନି । ସତେ ଯେପରି ଦୁଃଖ ସମୟରେ, ପବନ ଜୋରରେ ବହି ମଣିଷ ସହ ଦାଉ ସାଧୁଥିଲା । ସିଧା ସମତଳ ରାସ୍ତା ପଛରେ ରହିଲଣି, ଏବେ ଖାଲି ଉଠାଣି, ଠିକ୍ ଯେପରି ଭବିଷ୍ୟତ ଦୁର୍ଗମ ପଛରେ ଏକ ଦୁଃଖାନ୍ତ କାହାଣୀ ନିଜକୁ ଅତୀତ ବୋଲି ପରିଚୟ ଦେଲାଣି । ଧୀରେ ଧୀରେ ଗଛପତ୍ର ଘନ ହୋଇ ଆସିଲାଣି । ଆଗରେ ବୋଧହୁଏ ଜଙ୍ଗଲ ।

ସେ ଟିକେ ଅଟକି ଗଲା । ଅନେକ ବେଳୁ ଚାଲିଛି । ରାତ୍ରିର ଶେଷ ପ୍ରହରରୁତ ଚାଲିବା ଆରମ୍ଭ କରିଥିଲା, ଏବେତ ଦିନ ବିତିବାକୁ ବସିଲାଣି । ସେ ଉପରକୁ ଲକ୍ଷ୍ୟ କଲେ । ବାମ ଆଖି ଉପରର କ୍ଷତ ବିନ୍ଧି ଉଠିଲା, ଆକାଶରେ ଗୋଟିଏ ଦୁଇଟି ତାରା । ନୀଳ ଚାଦରରେ କଣା ପରି ଦେଖାଯାଉଛନ୍ତି । ସେ ନିଜ ବାଁ ହାତର ପ୍ରଥମ ଆଙ୍ଗୁଳି ବାଁ ଆଖି ଉପରର କ୍ଷତ ଉପରେ ଥରେ ବୁଲାଇ ଆଣିଲା । ଫୁଲିଯାଇଛି । ରକ୍ତ ବୋହି ବୋଧହୁଏ ମୁହଁର ରଂଗଟା ପରିବର୍ତ୍ତନ ହୋଇଯାଇଥିବ । ମୁଣ୍ଡର ପଛପଟେ ମଧ୍ୟ ହଠାତ୍ ସେ ଅନୁଭବ କଲା ଆଘାତର ଯନ୍ତ୍ରଣା । ଏତେ ସମୟ ପର୍ଯ୍ୟନ୍ତ ସେ କିଛି ନଭାବି କେବଳ ଆଗକୁ ହିଁ ବଢି ଚାଲିଥିଲା, ମନରେ ଗୋଟିଏ ମାତ୍ର ଭାବନା, କେବଳ ଚାଲିବା, ବର୍ତ୍ତମାନ ଅଟକିଗଲା ପରେ ତାକୁ ଅନୁଭବ ହେଲା, ଯେପରି ସେ ଯୁଗଯୁଗ ଧରି ଚାଲି ଆସିଛି, କୌଣସି ଲକ୍ଷ୍ୟରେ ନପହଞ୍ଚି ଏକ ଲକ୍ଷ୍ୟହରା, ନାଉରୀ ବିହୀନ ନୌକା ପରି ଜଳ ମଧ୍ୟରେ ଭାସି ଚାଲିଛି ।

ଦିନ ବିତିଗଲାଣି, ରାତ୍ରି କିଛି ସମୟ ପରେ ସଂଧ୍ୟାକୁ ତଡି ଦେବ । ସେ ଚତୁର୍ଦ୍ଦିଗକୁ ଲକ୍ଷ୍ୟ କଲା, ରାତ୍ରି ହେବା ପୂର୍ବରୁ ରାତ୍ରି ବିତାଇବା ପାଇଁ ଏକ ଆଶ୍ରୟସ୍ଥଳର ପ୍ରୟୋଜନ ଆଶାରେ, କିନ୍ତୁ ଏକ ବୃତ୍ତର ପରିଧିରେ, ତା ଦୃଷ୍ଟି ସୀମାବଦ୍ଧ ହୋଇ ପୁନର୍ବାର ଆରମ୍ଭ ହୋଇଥିବା ବିନ୍ଦୁରେ [illegible] । ଦୀର୍ଘ ନିଶ୍ୱାସ ତ୍ୟାଗ କରି ସେ ନିଜ କମରରେ

ହାତ ଦେଇ ସିଧା ଠିଆ ହେଲା, ପିଠିରେ ବନ୍ଧା ହୋଇଥିବା ବୋଝ ତାକୁ ଏଯାଏଁ ବ୍ୟସ୍ତ କରିପାରି ନଥିଲା । ବର୍ତ୍ତମାନ କିନ୍ତୁ ସେ ବ୍ୟସ୍ତ, ବେକ ବୁଲାଇ ପଛକୁ ଲକ୍ଷ୍ୟ କଲା । ଡାହାଣ କାନ୍ଧ ଉପରେ ଏକ ଛୋଟ ମୁଣ୍ଡ । ମୁଣ୍ଡର ପଟିଟି ନିଶ୍ଚୟ ଧଳା ରଂଗର । କିନ୍ତୁ ଧଳା ରଂଗ ବର୍ତ୍ତମାନ ଲାଲ, ବାଁ ହାତରେ ସେ ନିଜ କାନ୍ଧ ଉପରେ ରଖା ହୋଇଥିବା ମୁଣ୍ଡ ପଟିକୁ ଟିକେ ସାଉଁଳେଇ ଦେଲା ।

'ଆଃ... ପାଣି !' ଏକ ଅନୁରୋଧ

ସେ ବସି ପଡିଲା, ଆଣ୍ଠୁଟା କଟକଟ କରି ଉଠିଲା, ଡାହାଣ କାନ୍ଧ ଉପରେ ଓ ବାଁ କାଖ ଦେଇ ଛାତି ଉପରେ ବାନ୍ଧିଥିବା ଗଣ୍ଠିକୁ ଖୋଲି ଦେଇ, ପଛର ବୋଝକୁ ଧୀର ହାତରେ ଛିଣ୍ଡା ଚାଦର ଉପରେ ଶୁଆଇ ଦେଲା ଏବଂ ଅପଲକ ନୟନରେ ଲକ୍ଷ୍ୟ କରି ରହିଲା ନିଜ ରକ୍ତକୁ ।

ସାତ ବର୍ଷର ଏକ ଝିଅ । ଯୁବକର ସାନ ଭଉଣୀ । ତାରି ପାଇଁତ କେବଳ ଜୀବନ ପ୍ରତି ଏ ମମତା, ମୃତ୍ୟୁ ନିକଟରୁ ଏ ପଳାୟନ । ନଚେତ ଦେଖିଥାନ୍ତା... ମା' ମରି ଯାଇଛି ଆଗରୁ । କିନ୍ତୁ ନିଜ ଜୀବିତ ବାପାକୁ ନିଆଁ କୁଣ୍ଡରେ ଜଳି ମରିବାକୁ କେବେ ଦେଇ ନ ଥାନ୍ତା, ଯୁବକ ରକ୍ତ କଅଣ ଏତେ ଥଣ୍ଡା, ନା.... । କେବଳ ବାପର ଶେଷ ଅନୁରୋଧ ଓ ନିଜର ସ୍ନେହ ମମତାର ପିତୁଳୀକୁ ରକ୍ଷା କରିବା ପାଇଁ ତାର ଏ ଯାତ୍ରା । କେତେ ବିନ୍ଦୁ ଅଶ୍ରୁ ଝରିପଡିଲା ମଇଳା ଫ୍ରକ୍ ଉପରେ । ଜୀବନଟା କଅଣ ପ୍ରକୃତରେ ଏକ ଯାତ୍ରା ?

କାଲି ଏଇ କିଶୋରୀ ତାର ସମ୍ମୁଖରେ ନାଚି କୁଦି ଡେଉଁଥିଲା, ହସୁଥିଲା, କ୍ଷେତରୁ କାମସାରି ଫେରିଲେ ତା' ପିଠିରେ ଚଢି ତାକୁ ବ୍ୟତିବ୍ୟସ୍ତ କରି ପକାଉଥିଲା । ସେ କୃତ୍ରିମ କ୍ରୋଧରେ ଚିତ୍କାର କଲେ, ଭଉଣୀ ତାର ହସି ଉଠୁଥିଲା, କିନ୍ତୁ ଆଜି, ଏଇକ୍ଷଣରେ ସେ ବଂଚିବ କି ମରିବ ତା ମଧ୍ୟ ଠିକ୍ ନାହିଁ ।

ହୁଁ... ଏକ ବ୍ୟଥା ଭରା ଦୀର୍ଘ ନିଶ୍ୱାସ,

'ପାଣି'

ପୁଣିଥରେ ଏକ ତୃଷାର୍ତ୍ତ କଣ୍ଠର ଅନୁରୋଧ ।

ଭାବନା ତା'ର ସତେ ଯେପରି ଧକ୍କା ଖାଇଲା । ଲୁହ ପୋଛି, ନିଜକୁ ସଂଯତ କଲା- ରହ ପାଣି ଆଣୁଛି ।

ଚତୁର୍ଦ୍ଦିଗକୁ ଲକ୍ଷ୍ୟ କଲା । ଅନ୍ଧକାର ସତେ ଯେପରି ସମୁଦ୍ରର ଲହଡି ପରି ମାଡି ଆସି ଧରାରୂପୀ ବେଳାଭୂମିକୁ ଆକ୍ରାନ୍ତ କରି ଦେଲାଣି । ଆକାଶର ନୀଳ ଚାଦର ବର୍ତ୍ତମାନ କଳା ଓ ସେଥିରେ ଅନେକ କଣା, କେହି ଗଣି ପାରି ନାହାଁନ୍ତି । ବର୍ତ୍ତମାନ ଏପରି ଅନ୍ଧକାର ମଧ୍ୟରେ ସେ ପାଣି ଆଣିଦେବ କିପରି ? କିନ୍ତୁ ଖୋଜିବାକୁ ପଡିବ । ଯେପରି ହେଉ ପାଣି ଆଣି ଦେବାକୁ ପଡିବ । ଯା ପାଇଁ ଏତେ କଷ୍ଟ ସହିଛି, ଏବଂ ଆହୁରି ସହିବାକୁ ପଡିବ ତା ପାଇଁ ପାଣି ନିଶ୍ଚୟ ଖୋଜିବାକୁ ପଡିବ । ପୃଥିବୀରୁ

ମାନବତା ଲୋପ ପାଇଗଲା ପରେ ମଧ୍ୟ ସେ ଦୁହେଁ ମାନବତା ଖୋଜି ଖୋଜି ସେହିପରି ଚାଲିଥିବେ ।

ସେ ଉଠି ଠିଆ ହେଲା, ଠିଆ ହେଲା ପରେ ତାକୁ ଅନୁଭବ ହେଲା, ଯେପରି ତା' ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଆଉ ତା' ଅଧିକାରରେ ନାହାନ୍ତି । କେହି ଯାଦୁକର ଯେପରି କାଉଁରୀ କାଠି ଛୁଆଇଁ ତାକୁ ବଶୀଭୂତ କରି ଦେଇଛି । ଷୋହଳ ସତର ଘଣ୍ଟା କିଛି କମ୍ ନୁହେଁ । ଏତେ ଦୀର୍ଘ ସମୟ ଧରି ନଖାଇ ନ ପିଇ କ୍ରମାଗତ ଭାବରେ ଖାଲ, ଡିପ ନ ମାନି, ଅନ୍ୟର ପ୍ରାଣରକ୍ଷା ନିମନ୍ତେ ଚାଲିଲା ପରେ ଯେତେବେଳେ ସେ ଅଟକିଯାଇଛି, ସେତେବେଳେ ତାର ପ୍ରତ୍ୟେକ ଅଙ୍ଗ ଅକାମୀ ?

ବାଁ ହାତ ପାପୁଲିରେ ମୁହଁ ପୋଛି ନେଲା ଏବଂ ଜଙ୍ଗଲ ମଧ୍ୟରେ ଆଗକୁ ବଢିଲା ପାଣି ଆଶାରେ । ଧୀର ପାଦରେ, ସେ ଜଙ୍ଗଲର ଘଞ୍ଚ ବୃକ୍ଷ ଗହଳିରେ, ଅନ୍ଧକାରର ଘନକଳା ରଂଗ ମଧ୍ୟରେ ସେ ଲୁଚିଗଲା ।

ଦକ୍ଷିଣ ଭିଏତ୍‌ନାମର ଏକ ଛୋଟ ଗାଁ । ଗାଁର ଅଧିବାସୀ ଖୁବ୍ କମ୍ । ପ୍ରାୟ ପଚାଶ, ଷାଠିଏ । ସେମାନେ ପ୍ରତ୍ୟେକ କୃଷକ । କ୍ଷେତରେ କାମ କଲା ପରେ ସନ୍ଧ୍ୟାରେ ପ୍ରତ୍ୟେକ ଦେଶ ମହାଦେଶର କୃଷକ ପରି ନିଜ ନିଜ ପରିବାର ସହିତ ଦୁଇପଦ ମିଠା କଥା କହି ନିଜର ସମସ୍ତ କ୍ଳାନ୍ତିକୁ ଏଡାଇ ଦେଇ ଭବିଷ୍ୟତ ଆଶାରେ, ବିଛଣାରେ ପଡିଥାଆନ୍ତି । ସ୍ୱପ୍ନରେ ନିଜର ପାରିପାର୍ଶ୍ୱିକ ଅବସ୍ଥାର ପରିବର୍ତ୍ତନ ଦେଖନ୍ତି । ଅବସ୍ଥାର ପରିବର୍ତ୍ତନ ହୁଏ । ସନ୍ତାନମାନେ ତାଙ୍କ ପରି ଅଶିକ୍ଷିତ ନହୋଇ ଶିକ୍ଷିତ ହୋଇ ଯାଆନ୍ତି । କ୍ୟାଲେଣ୍ଡର ପୃଷ୍ଠା ପରି ପୃଷ୍ଠା ଓଲଟାଇ ସେମାନେ ଦେଖନ୍ତି ଉଜ୍ଜ୍ୱଳ ଭବିଷ୍ୟତ । ଅତୀତ ବିଷୟରେ କେବେ ଚିନ୍ତା କରି ମନକୁ ବ୍ୟଥିତ କରି ନାହାଁନ୍ତି ଏବଂ ବର୍ତ୍ତମାନକୁ ଭୃକ୍ଷେପ ନକରି ସେମାନେ ଯେତିକି ପାଆନ୍ତି ସେତିକିରେ ସନ୍ତୁଷ୍ଟ । ଦେଶ କଅଣ ହେଉଛି, ତା' ତାଙ୍କ ପାଇଁ ବିଶେଷ ମହତ୍ୱ ରଖେନା, କେବଳ ଭବିଷ୍ୟତ ହିଁ ସେମାନଙ୍କୁ ବଞ୍ଚାଇ ରଖେ । ଦେଶରେ ଉନ୍ନତି ହେଲେ ମଧ୍ୟ ଗାଁର ଉନ୍ନତି ପ୍ରତି କୌଣସି ଦେଶର କର୍ଣ୍ଣଧାର ଦୃଷ୍ଟିପାତ କରି ନାହାଁନ୍ତି ଆଜି ପର୍ଯ୍ୟନ୍ତ ସହରରେ କେତୋଟି କୋଠା କଲେ ଓ ଅନ୍ୟ ବାହ୍ୟ ଆଡମ୍ବର ଦେଖାଇ ଯେଉଁ ଦେଶର କର୍ଣ୍ଣଧାର ଗର୍ବ କରନ୍ତି ଯେ, ଦେଶ ଆମର ଆଗେଇ ଚାଲିଛି ଉନ୍ନତି ପଥରେ, ସେ ଦେଶର ପତନ ଅବ୍ୟଶମ୍ଭାବୀ ।

ଗାଁରେ ସେମାନେ ସୁଖରେ ଦୁଃଖରେ ଏକ ହୋଇ ନିଜ ଜୀବନ ନୌକା ମିଳିମିଶି ବୋହି ନେଉଥାନ୍ତି, ଦେଶର ରାଜନିତି ଓ ରାଜନୈତିକ ବିଚାର ଧାରା ପ୍ରତି କେବେ ସେମାନଙ୍କର ଦୃଷ୍ଟି ଯାଇନି । ଏକ ପ୍ରକାର ନିରୀହ ପ୍ରାଣୀ ସେମାନେ, ଯେଉଁମାନେ ଦେଶ ବିଷୟରେ ସଂପୂର୍ଣ୍ଣ ଅଜ୍ଞ ।

କିନ୍ତୁ ନିରୀହମାନେ ହିଁ ହିଂସାର ଶିକାର ହୁଅନ୍ତି ।

ପ୍ରତ୍ୟେକ ଦିନ ପରି ସଂଧ୍ୟାରେ ନିଜ ନିଜ ପରିବାର ସହ ଏକାଠି ଖାଇ ନିଜ ନିଜର କୁଡିଆ ମଧ୍ୟରେ ସୁଖ ନିଦ୍ରାରେ ଶୋଇ ପଡିଲେ । କିଛି ସମୟ ପରେ ଗାଁଟି

ଶୂନଶ୍ମାନ ହୋଇଗଲା । ଏହିପରି ସମୟରେ ଗାଁର ପ୍ରବେଶ ଦ୍ୱାର ନିକଟରେ ଦେଖାଗଲେ କିଛି ମାନବ । ହାତରେ ସେମାନଙ୍କର ଅସ୍ତ୍ର ଏବଂ ମଶାଲ । ସେମାନେ ଧୀର ପାଦରେ ଆଗେଇ ଚାଲିଥାନ୍ତି ଗାଁ ଉଦ୍ଦେଶ୍ୟରେ ।

କିଛି ସମୟର ଏକ ଅସମ୍ଭବ ନୀରବତା ଓ ତାପରେ ହଠାତ୍ କୋଳାହଳ ଓ ଚିତ୍କାର । ସେହି ଚିତ୍କାର, ଆବାଳ ବୃଦ୍ଧ ବନିତାଙ୍କର କାତର କଣ୍ଠର କ୍ରନ୍ଦନ, ଯୁବକର ଚିତ୍କାର, ସବୁମିଶି ଏକ ନାରକୀୟ ଚିତ୍ର ପ୍ରସ୍ତୁତ ହୋଇ ଯାଇଥିଲା କ୍ଷଣିକ ପାଇଁ । ତାପରେ ଗାଁର ସବୁ ଘର ଗୋଟିକ ପରେ ଗୋଟିଏ ଜଳି ଉଠିଥିଲା ଏବଂ ଅଗ୍ନିର ରୂପ ଭୟଙ୍କର ହୋଇ ଆକାଶର ରଂଗକୁ ମଧ୍ୟ ପରିବର୍ତ୍ତନ କରିଦେଇଥିଲା ।

ଏହି ସବୁ ‌ ‌ଂରତା ମଧ୍ୟରେ ଅନେକ ନିଜର ଜୀବନରକ୍ଷା ପାଇଁ ଯୁଆଡେ ପାଇଲେ ପଳାୟନ କଲେ, ଏବଂ ନିଜର ବୃଦ୍ଧ ପିତାଙ୍କୁ ରକ୍ଷା କରି ନ ପାରି ତାଙ୍କୁ ସେହି ଜଳୁଥିବା ଘର ମଧ୍ୟରେ ଛାଡି, ତାଙ୍କ ଅନୁରୋଧକୁ ରକ୍ଷାକରି ନିଜର ଆହତ ଛୋଟ ଭଉଣୀଟିକୁ ପିଠିରେ ବାନ୍ଧି ଯେତେବେଳେ ସେ ଗାଁ ଛାଡିଲା, ସେତେବେଳେ ସେ ନିଜକୁ ଅନେକ ଘୃଣା କରିବା ଆରମ୍ଭ କରି ଦେଇଥିଲା, ସାରା ମାନବ ସମାଜକୁ ଘୃଣା କରିବା ଆରମ୍ଭ କରିଦେଇଥିଲା, ଏତେ କଷ୍ଟ ଓ ଯନ୍ତ୍ରଣା ସହିବା ପରେ ମଧ୍ୟ ଜାଣିନଥିଲା ଯେ, କାହିଁକି ଅତ୍ୟାଚାର ନୀରିହ ଗ୍ରାମବାସୀ ମାନଙ୍କ ଉପରେ, କାହିଁକି ଏ ଆକ୍ରମଣ ? କାହିଁକି ?

ଏତେ ପଥ ଅତିକ୍ରମ ଆସିସାରିଲା ପରେ ମଧ୍ୟ ସେ ସେହି ''କାହିଁକି'' ଟିର ଉତ୍ତର ପାଇପାରି ନଥିଲା । ମାନବ, ମାନବ ଉପରେ ଏତେ ଅତ୍ୟାଚାର ପ୍ରକୃତରେ କରେ କାହିଁକି ? ସତ୍ତା ପାଇଁ, ଗାଦି ପାଇଁ, ପଦ ପାଇଁ, ଏତେ ଅତ୍ୟାଚାର କଣ ସବୁ ଦିନେ ମାନବ ନତମସ୍ତକରେ ସହି ଆସୁଥିବ ? ପ୍ରତିବାଦ କରିବାର ଶକ୍ତି କଅଣ ତାର ନାହିଁ ? ଦୁର୍ବଳ ଓ ନିରୀହ ଉପରେ ସବଳର ଏ ଅତ୍ୟାଚାର କାହିଁକି ?

ଗୋଡ ଖସିଗଲା । ନିଜକୁ ସମ୍ଭାଳିବା ପାଇଁ ଅନେକ ଚେଷ୍ଟା କରିଥିଲେ, ମଧ୍ୟ ତାର ପଡିବାର ଥିଲା, ତେଣୁ ସେ ପଡିଲା । କିନ୍ତୁ ସେ ପଡିବା ତା ପାଇଁ ବରଦାନ ସିଦ୍ଧ ହେଲା । ସେ ପଡିବାର ପରକ୍ଷଣରେ ଚିତ୍କାର କରି ଉଠିଲା ''ପାଣି'' ।

ପ୍ରକୃତରେ ଜଙ୍ଗଲ ମଧ୍ୟରେ ଥିବା ପାଣି ଭରା ଖାଲ ନିକଟରେ ତା'ର ଗୋଡ ଖସିଥିଲା ଏବଂ ସେ ଖାଲ ମଧ୍ୟରେ ହିଁ ଠିକ୍ ପଡିଥିଲା, ଚିତ୍କାର କରି ସେ ପାଣି ମଧ୍ୟରେ ମୁହଁ ମାଡି ଦେଲା, ଶୋଷରେ ଓଠମାନ ଫାଟି ଯାଇଥିଲେ, ତଣ୍ଟି ଶୁଖି ଯାଇଥିଲା । ପାଣିରେ ମୁହଁ ମାଡି ମନ ଭରି ପାଣି ପିଇଲା ପରେ, ସେ ଅନୁଭବ କଲା ତାର କ୍ଷତ ସବୁରୁ ପୁନର୍ବାର ରକ୍ତ ବୋହିବା ଆରମ୍ଭ କରିଛି ଏବଂ ଯନ୍ତ୍ରଣା ଅସମ୍ଭବ ଭାବେ ବୃଦ୍ଧି ପାଇଛି ।

ସେ ଉଠି ଠିଆ ହେଲା । ପରକ୍ଷଣରେ ମୁହଁ ମାଡି ପଡିଲା, ପେଟରେ ଭୀଷଣ ଯନ୍ତ୍ରଣା, ''ଆଃ'' ଏ ଯନ୍ତ୍ରଣାର ଯେପରି ଶେଷ ନାହିଁ, ଅନେକ ବେଳୁ କିଛି ଖାଇନଥିଲା । ଖାଲି ପେଟରେ ପାଣି ପିଇବାର ଏ ଦଶା । ସେହି ଯନ୍ତ୍ରଣା ମଧ୍ୟରେ

ତା'ର ମନେ ପଡିଲା ତୃଷାର୍ତ୍ତ ସାନ ଭଉଣୀର କଥା, କନ୍ଧରେ ଥିବା ଛୋଟ ଚାଦରକୁ ପାଣିରେ ବୁଡୁବୁଡୁ କରି ଅସମ୍ଭାଳ ପାଦରେ ଯେଉଁ ପଥରେ ଆସିଥିଲା ସେହି ପଥରେ ଆକାଶର ତାରାକୁ ନିଜର ପଥ ପ୍ରଦର୍ଶକ କରି ଫେରିଲା ।

ସକାଳର ସୂର୍ଯ୍ୟର ପ୍ରଥମ କିରଣ ଦେଖିଲା ଜଙ୍ଗଲ ମଧ୍ୟରେ ଏକ ଯୁବକ ଓ ଏକ କିଶୋରୀଙ୍କୁ ଏକ ବୃକ୍ଷ ତଳେ ନିଘୋଡ ନିଦରେ ଶୋଇଥିବାର । କିରଣ ଧୀରେ ଧୀରେ ପ୍ରଖର ହୋଇ ଉଠିଲା, ଏବଂ ପ୍ରଥମେ କିଶୋରୀଟି ଚକ୍ଷୁ ଖୋଲି ଚତୁର୍ଦ୍ଦିଗକୁ ଲକ୍ଷ୍ୟ କରି ଏକ ଅପରିଚିତ ସ୍ଥାନରେ ନିଜକୁ ଦେଖି ଚିତ୍କାର କରି ଉଠିଲା ଭୟାତୁର କଣ୍ଠରେ —

''ବାପା'' ।

କିନ୍ତୁ କେହି ତା ଚିତ୍କାରର ପ୍ରତ୍ୟୁତ୍ତର ଦେଲେ ନାହିଁ । ସେ ଉଠି ବସିଲା ଏବଂ କାନ୍ଦିବାକୁ ଆରମ୍ଭ କଲା ସମୟରେ ଦେଖିଲା ତା ଭାଇକୁ, ଚକ୍ଷୁରେ ଅଶ୍ରୁ ଓ ମୁଖରେ ଆନନ୍ଦର ଚିହ୍ନ ନେଇ । ସେ ନିଦରୁ ନିଜ ଭାଇକୁ ଉଠାଇ ବାକୁ ଲାଗିଲା, ଯୁବକ ଉଠିଲା, ନିକଟରେ ସାନ ଭଉଣୀ ମୁଖରେ ହସ । ସେ ପୂର୍ବ ପରିଚିତ ହସ ହସି ଉଠିଲା । ବିଗତ ଦିନମାନ ତାକୁ ଏତେ ପ୍ରଭାବିତ କରିପାରିଲା ନାହିଁ । ସାନ ଭଉଣୀ ପ୍ରଶ୍ନ କଲା –

''ଭାଇ, ବାପା କାହିଁ ? ଆମେ ଏଠି କିପରି ? ଆମ ଘର.. ?''

ଯୁବକ ମୁହଁ ବୁଲେଇ ନେଲା, କାରଣ ସେ ଚାହୁଁନଥିଲା ଯେ, ତା ଚକ୍ଷୁର ଅଶ୍ରୁ ଭଉଣୀ ଦେଖୁ । ନିଜକୁ ସଂଯତ କଲା, ଏବଂ ଦୂର ଦିଗ୍‌ବଳୟକୁ ଦେଖାଇ କହିଲା –

''ବାପା ସେଇଠି ଅଛି, ଆମେ ମଧ୍ୟ ସେଇଠିକି ଯିବା, ବାପା ପାଖକୁ ନୂଆ ଘରକୁ ।''

କିଶୋରୀଟିର ମୁଖରେ ପ୍ରଫୁଲ୍ଲତା ଚମକି ଉଠିଲା । ପଚାରିଲା ଏତେ ଦୂର କେମିତି ଯିବା ?

''ଚାଲି ଚାଲି ଭଉଣୀ । ବାଧ୍ୟ ହୋଇ ଆମକୁ ଚାଲିବାକୁ ହେବ । ଏବଂ ଜୀବନ ସରିଲେ ଯାଇ ଆମେ ସେହି ଦିଗ୍‌ବଳୟ ତଳେ ଯାଇ ବାପା ପାଖରେ ପହଞ୍ଚିବା । ଆମକୁ ମରିବା ପାଇଁ ହିଁ ବଞ୍ଚିବାକୁ ପଡିବ । ଅନ୍ୟ ମାନଙ୍କ ପରି ବଞ୍ଚିବା ପାଇଁ, ମରିବା ନାହିଁ ଥରକୁ ଥର ଆମେ କେବଳ ଚାଲିବା... ।

ଏବଂ ସେ ଉଠିଠିଆ ହେଲା, ସବୁ ଯନ୍ତ୍ରଣା ଭୁଲି । କିଶୋରୀଟି ମଧ୍ୟ ନିଜ ଯନ୍ତ୍ରଣା ଭୁଲି ସାରିଥିଲା ନୂଆ ଘରକୁ ଯିବା ଆଶାରେ ।

ଆଶା ପାଇଁ ତ ମାନବ ବଞ୍ଚିଛି ନଚେତ...

କିଛିକ୍ଷଣ ପରେ ଜଙ୍ଗଲର ଛୋଟ ପଥ ଦେଇ ଏକ ଯବକ ଏକ କିଶୋରୀ ଧୀର ପଦକ୍ଷେପରେ ଆଗେଇ ଚାଲିଥିଲେ, ଦୂର ଦିଗ୍‌ବଳୟ ଉଦ୍ଦେଶ୍ୟରେ ।

□ *ଆଜିର ଗଳ୍ପ, ଏପ୍ରିଲ୍, ୧୯୭୨*



# ଗ୍ରେଟ୍‌ମ୍ୟାନ

ସମସ୍ତେ ନୀରବ ହୋଇଗଲେ, ଅର୍କେଷ୍ଟ୍ରା ମଧ ଶାନ୍ତ ହୋଇଗଲା, ମୁଖ୍ୟ ଦ୍ୱାରରେ ହରିଶଙ୍କର ପଟ୍ଟନାୟକ ଠିଆ ହୋଇ ହସୁଥିଲେ । ତାଙ୍କୁ ସ୍ୱାଗତ ଜଣେଇ ସମସ୍ତେ ଠିଆ ହୋଇପଡିଲେ ।

ହରିଶଙ୍କର ଅଜସ୍ର ଧନର ମାଲିକ, ସହରର ବିଖ୍ୟାତ ଶିଳ୍ପପତି, ଯୁବକ, ସୁନ୍ଦର ଏବଂ ସ୍ୱାସ୍ଥ୍ୟବାନ, ପ୍ରେମବିବାହ କରିଛନ୍ତି ଏବଂ ସହରର ପ୍ରତ୍ୟେକ ବ୍ୟକ୍ତି ତାଙ୍କୁ ଡାକନ୍ତି "ଗ୍ରେଟମ୍ୟାନ ।"

ସମସ୍ତେ ତାଙ୍କୁ ଭଲ ପାନ୍ତି । ସମ୍ମାନ କରନ୍ତି । ତେଣୁ ସେ ଗ୍ରେଟମ୍ୟାନ ।

କ୍ଲବ ଭିତରକୁ ପ୍ରବେଶ କରି ପ୍ରତ୍ୟେକଙ୍କର ଅଭିନନ୍ଦନର ପ୍ରତ୍ୟୁତ୍ତର ଦେଇ ସେ ନିଜର ରିଜର୍ଭ ଟେବୁଲ ପାଖରେ ପହଞ୍ଚିଲେ । ଟେବୁଲରେ ରୀତା ମାଲ ହୋତ୍ରା ଅନେକ ବେଳୁ ତାଙ୍କୁ ଅପେକ୍ଷା କରି ବସିଥିବାର ଅନେକ ଲକ୍ଷ୍ୟ କରିଥିଲେ ଏବଂ ବିଶେଷକରି ଅନ୍ୟ ସୁନ୍ଦରୀ ଯୁବତୀମାନେ ରୀତାକୁ ଈର୍ଷା କରୁଥିଲେ ।

"ହାଏ ପ୍ରିନ୍ସ" ରୀତା ମାଲହୋତ୍ରା ଉଠି ପଡିଲା ।

"ଟେକ ଇଟ ଇଜି ।" ହରିଶଙ୍କର ହସିଲେ "କୁହ କଅଣ ପିଇବ ।" ଅର୍କେଷ୍ଟ୍ରା ଆରମ୍ଭ ହୋଇ ଯାଇଥିଲା । ସଂଗୀତର ତାଳେ ତାଳେ ପାଦମାନ ଚଞ୍ଚଳ ହୋଇ ଉଠୁଥିଲେ, ହରିଶଙ୍କରଙ୍କର ଟେବୁଲରେ ହ୍ୱିସ୍କି ଖୋଲା ସରିଥିଲା, ଏବଂ ଡ୍ୟାନସିଂଗ ଫ୍ଲୋରରେ କେତେଜଣ ଯୁବକ ଯୁବତୀ ନାଚ ଆରମ୍ଭ କରି ଦେଇଥିଲେ ।

"ଆଜି ତୁମର ପ୍ରୋଗ୍ରାମ କଅଣ ପ୍ରିନ୍ସ୍ ?" ରୀତା ମାଲହୋତ୍ରା ଦ୍ୱିତୀୟ ପେଗ୍ ସମାପ୍ତ କରି ପ୍ରଶ୍ନ କଲା,

ହରିଶଙ୍କର ରୀତାର ସୁନ୍ଦର ମୁଖକୁ ଅନେଇ ହସିଲେ, ରାତି କଅଣ କହୁଛି ତା ତୁମେ ବୁଝିବାକୁ ଚେଷ୍ଟା କର । କ୍ଲବ ପରେ ଗେଷ୍ଟ ହାଉସ୍ ଗଲେ କେମିତି ହେବ ?

ରୀତା ମାଲହୋତ୍ରା ମୁଖ ତଳକୁ ହୋଇଗଲା, ଦୁଇ କାନପାଖ ଲାଲ ହୋଇ ଉଠିଲା, ହରିଶଙ୍କର ହସିଲେ, ପକେଟରୁ ଗୋଟିଏ ପ୍ୟାକେଟ୍ ବାହାର କରି ରୀତା ହାତକୁ ବଢେଇ ଦେଲେ, "ତୁମ ପାଇଁ ଗୋଟିଏ ସାମାନ୍ୟ ଉପହାର ।"

ପ୍ୟାକେଟ ଭିତରର ମୁକ୍ତାର ଉଜ୍ଜ୍ୱଳ ରଂଗ ରୀତା ମାଲହୋତ୍ରାର ଶରୀରରେ ଉତ୍ତେଜନାର ତରଂଗ ଖେଳାଇ ଦେଲା ''ଓଃ ପ୍ରିନ୍ସ... କେତେ ସୁନ୍ଦର ଆଇ ଲାଇକ୍ ୟୁ ଭେରି ମଚ୍'' ।

ହରିଶଙ୍କର ହସିଲେ, ରୀତାର ଦୁଇ ପାପୁଲିକୁ ଚାପି ଧରି ଅସ୍ପଷ୍ଟ ସ୍ୱରରେ କହିଲେ ''ଆଇ ଅଲ୍‌ଶୋ ଲାଇକ୍ ୟୁ ''

ଅର୍କେଷ୍ଟ୍ରାର ସ୍ୱର ତୀବ୍ର ହୋଇଗଲା, ଶୀର୍ଷରେ ପହଞ୍ଚି ହଠାତ୍ ବନ୍ଦ ହୋଇଗଲା । ପାଦ ଅଟକିଗଲା । ହଲ ମଧ୍ୟରେ ହଠାତ୍ ଏକ ନିସ୍ତବ୍ଧତା... ଓ ପରେ ପରେ କାଚ ଗ୍ଲାସର ଠନ୍‌ଠନ୍ ଶବ୍ଦ ଏବଂ ଅସ୍ପଷ୍ଟ କଥା ସହ ଉନ୍ମୁକ୍ତ ହସ ।

''ଦେଖୁଛନ୍ତି ରାକେଶ ବାବୁ, ଏଇ ହେଉଛନ୍ତି ସେଇ ବିଖ୍ୟାତ ଶିଳ୍ପପତି ହରିଶଙ୍କର ପଟ୍ଟନାୟକ, ଆଜି ଯିଏ ଗୋଟିଏ ରାତିରେ ଦଶହଜାର ଟଙ୍କା ଫିଙ୍ଗି ଦେଇ ପାରନ୍ତି'' ଚନ୍ଦା ବ୍ୟକ୍ତିଟି ସ୍ୱରରେ ନିରାଶା ଭରି କହି ଉଠିଲେ ।

''ବିବାହିତ ନା...'' ଅନ୍ୟ ବୃଦ୍ଧ ବ୍ୟକ୍ତିଟି ବୁଝି ଅନେଇଲେ ।

''ଦୁଇବର୍ଷ ହେଲା ପ୍ରେମ ବିବାହ କରିଛନ୍ତି ।''

''ସେ ମହିଳା ତାଙ୍କ ପତ୍ନୀ ।''

''ପତ୍ନୀ ଘରେ... ଏଇଟା ତ ବଡ ଲୋକମାନଙ୍କର ଗୋଟିଏ ହବି, ଏଇଟା ତ 'ଆରିଷ୍ଟୋକ୍ରେସି ।'' ଏଇଟା ନହେଲେ ମଣିଷ ବଡ ଲୋକ ହୋଇ ପାରେ ନାହିଁ, ମଦ ଜୁଆ ଓ ନାରୀ ନହେଲେ ମଣିଷ ଗ୍ରେଟ୍ ହୋଇପାରିବ ନାହିଁ ।''

''ଛାଡନ୍ତୁ ଅରବିନ୍ଦ ବାବୁ... ଇଆଡେ ଦେଖନ୍ତୁ ସେ ଟେବୁଲରେ...'' ଚନ୍ଦା ବ୍ୟକ୍ତି ମୁହଁ ବୁଲାଇ ଲକ୍ଷ୍ୟ କଲେ । ବିଦେଶୀ ମିସ୍ ଡାଏନାଙ୍କର ଅର୍ଦ୍ଧ ଉନ୍ମୁକ୍ତ ବକ୍ଷ ଓ ମିନି ସ୍କର୍ଟରୁ ଗୋରା ଜାନୁକୁ, ଏବଂ ଟେବୁଲ ଉପରେ ଥିବା ବୋତଲଟାକୁ ଉଠେଇ ମୁହଁରେ ଲଗେଇ ନିଜର ବୃଦ୍ଧତ୍ୱକୁ ଭୁଲିବାକୁ ଚେଷ୍ଟା କଲେ ।

ସାତ ନମ୍ବର ଟେବୁଲର ପ୍ରୌଢ଼ ବ୍ୟକ୍ତିଟି କଣେଇ କଣେଇ ଚାହୁଁଥିଲେ ହରିଶଙ୍କର ଓ ରୀତା ମାଲହୋତ୍ରାଙ୍କୁ ତାଙ୍କ ସ୍ତ୍ରୀ ଅପଲକନୟନରେ ଚାହିଁଥିଲେ ହରିଶଙ୍କରଙ୍କୁ । ପ୍ରୌଢ଼ ଚମକି ଉଠିଲେ ଏବଂ ଚତୁର୍ଦ୍ଦିଗକୁ ଅନେଇ ଧୀର ସ୍ୱରରେ କହିଲେ ''ଏଇ... ସିଆଡେ କାହିଁକି ଦେଖୁଛ ?''

''କି ସୁନ୍ଦର ସ୍ୱାସ୍ଥ୍ୟ !''

''ବ୍ୟଭିଚାରୀ !''

''ନାରୀ ବ୍ୟଭିଚାରୀକୁ ହିଁ ଭଲପାଏ । ହିଂସ୍ରତାକୁ ହିଁ ଭଲପାଏ । ପ୍ରତିଦିନ ଭିନ୍ନ ଭିନ୍ନ ନାରୀମାନଙ୍କ ସହିତ ରାତ୍ରି ଯାପନ କରୁଥିବା ପୁରୁଷ ନିଜ ସ୍ତ୍ରୀ ପ୍ରତି କେବେ ବିଶ୍ୱସ୍ତ ହୋଇପାରେ ନାହିଁ ।''

ପୁରୁଷ ଈର୍ଷାନ୍ୱିତ ହୋଇ ପଡିଥିଲା ।

"କିନ୍ତୁ ତୁମ ପରି... ।" ନାରୀ ଅଟକିଗଲା । ପ୍ରୌଢ଼ୀ ମୁଣ୍ଡ ତଳକୁ କଲା ।

ଜୁଆ ଆରମ୍ଭ ହୋଇଯାଇଥିଲା, ମ୍ୟାନେଜର, ଆସିଷ୍ଟାଣ୍ଟ ମ୍ୟାନେଜରକୁ କହୁଥିଲା "ଶଳା ମୋ ପାଖରେ ଯଦି ଏତେ ପଇସା ଥାନ୍ତା, ତେବେ ମୁଁ ବି ହରିଶଙ୍କର ପରି ଯୌବନର ମଧୁରତାକୁ ମନଭରି ଉପଭୋଗ କରନ୍ତି, କିନ୍ତୁ ଶଳା... ଏଇ କାଉଣ୍ଟର ପାଖରେ ଠିଆ ହୋଇ ଖାଲି ଦେଖି ଦେଖି ରହିଲି । ହରିଶଙ୍କର ବାବୁ ଇଜ୍ ଏ ଗ୍ରେଟ ମ୍ୟାନ । ମଣିଷର ଆଉ କଅଣ ଦରକାର ? ମଦ, ନାରୀ ଓ ଟଙ୍କା... ବାସ୍ ଆଉ ଏ ଶଳା ତ ନାରୀ ବଦଳାଉଛି ଯେମିତି ଲୋକ ଯୋତା ବଦଳାନ୍ତି ।

ଏଇଆକୁ କହନ୍ତି ଭାଗ୍ୟ ।

ଆସିଷ୍ଟାଣ୍ଟ ମ୍ୟାନେଜର କିଛି ବୁଝି ପାରୁନଥିଲା । ନୀରବରେ ମୁଣ୍ଡ ହଲାଇ ଭାବୁଥିଲା ଯଦି ଏମିତି ହୁଏ, ତେବେତ ଏଇ ପୁରୁଷଟି ବିନା ନାରୀ କେବେ ରାତିରେ ଶୋଇପାରୁନଥିବ ।

ତିନିନମ୍ବର ଟେବୁଲରୁ ଦୁଇଜଣ ସଂଭ୍ରାନ୍ତ ବ୍ୟକ୍ତି ଉଠି ପଡିଲେ । ଲକ୍ଷ୍ୟ ତାଙ୍କର ବୋଧହୁଏ ହରିଶଙ୍କର ଥିଲେ ।

"ହାଏ ଗ୍ରେଟମ୍ୟାନ ।"

"ହାଏ... ।" ହରିଶଙ୍କର ହସିଲେ, "ବସନ୍ତୁ ।" ଦୁହେଁ ବସି ପଡିଲେ ।

"କାର୍ଡସ ଆଣିବି ?" ନରୋତ୍ତମ ବିଶ୍ୱାଳ ପ୍ରଶ୍ନ କଲେ ।

ନରୋତ୍ତମ ସହରର ସବୁ ପେଟ୍ରୋଲ ପମ୍ପର ମାଲିକ । ହରିଶଙ୍କର ବାବୁଙ୍କ ଅଟ୍ଟାଳିକା ପାଖରେ ତାଙ୍କ ଅଟ୍ଟାଳିକା, ନରୋତ୍ତମ ବିଶ୍ୱାଳଙ୍କୁ ଦ୍ୱିତୀୟ "ଲକିମ୍ୟାନ" କୁହାଯାଏ ।

ହରିଶଙ୍କର ବାବୁ ପୁନର୍ବାର ହସିଲେ ଏବଂ ପକେଟରୁ ପର୍ସଟା କାଢି ଟେବୁଲ ଉପରେ ରଖିଦେଲେ । ରୀତାକୁ ଲକ୍ଷ୍ୟ କରି କହିଲେ "ଡାରଲିଂଗ୍, ତୁମେ ମୋତେ କାର୍‌ରେ ଅପେକ୍ଷା କର । ମୁଁ ଆସୁଛି ।"

ରୀତା ଉଠିଗଲା ପରେ ନରୋତ୍ତମ ବିଶ୍ୱାଳଙ୍କ ସହିତ ଥିବା ଦ୍ୱିତୀୟ ବ୍ୟକ୍ତି ତାସ୍ ବାଣ୍ଟିବାକୁ ଲାଗିଲେ ଏବଂ ଖେଳ ଆରମ୍ଭ ହେଲା ।

"ଆଜି ପେପର ପଢିଛନ୍ତି ?" ନରୋତ୍ତମ ପ୍ରଶ୍ନ କଲେ ।

"ନା"

"ବଡ ଆଶ୍ଚର୍ଯ୍ୟ ସଂବାଦ... କାନପୁରର ଜଣେ ଖୁବ୍ ପ୍ରଖ୍ୟାତ ବ୍ୟକ୍ତି ଆତ୍ମହତ୍ୟା କରିଛନ୍ତି ।"

"ଆତ୍ମହତ୍ୟା ତ ଆଜିକାଲି ସାଧାରଣ କଥା ।" ହରିଶଙ୍କର କହିଲେ ।

"ଆପଣ ପୂରା ଖବର ଶୁଣନ୍ତୁ ।" ଆତ୍ମହତ୍ୟାର କାରଣ ହେଲା ସେ ନିଜକୁ ଓମେନ୍ ହଣ୍ଟର ଭାବେ ବିଖ୍ୟାତ କରାଉଥିଲେ । ହେଲେ ତାଙ୍କର ଜଣେ ବନ୍ଧୁ ଦିନେ

ଜାଣିପାରିଲେ ଯେ ସେ ହେଉଛନ୍ତି ଏକ 'ଇନ୍ ଭାଲିଡ୍ ପରସନ୍' ତେଣୁ ନିଜର ଏଇ ଦୁର୍ବଳତାକୁ ଘୋଡାଇବା ପାଇଁ ସେ ଆତ୍ମହତ୍ୟା କଲେ।''

''He is a Gol.'' ହରିଶଙ୍କର କାର୍ଡ ଫିଗିଦେଲେ ଏବଂ ନରୋତ୍ତମବାବୁ ଆଡକୁ ଲକ୍ଷ୍ୟକଲେ। ଲୋକଟା କୁନିତ ? ଗତରାତ୍ରିରେ ଏଇ ବୋଧହୁଏ ଝର୍କା ପାଖରୁ ଅପସରି ଯାଇଥିଲା। ଛାଇଟା ସେ ଠିକ ଦେଖିଥିଲେ.... ।

''ଶୁଣ .... ସ୍ମିତା ଡାକିଥିଲା।

ସେ ଅଟକି ଯାଇଥିଲେ। ''ଆଜିପୁଣି କିଏ'' ? ସ୍ମିତା ତାଙ୍କର ଅତି ନିକଟକୁ ଚାଲି ଆସିଥିଲା, ସେ ଅନୁଭବ କରି ପାରୁଥିଲେ ସ୍ମିତାର ଶରୀରର ସୁଗନ୍ଧ। କିନ୍ତୁ... । ନା... ସେ ପାଦ ପକେଇଲେ ଆଗକୁ, ସ୍ମିତା କିନ୍ତୁ ତାଙ୍କ ହାତକୁ ଧରି ନେଇଥିଲା। ''ଆଜି ବୋଧହୁଏ ଜମିଲା ନୁହେଁ''

ହରିଶଙ୍କର ଅପ୍ରସ୍ତୁତ ହୋଇ ପଡୁଥିଲେ। ସେ ଦୁର୍ବଳ ହୋଇ ପଡୁଥିଲେ।

''ମୁଁ ଆସୁଛି ଅପେକ୍ଷା କର'' ସ୍ମିତା କାନ୍ଧରେ ହାତ ଥୋଇ ସେ ଧିର ସ୍ୱରରେ କହିଲେ।

''ଆଉ ନୁହେଁ'' ଏଇମିତି ହୋଇ ଦୁଇବର୍ଷ ବିତିଗଲା। ଯୌବନର ଦୁଇଟି ପାହାଚ ଖସିଗଲା ''ଆଉ ଧୈର୍ଯ୍ୟ ନାହିଁ'' ଦୁଇବର୍ଷ ନାନା ବାହାନା ଦେଖାଇ ତୁମେ ମୋତେ ଏଡାଇ ଆସିଛ କିନ୍ତୁ ଆଉ ନୁହେଁ। ଯଦି ଏମିତି କଥା ଥିଲା ତେବେ ମୋତେ ବିବାହ କରୁଥିଲ କାହିଁକି। ମୁଁ ମଣିଷ ମୋର ମଧ କାମନା ଅଛି... ଶରୀରର କ୍ଷୁଧା ଅଛି। ସ୍ମିତା ଉତ୍ୟକ୍ତ ହୋଇ ଉଠୁଥିଲା।

ହରିଶଙ୍କର ଦ୍ରୁତ ପାଦରେ ଉପରକୁ ଯାଇଥିଲେ ଏବଂ ପରକ୍ଷଣରେ କିଛି ଆଦେଶ ଦେଇ, ତଳକୁ ଓହ୍ଲାଇ ଆସିଥିଲେ। ମନରେ ଦୃଢ ବିଶ୍ୱାସ ନିଶ୍ଚୟ କରିଥିଲେ ଥରେ ଚେଷ୍ଟାକରି ଦେଖାଯାଉ ''ଫର ଦି ଫାଷ୍ଟ ଏଣ୍ଡ ଲାଷ୍ଟ ଟାଇମ...'' ସେ ବେଡରୁମରେ ପ୍ରବେଶ କରିଥିଲେ। ସ୍ମିତା ତାଙ୍କୁ ଦେଖି ନିଜ ଲୁହ ପୋଛି ଦେଇ ହସି ଉଠିଥିଲା। ହରିଶଙ୍କର ସ୍ମିତାର ଦେହ ଛୁଇଁ ଚମକି ଉଠିଥିଲେ। ଏତେ ଉଷ୍ଣତା... ! ଏତେ ଉତ୍ତେଜନା ! ସତେଇଶ ବର୍ଷର ଏଇ ବିବାହିତା ମହିଳା ପାଇଁ। ହରିଶଙ୍କର ହେଉଛନ୍ତି ପ୍ରଥମ ପୁରୁଷ ଏବଂ କୁମାରୀତ୍ୱର ଦ୍ୱାର ଡେଇଁ ନାରୀତ୍ୱକୁ ଆପଣାର କରିବା ପାଇଁ ସ୍ମିତା ମନରେ ଯେଉଁ ଆଗ୍ରହ, ଯେଉଁ ଆଶା... ତା' ହରିଶଙ୍କର ଠିକ୍ ବୁଝିପାରୁଥିଲେ।

''ତୁମକୁ ଏ ପୋଷାକ ଅଡୁଆ ଲାଗୁନି ?'' ସ୍ମିତା ହଠାତ୍ ଚଞ୍ଚଳ ହୋଇ ଉଠିଥିଲା, ଯେମିତି ଏକ କିଶୋରୀ, ନାରୀ ପୁରୁଷ ସଂପର୍କ ବିଷୟରେ ଅନଭିଜ୍ଞ, ସ୍ମିତା ହରିଶଙ୍କର ଶରୀରକୁ ଛୁଇଁ ଛୁଇଁ ଉତ୍ତେଜିତା ହୋଇ ପଡିଲା ପରେ, ନିଜକୁ ଆଉ ସମ୍ଭାଳି ପାରିଲା ନାହିଁ। ହରିଶଙ୍କରଙ୍କ ଛାତିରେ ଲାଗିଯାଇ ତାଙ୍କ ଅଧର ସହିତ ଅଧର ଲଗେଇ ଦେଲା। ହରିଶଙ୍କର ଉତ୍ୟକ୍ତ ହେବା ପାଇଁ ଚେଷ୍ଟା କଲେ।

ସ୍ମିତାକୁ ନଗ୍ନ କରି ହରିଶଙ୍କର କ୍ଷଣେ ଠିଆ ହେଲେ, ତାପରେ ଅନ୍ଧାର ମଧ୍ୟରେ ଦୁଇଟି ଶରୀର ଗୋଟିଏ ନାରୀ ଏବଂ... । ସ୍ମିତା ହରିଶଙ୍କରଙ୍କ ବିଳମ୍ବ ଲକ୍ଷ୍ୟ କରି ତାଙ୍କ କାନପାଖରେ ମୁହଁ ଲଗେଇ ଅସ୍ପଷ୍ଟ ସ୍ୱରରେ କହି ଉଠିଲେ ''ଆଉ ବିଳମ୍ବ କାହିଁକି ? ଯୁଗ ଯୁଗର ତୃଷ୍ଣାର୍ତ୍ତ ମୋର ହୃଦୟକୁ ତୁମେ ଶାନ୍ତି ଦିଅ । ପତ୍ନୀର ଅଧିକାର ମୋତେ ଦିଅ ।

ହରିଶଙ୍କର ଉତ୍ତର ନ ଦେଇ କେବଳ ସ୍ମିତାକୁ ଭିଡି ଧରିଲେ । ସ୍ମିତା ଆଉ ପାଦେ ନିଜ ଲଜ୍ଜାକୁ ତ୍ୟାଗ କରି ଆଗକୁ ଅଗ୍ରସର ହେଲା । ଏବଂ ଚମକି ପଡି ଉଠିପଡିଲା ।

''ସ୍ମିତା... ଆସ ଆସ ସ୍ମିତା !'' ହରିଶଙ୍କର କହୁଥିଲେ

''ଛାଡ... ମୋତେ !'' ସ୍ମିତା ସୁଇଚ୍ ପାଖକୁ ଦୌଡିଗଲା ଏବଂ କକ୍ଷ ମଧ୍ୟରେ ଆଲୋକର ସାମ୍ରାଜ୍ୟ । ହରିଶଙ୍କର ନିଜ ନଗ୍ନ ଶରୀରକୁ ଲୁଚାଇବାକୁ ଚେଷ୍ଟା କଲେ । ନଗ୍ନ ସ୍ମିତା ଚାଦରଟା ଟାଣି ଆଣିଲା ଏବଂ ହରିଶଙ୍କର...

ସୁନ୍ଦର ସ୍ୱାସ୍ଥ୍ୟବାନ ହରିଶଙ୍କର ମୁଣ୍ଡ ତଳକୁ କରି ବସିରହିଲେ । ସ୍ମିତା କାନ୍ଦି ପକାଇଲା । ''ଏଇଥି ପାଇଁ... ଏଇଥି ପାଇଁ କିନ୍ତୁ ଯେଉଁ ମାନଙ୍କୁ ତୁମେ ନେଇ ଆସ... ସେମାନଙ୍କୁ କିପରି... ?''

ହରିଶଙ୍କର କିଛି କହିଲେ ନାହିଁ, ସ୍ମିତାକୁ ସଂଯତ କଲେ ଏବଂ ନିଜେ ମଧ୍ୟ ସଂଯତ ହୋଇ ଉପରକୁ ଚଢି ଗଲେ । ବନ୍ଦ କକ୍ଷ ମଧ୍ୟରୁ ନାରୀ କଣ୍ଠର ଧ୍ୱନୀ ସ୍ପଷ୍ଟ ଶୁଭୁଥାଏ ।

''ଆଃ ! ହରିଶଙ୍କର ଛାଡନା...'' ସ୍ମିତା ଆଶ୍ଚର୍ଯ୍ୟ ହୋଇ ହରିଶଙ୍କରଙ୍କୁ ଲକ୍ଷ୍ୟ କଲା, ହରିଶଙ୍କର ଧୀର ସ୍ୱରରେ କହିଲେ ''ଭିତରେ ମୁଁ ନାହିଁ, ଅଛି ବିହାରୀ, ସୁଇଚ୍ ବାହାରେ ଅଛି, ମୁଁ ଏଇଠି ଅପେକ୍ଷା କରେ । ଅନ୍ଧାର ଘର ଭିତରେ ବିହାରୀକୁ କେହି ଚିହ୍ନି ପାରନ୍ତି ନାହିଁ, ବିହାରୀ ବାହାରକୁ ଆସିଲେ, ମୁଁ ସୁଇଚ ଦେଇ ଭିତରକୁ ଚାଲିଯାଏ ।

ସ୍ମିତା କିଛି କହିଲା ନାହିଁ । ହରିଶଙ୍କର ବାଲକୋନୀରେ ଠିଆ ହୋଇ ଦେଖିଲେ, ତାଙ୍କ ବେଡରୁମ ଝରକା ପାଖରୁ କେହି ଜଣେ ଚାଲିଯାଉଛି । ନରୋତ୍ତମ ବାବୁଙ୍କ ଘର ଆଡେ । ସେ ଚିନ୍ତିତ ହୋଇ ପଡିଲେ ।

''ଓଃ ! ପ୍ରିନ୍ସ... ମୁଁ ବୋର୍ ହେଉଛି ।'' ରୀତା ମାଲହୋତ୍ରା ହରିଶଙ୍କରଙ୍କ କାନ୍ଧରେ ହାତ ଥୋଇ କହିଲା,

''I am sorry.... ପ୍ରକୃତରେ ମୁଁ ଖୁବ୍ ଦୁଃଖିତ ହନି''

ସେ ଭାବୁଥିଲେ, ଯଦି ନରୋତ୍ତମ ତାଙ୍କ ଦୁର୍ବଳତା ଜାଣିପାରିଛି ତେବେ ତାଙ୍କର ଏ ଯେଉଁ ହିପୋକ୍ରେସି ତା ହୁଏତ ନଷ୍ଟ ହୋଇଯିବ । ପ୍ରତ୍ୟେକ ଲୋକଙ୍କ ଆଗରେ ସେ ହାସ୍ୟାସ୍ପଦ ବ୍ୟକ୍ତି ହୋଇ ଠିଆ ହେବେ । ପ୍ରତ୍ୟେକ ତାଙ୍କୁ ଉପହାସ କରିବେ,

ସେ କଅଣ ସହି ପାରିବେ ? ତାଙ୍କୁ ମଧ ଆତ୍ମହତ୍ୟା କରିବାକୁ ପଡିବ । ସେ ଆଜି ପର୍ଯ୍ୟନ୍ତ ଯେଉଁ "ଇମେଜ" ସୃଷ୍ଟି କରି ଆସିଛନ୍ତି ତାହା ନଷ୍ଟ ହେଲେ ସେ ବଂଞ୍ଚି ପାରିବେ ନାହିଁ, "ସେଲ୍ଫ ଫ୍ରିଜିଡ୍" ମଣିଷ ହୋଇ ଜନ୍ମ ହେବାଟା ତାଙ୍କର ତ ଭୁଲ ନୁହେଁ, ତେବେ କାହିଁକି ସେ ଆତ୍ମହତ୍ୟା କରିବେ ? କିନ୍ତୁ ସମ୍ମାନ...

ସେ ଉଠି ଠିଆ ହେଲେ । ମନରେ ନିଶ୍ଚୟ.. ରୀତା... ଟିକେ ମୋତେ ଅପେକ୍ଷା କର । ମୁଁ ଟିକେ ବାହାରୁ ଆସୁଛି । ସେ ବାହାରକୁ ଚାଲିଗଲେ, ନରୋତ୍ତମ ହସିଲା ଏବଂ ନିଜର ସାଥୀର କାନରେ ମୁହଁ ଲଗାଇ କହିଲା ଦେଖିଲୁ... ଏଥର ଯାହା ଇଚ୍ଛା କରି ପାରିବା, ଏକ ରକମ "ବ୍ଲାକ୍ ମେଲ୍ ।" ଦୁହେଁ ହସିଲେ, ରୀତା କିଛି ବୁଝି ପାରିଲା ନାହିଁ । ସିଆଡେ ହରିଶଙ୍କର ବିହାରୀକୁ କହୁଥିଲେ, ଆଜି ଜ୍ୱାତି ଭିତରେ ତାର ଅସ୍ତିତ୍ୱ ଲୋପ ଯେମିତି ପାଇଥାଏ ।

ହରିଶଙ୍କର ଟେବୁଲ ପାଖରେ ପହଞ୍ଚିଲେ, ଓ୍ୱେଟର ପହଞ୍ଚି ନରୋତ୍ତମ ବାବୁଙ୍କୁ ଫୋନ ପାଖକୁ ଡାକି ନେଲା, ତାଙ୍କର ଫୋନ ଆସିଛି । ହରିଶଙ୍କର ରୀତା ମାଲହୋତ୍ରାର ପାପୁଲିକୁ ଚାପି ଧରି କହିଲେ – ଆଜି ଘରକୁ ଯିବା... ମୋର ଘରକୁ... ।

ନରୋତ୍ତମ ବାବୁ ଫୋନ ରିସିଭ୍ କରି ଦ୍ରୁତ ଗତିରେ ବାହାରକୁ ଚାଲି ଗଲେ, ପ୍ରାୟ ଘଣ୍ଟାଏ ପରେ ବିହାରୀ ହସି ହସି ହରିଶଙ୍କରଙ୍କୁ ନମସ୍କାର କଲା । ହରିଶଙ୍କର ବାବୁ ମାଇକ୍ ପାଖକୁ ଯାଇ ଚିତ୍କାର କଲେ, "ଆଜି ସବୁ ସଭ୍ୟଙ୍କୁ ଡ୍ରିଙ୍କ୍ ମୋ ତରଫରୁ ଦିଆ ହେବ ।"

ପ୍ରତ୍ୟେକ ଚିତ୍କାର କଲେ ଏବଂ କରତାଳି ମଧ୍ୟରେ ହରିଶଙ୍କର ହସୁଥିଲେ । ରୀତା ମାଲହୋତ୍ରା ହାତ ଧରି ତାଙ୍କ ପଛେ ପଛେ ଚାଲୁଥାଏ । ଚନ୍ଦା ବ୍ୟକ୍ତିଟି ନିଜ ବଂଧୁକୁ କହିଲେ "ଦେଖୁଛ ରାକେଶ ବାବୁ... ଏଇଟା ହିଁ ଭାଗ୍ୟ ୬କାଲି ଦେଖିବେ ଅନ୍ୟ ଏକ ଯୁବତୀକୁ ଧରି ବୁଲୁଥିବ ଏଇ ହରିଶଙ୍କର... ଶଳା ବ୍ୟଭିଚାରୀ... ଆଇ ହେଟ୍ ହିମ୍ ।

"ବଟ୍ ହି ଇଜ୍ ଏ ଲକି ଏଣ୍ଡ ହାଣ୍ଡସମ ମ୍ୟାନ... ଏ ଗ୍ରେଟ ମ୍ୟାନ ।" ସାତନମ୍ବର କେବିନର ମହିଳା ଜଣକ ଭାବୁଥିଲେ, ଗୋଟିଏ ରାତି ଯଦି ଏଇ ପୁରୁଷର ବାହୁ ବନ୍ଧନ ଭିତରେ ରହିବାକୁ ଯଦି ତାଙ୍କୁ ସୁଯୋଗ ମିଳନ୍ତା ନା ! ତାଙ୍କ ନିକଟ ଦେଇ ହରିଶଙ୍କର ବାବୁ ଗଲାବେଳେ ସେ ହସି ହସି ତାଙ୍କୁ ଅନାଉ ଥିଲେ ଆଖିରେ ନିମନ୍ତ୍ରଣ ଭରି ଏବଂ ପ୍ରୌଢ ଜଣଙ୍କ ମଦନିଶାରେ ଚେୟାରକୁ ଆଉଜି ଆଖି ବନ୍ଦ କରିଥିଲେ ।

ପ୍ରତି ଟେବୁଲରେ ହ୍ୱିସ୍କି ଓ ରମ୍‌ର ସର୍ଭ ହେଲା ପରେ, ଏକ ସଂଗେ ସମସ୍ତେ ଗ୍ଲାସ ଉଠେଇ ଚିତ୍କାର କଲେ, "ଫର୍ ଦ ଗ୍ରେଟ ମ୍ୟାନ ଚିୟର୍ସ" ଏବଂ ହରିଶଙ୍କର ଗ୍ଲାସ ଉଠେଇ ମନେ ମନେ କହୁଥିଲେ "ତାର ଆତ୍ମାର ସଦ୍‌ଗତି ପାଇଁ ଚିୟର୍ସ !"

ସମସ୍ତେ ହସୁଥିଲେ ଏବଂ ଚିତ୍କାର କରୁଥିଲେ "Long live the great man"

❑ *ସଙ୍କଳ୍ପ : ଜାନୁଆରୀ ୧୯୭୯,*



# ଚତୁର୍ଥ ମୃତ୍ୟୁ

ମୃତ୍ୟୁ: ଏଇଁ କଳା ଚାଦର ଧରି ମୋ ନିକଟକୁ ଆଗେଇ ଆସୁଛି । ପ୍ରତ୍ୟେକ ମଣିଷ ମୃତ୍ୟୁକୁ ଭୟ କରେ ଏବଂ ଜୀବନକୁ ଭଲ ପାଏ । ମୁଁ ମଧ୍ୟ ଜୀବନକୁ ଭଲ ପାଏ । ଏବଂ ତା ସହିତ ମୃତ୍ୟୁକୁ ଭୟ କରେ ନାହିଁ, ବରଂ ମୃତ୍ୟୁକୁ ଆହୁରି ନିବିଡ ଭାବରେ ଭଲପାଏ ।

ମୃତ୍ୟୁ: ଏକ ବିକଟାଳ ରାକ୍ଷସ ପ୍ରାୟ, ଗୋଟାଏ ହାତରେ ପାପ ଓ ପୁଣ୍ୟ ତଉଲିବା ପାଇଁ ତରାଜୁ ଓ ଅନ୍ୟ ହାତରେ ହଳାହଳ ବିଷ ଓ ଅମୃତ, ହୁଏତ ମୁଁ ନିଜେ ମଧ୍ୟ ଜାଣିନି, ଦୁଇଟା ମୋ ପାଇଁ ସମାନ । ବିଷର ପ୍ରଭାବରୁ ମୁକ୍ତ ମୁଁ ଏବଂ ଅମୃତର ପ୍ରତିକ୍ରିୟା ମୋତେ ଅତିମାନବ କରିପାରିବ ନାହିଁ । ମୁଁ ମଣିଷ ହୋଇ ଜନ୍ମ ହୋଇଛି ମରିବି, ସେଇ ମଣିଷ ହୋଇ, ମୃତ୍ୟୁ ପରେ ମଧ୍ୟ ସେଇ ମଣିଷ ରହିବି, ଶରୀର ଦ୍ୱାରା ମଣିଷର ଅସ୍ତିତ୍ୱ ଜାଣିହୁଏ ନାହିଁ ବୋଲି ଅନେକ କହନ୍ତି । ତା ମୋ ମତରେ ମିଛ କଥା । ଅସ୍ତିତ୍ୱହୀନ ହେଲାପରେ ମଧ୍ୟ ମଣିଷ ମରିପାରେନି । ମଣିଷ ଜୀଇ ରୁହେଁ ।

ସେ ଯାହା ହେଉ... ବର୍ତ୍ତମାନ କ୍ଷଣରେ ମୁଁ ଦେଖୁଛି ମୃତ୍ୟୁ ମୋ ନିକଟକୁ ଧିର ପଦକ୍ଷେପରେ ଆଗେଇ ଆସୁଛି । ବାଁ ହାତରେ କ୍ଲୋରଫର୍ମର ତୁଳା ଏବଂ ଡାହାଣ ହାତରେ ଏକ କଳା ଚାଦର ଧରି । ଡାକ୍ତର ଓ ନର୍ସମାନେ ମୋ ମୁହଁକୁ ଅନେଇ ରହିଛନ୍ତି । କିନ୍ତୁ ମୁଁ ସେମାନଙ୍କୁ ଦେଖି ପାରୁନି, ମୋ ଆଖିରେ କେବଳ ମୃତ୍ୟୁର ପ୍ରତିଛବି ।

ଆପଣ ଭାବୁଛନ୍ତି ମୁଁ ଭୟ କରୁଛି ? ନା... ଆପଣ ଭୁଲ୍ ଭାବୁଛନ୍ତି । ମୁଁ ମୃତ୍ୟୁକୁ ଭୟ କରେନା । ମୁଁ ମୃତ୍ୟୁକୁ ଭଲ ପାଏ । କେତେଥର ତାକୁ ଆଲିଙ୍ଗନ କରିଛି । ଏବଂ ସେ ମୋର ସେଇ ଉତ୍ତେଜିତ ଶରୀରର ଆଲିଙ୍ଗନକୁ ଗ୍ରହଣ କରି ମୋତେ ଚାପି ଧରିଛି ଗଭୀର ଆଶ୍ଳେଷ ମଧ୍ୟରେ । ଆଉ ତା ପରେ ମୋର ମୃତ୍ୟୁ ହୋଇ ଯାଇଛି । ହଁ ମୋର ମୃତ୍ୟୁ ହୋଇଯାଇଛି । ଥରେ ନୁହେଁ, ତିନିଥର, ମୁଁ ତିନିଥର ମରିଯାଇଛି ତେଣୁ ମୁଁ ଭୟ କରିବି କାହିଁକି ? ଆପଣ ଆଶ୍ଚର୍ଯ୍ୟ ହେଉଛନ୍ତି ନିଶ୍ଚୟ । ମୁଁ କହିବି ଆପଣ ଏକ ''ହିପୋକ୍ରାଇଟ୍'', କାରଣ ଆପଣ ମଧ୍ୟ କରିସାରିଛନ୍ତି, ମୁଁ ଆପଣ,

ଆମେ ସମସ୍ତେ ମୃତ୍ୟୁ, ପାର୍ଥକ୍ୟ ମାତ୍ର ଏତିକି ଯେ ମୁଁ ମୃତ୍ୟୁକୁ ଭୟ କରେନି, ଆଉ ଆପଣ ମୃତ୍ୟୁକୁ ଭୟ କରନ୍ତି, ମୃତ୍ୟୁର ବିକଟାଳ ରୂପ ମଧ୍ୟରେ ମୁଁ ଦେଖେ ଆଡ୍‌ଭେନ୍‌ଚର । ଆଉ ଆପଣ ଦେଖନ୍ତି ନୈତିକ ପତନ । ମୁଁ ନିଜ ମୃତ୍ୟୁକୁ ଜାଣିପାରେ, ଅନୁଭବ କରିପାରେ, ହେଲେ ଆପଣ ଜାଣି ପାରନ୍ତି ନାହିଁ, ନିଜ ମୃତ୍ୟୁକୁ ଅନୁଭବ କରି ପାରନ୍ତି ନାହିଁ ।

ଆଜି ମଧ୍ୟ ମୋର ମୃତ୍ୟୁ ହେବ । ପୁନର୍ବାର ମୋର ଶରୀରରୁ ଆତ୍ମା ବାହାରି ଯିବ ଏବଂ ତାପରେ ଆଉ ଏକ ନୂତନ ଶରୀର ମଧ୍ୟରେ ପ୍ରବେଶ କରି ହସିବ, କାନ୍ଦିବ, କଥା କହିବ । କିନ୍ତୁ ଏଇଟା ଯଦି ମୋର ସ୍ୱାଭାବିକ ମୃତ୍ୟୁ ହୋଇଥାନ୍ତା ।

ମୁଁ ଜାଣି ପାରୁନି, ଏଇଟା ମୋର ଶେଷ ଓ ସ୍ୱାଭାବିକ ମୃତ୍ୟୁ ନା ଚତୁର୍ଥ ମୃତ୍ୟୁ, ଏହା ପୂର୍ବରୁ ମୁଁ ତିନିଥର ମରି ସାରିଛି, ପୁନର୍ବାର ବଞ୍ଚି ଉଠିଛି... ଅନେକ କୁହନ୍ତି "ଏପରି ଥର ଥର ହୋଇ ମରିବା ଅପେକ୍ଷା ଥରକେ ମରି ଯିବା ଉଚିତ୍" କିନ୍ତୁ କେତେ ଜଣ ଥରେ ମରିଛନ୍ତି ? ମୋ ଆଖି ଆଗରେ ପ୍ରତିଦିନ ଅନେକ ବ୍ୟକ୍ତିତ୍ୱ ମରିଯାଉଛନ୍ତି । ଏବଂ ଆମ ଶରୀରକୁ ପ୍ରତ୍ୟେକ ଦିନ ପରିବର୍ତ୍ତିତ ଭାବେ ଆମେ ଦର୍ପଣରେ ଦେଖୁଛୁ ।

ଯନ୍ତ୍ରଣାର ତରଙ୍ଗ ବେଳାଭୂଇଁକୁ ଛୁଇଁ ଫେରି ଯାଇଛି । ଶରୀରରେ ଅସମ୍ଭବ କମ୍ପନ । ଏଇଟା ନିଶ୍ଚୟ ସ୍ୱାଭାବିକ ମୃତ୍ୟୁ ! ଅନ୍ତିମ ମୃତ୍ୟୁ । ମୁଁ ନିଶ୍ଚିନ୍ତ ହୋଇ ଉଠିଲି । ମୃତ୍ୟୁ ହସୁଛି, ତା ହସ ଦେଖି ମୁଁ ପୁଲକିତ, ପାପ-ପୁଣ୍ୟର ତରାଜୁରେ ନିଜେ ଗୋଟିଏ ପଟେ ବସି ଯିବାକୁ ଇଚ୍ଛା ହେଉଛି ? କଅଣ ମୁଁ କରିଛି, ପାପ ନା ପୁଣ୍ୟ ।

ମୋ ଆଖି ଆଗରେ ଏକ ଡାଇରୀ, ଅତୀତର, ମସ୍ତିଷ୍କରେ ବିଶ୍ଳେଷଣ କରିବାର ଅଦମ୍ୟ ଆଗ୍ରହ, ଆଖି ବନ୍ଦ କରି ଅତୀତର ଅନ୍ଧାର ମଧ୍ୟରେ ପ୍ରବେଶ କରି ପରିଚିତ ମୁଖମାନଙ୍କୁ ଖୋଜି ଖୋଜି କ୍ଳାନ୍ତିରେ ବସି ଯିବାର ଇଚ୍ଛା ଏବଂ ଆକାଶର ଭାରଶୂନ୍ୟ ହୋଇ ଉଡିବାର କାମନା ।

ଡାକ୍ତର ନର୍ସମାନେ ହଠାତ୍ ଖୁସୀ ହୋଇ ଉଠିଲେ, ମୃତ୍ୟୁ ହସି ଉଠିଲା, ଡାକ୍ତର ମୋର ଅବସ୍ଥାର ଉନ୍ନତି ଲକ୍ଷ୍ୟ କରି ଆନନ୍ଦିତ, ଏବଂ ମୃତ୍ୟୁ ମଣିଷର ଆଶା ଦେଖି ହସି ଉଠିଛି, ମୁଁ ଜାଣେ ସବୁ ଜାଣେ ହେଲେ ସେ ଥର ବା ତା ପରେ ପରେ କ୍ରମାଗତ ଭାବେ ଦୁଇଥର ଜାଣିପାରି ନଥିଲି ।

ସେଥର; ମାନେ ମୋର ପ୍ରଥମ ମୃତ୍ୟୁ !

ଶୈଶବ ଓ କିଶୋରାବସ୍ଥାର ସୀମା ପର୍ଯ୍ୟନ୍ତ ମନରେ ଥିଲା ଏକ ପୁଲକ । ଜୀବନର ମାଧୁର୍ଯ୍ୟକୁ ଉପଭୋଗ କରିବାର ସ୍ୱପ୍ନ । ଆଗେଇ ଯିବାର ଦୁର୍ବାର କାମନା, ତାପରେ ଯୌବନ, ବସନ୍ତରେ ଫୁଲ ଫୁଟିଲା... । ବଉଳର ବାସ୍ନାରେ ସହର ମହକି ଉଠିଲା, ଭ୍ରମରମାନେ ଫୁଲ ପାଖରେ ସଂଗୀତ ଗାଇଲେ, ପୃଥିବୀର ବାୟୁମଣ୍ଡଳରେ

ଏକ ଅଜଣା ଦେଶର ବାୟୁ । ଶରୀର ଆପେ ଆପେ ରୋମାଞ୍ଚିତ ହୋଇ ଉଠେ ।

ମନେ ମନେ ମୁଁ ଭାବେ ଯୌବନ ତାହା ହେଲେ ଏଇଟାକୁ କୁହନ୍ତି । ଏତିକି ବେଳେ ତାହା ହେଲେ ଗୁଣୁ ଗୁଣୁ ହୋଇ ଗୀତ ଗାଇବାକୁ, ହ୍ରଦର ଜଳକୁ ଛୋଟ ଛୋଟ ପଥର ଫିଗିବାକୁ, ମୁକ୍ତ ଆକାଶରେ ଉଡୁଥିବା ପକ୍ଷୀ ଯୋଡାକୁ ଦେଖିବାକୁ, ଏକାନ୍ତ କ୍ଷଣରେ ଆକାଶକୁ ଦେଖିବାକୁ, କାହାରି ଏକ ମାଂସଳ ଶରୀରକୁ ନିଜ ଦୃଢ଼ ଶକ୍ତ ବାହୁରେ ବାନ୍ଧି ଦେବାକୁ ଭଲ ଲାଗେ, ଯୌବନ ଯେହେତୁ ମୋତେ ଆକ୍ରମିତ କରି ସାରିଥିଲା । ତେଣୁ ଏସବୁ ମୋତେ ମଧ୍ୟ ଭଲ ଲାଗିଲା ।

ପୁରୁଷର ମୃତ୍ୟୁ ପାଇଁ ନାରୀ ଦାୟୀ, ନାରୀର ମୃତ୍ୟୁ ପାଇଁ ପୁରୁଷ ଦାୟୀ ଏବଂ ମଣିଷର ମୃତ୍ୟୁ ପାଇଁ ମଣିଷ ହିଁ ଦାୟୀ; ନାରୀ ପାଇଁ ପୁରୁଷକୁ ମରିବାକୁ ହୁଏ । ଲକ୍ଷ୍ୟ ପଥ ହରାଇବାକୁ ପଡେ । ବାଟ ଭୁଲି ସାଗର ମଧ୍ୟରେ ଜଳସ୍ରୋତ ପରି ପଥର ଖଣ୍ଡମାନଙ୍କରେ ମୁଣ୍ଡ ପିଟିବାକୁ ପଡେ । ଇତିହାସ ସାକ୍ଷୀ । ଆଖିରେ ଆଖିଏ ସ୍ୱପ୍ନ, ସ୍ୱପ୍ନ ମଧ୍ୟରେ ଅନେକ ଗୋଲାପ ଫୁଲ, ଫୁଲର ଏକ ଉଦ୍ୟାନ, ଏକ ଛୋଟ ଘର, ମୋର ନିଜର କ୍ଷମତା, ମୁଁ ଏକ ସ୍ଥାଣୁ ପଥର । ସେ ଏକ ଚଞ୍ଚଳା ନଦୀ, ଏବଂ କୌଣସି ସାମଂଜସ୍ୟ ନଥାଇ ମଧ୍ୟ ପ୍ରେମର ଅଙ୍କୁରୋଦ୍‌ଗମ ।

ଗାଁ ଛାଡି ସହରକୁ ଯାଇଥିଲି ପାଠପଢି, ବଡ ହେବାର କାମନା ନେଇ, ପଥ ମଧ୍ୟରେ ପ୍ରତିବନ୍ଧକ ଏକ ଖର ସ୍ରୋତା ନଦୀ । ନଦୀର ସୃଷ୍ଟି ଝରଣାରୁ... ଏବଂ ଝରଣା... ମୁଁ ତାକୁ ଭଲ ପାଇ ବସିଲି । ସେ ମୋତେ ଭଲ ପାଇ ବସିଲା, ଦୁହେଁ ଦୁହିଁଙ୍କୁ ଭଲ ପାଇ ବସିଲୁ । ଫୁଲ ହଠାତ୍ ଫୁଟିଗଲା । ଆକାଶର ତାରାମାନେ ଗୀତ ଗାଇଲେ ଏବଂ ମୁଁ ତାକୁ ଚୁମ୍ବନ କଲି । କଇଁ ଫୁଲମାନେ ଲାଜରେ ଝାଉଁଳି ପଡିଲେ । ଚନ୍ଦ୍ରର ଜ୍ୟୋତ୍ସ୍ନା ତା ଅଧରରେ ଜମା ହୋଇଗଲା, ଏବଂ ମୁଁ ସେ ଜ୍ୟୋତ୍ସ୍ନାକୁ ନିଜ ଶରୀରରେ ମିଶାଇ ଦେଲି ।

ସେଥିଲା ସୁଉଚ୍ଚ ଅଟ୍ଟାଳିକାର ବନ୍ଦୀନି, ମୁଁ ଥିଲି ଏ ବିସ୍ତିର୍ଣ୍ଣ ଧରାର ସନ୍ତାନ । ତା'ର ପରିବେଷ୍ଟିନି ଥିଲା ସଭ୍ୟ ବ୍ୟକ୍ତିମାନଙ୍କର, ମୁଁ ଭୁଲି ଯାଇଥିଲି ନିଜର ସ୍ଥାନ, ନିଜ ପରିବାରର ଅବସ୍ଥା ମୁଁ ଭୁଲି ଯାଇଥିଲି, ବାପା, ମା, ପାଠ ପଢାଇବା ପାଇଁ ସହରକୁ ପଠାଇଥିଲେ, କିନ୍ତୁ ନାରୀର ଆକର୍ଷଣ ଓ ପ୍ରେମ ମୋତେ ପଥରୁ ଖସାଇ ଦେଲା ।

ଅଭିଜାତ୍ୟ ଓ ଆଡମ୍ବର ପୂର୍ଣ୍ଣ ସମାଜ ସହିତ ମୋତେ ତାଳ ଦେବାକୁ ପଡିଲା, ମୁଁ ଯାହା ନୁହେଁ, ତାହା ହେବାକୁ ଚେଷ୍ଟା କଲି, ଚେଷ୍ଟା ନୁହେଁ ବରଂ ଛଳନା କଲି, ଏବଂ ଆଖି ବନ୍ଦକରି ତା ସହିତ ଆଗେଇ ଗଲି, ଭବିଷ୍ୟତ ବିଷୟରେ ବିଶ୍ଳେଷଣ ମଧ୍ୟ କରିବାକୁ ସେତେବେଳେ ଭୟ ଲାଗୁଥିଲା, ସେ କିନ୍ତୁ ମୋ ପରିବାର ବିଷୟରେ କିଛି ଜାଣିପାରି ନଥିଲେ, ସେ ସୁଯୋଗ ହିଁ ତାକୁ ଦେଇ ନଥିଲି, ହୁଏତ ସେଇ ସୁଯୋଗ

ସେ ପାଇଥିଲେ, ତାର ଯେଉଁ ଟିକକ ସାନିଧ ମୁଁ ପାଇପାରିଛି, ତା ପାଇପାରିନଥାନ୍ତି ଏବଂ ପ୍ରଥମ ଥର ପାଇଁ ମୁଁ ଏତେକଷ୍ଟ ଦାୟକ ମୃତ୍ୟୁ ବରଣ କରି ନ ଥାନ୍ତି ।

ସେଦିନ କଥା ମୋର ଠିକ୍ ମନେ ଅଛି । ତା ଘରେ କୌଣସି ଏକ ପାର୍ଟି ଥାଏ । ମୋତେ ସପ୍ତାହକ ଆଗରୁ ନିମନ୍ତ୍ରଣ କରି ସାରିଥାଏ ଏବଂ ପ୍ରତିଦିନ ଥରେ ଥରେ ସ୍ମରଣ କରାଇ ଦେଇଥାଏ । ମୁଁ କିନ୍ତୁ ଦ୍ୱନ୍ଦ୍ୱରେ ପଡି ଭାବୁଥାଏ । ଯିବି କି ଯିବି ନାହିଁ ।

ଅବଶେଷରେ ମୋତେ ଯିବାକୁ ହିଁ ପଡିଥିଲା, ଚାକଚକ୍ୟ ଓ ଆଡମ୍ବର ଦେଖି ଆଖି ଝଲସି ଉଠିଥିଲା, ପାର୍ଟିର ମଝିରେ ତା ପିତାଙ୍କ ପ୍ରଶ୍ନରେ ମୁଁ ଜୀବନରେ ପ୍ରଥମ ଥର ପାଇଁ ମିଛ କହିଥିଲି, କହିଥିଲି, "ଗାଁରେ ଆମର ଜମିଦାରୀ ଅଛି ।"

ସେଇଟା ଥିଲା ମୋର ଜୀବନର ପ୍ରଥମ ମିଛ, ମୋର ପ୍ରଥମ ମୃତ୍ୟୁ । ତା ପର ଠାରୁ ମୁଁ ଏକ ମିଛର ପ୍ରତିମୂର୍ତ୍ତି ହୋଇ ପଡିଲି । କୁହନ୍ତି ଶିଶୁର ମସ୍ତିଷ୍କ ଏକ ସଫା ସ୍ଲେଟ ପରି । ସ୍ଲେଟ ପରି ବୟସ ସହିତ ଅନୁଭୂତି ବଢେ ଏବଂ ମସ୍ତିଷ୍କରେ ଦାଗ ପଡେ । ଗାର ପଡେ । ପ୍ରଥମ ଥର ମିଛ କହିଲା ବେଳେ ଭାରି ଆନନ୍ଦ ଲାଗିଥିଲା । ତା ପିତାଙ୍କ ଆଖିରେ ମୋ ପାଇଁ, ମୋ ଉତ୍ତର ଶୁଣିଲା ପରେ ଯେଉଁ ସମ୍ମାନର ଭାବ ଫୁଟି ଉଠିଥିଲା, ତାକୁ ଦେଖି ମୋ ଛାତି ଫୁଲି ଉଠିଥିଲା, ମିଛ କହିଲେ ଏତେ ସମ୍ମାନ ମିଳେ ! ମୁଁ କିନ୍ତୁ ଜାଣି ନଥିଲି ଯେ ମୁଁ ମରିସାରିଛି । ପ୍ରଥମ ମୃତ୍ୟୁ ହିଁ ବରଣ କରି ସାରିଛି ।

ତାପରେ ମୁଁ ମିଛ କହିଲି, ଥରେ ମୃତ୍ୟୁ ବରଣ କରି ସାରିଲା ପରେ ଆଉ କଅଣ ପରିସ୍ଥିତି ପାଇଁ ଭୟ କରିହୁଏ ?

ମୋର ସାବଧାନ ହୋଇ ଯିବାର ଥିଲା, କିନ୍ତୁ ମୁଁ ସାବଧାନ ହୋଇ ପାରିଲି ନାହିଁ । ଚୁମ୍ବନର ନିଶା ମୋତେ ମତୁଆଲା କରି ସାରିଥିଲା, ହଠାତ୍ ଏକ ଆଘାତ । ଶକ୍ତ ଆଘାତ ଏବଂ ଦ୍ୱିତୀୟ ମୃତ୍ୟୁ, ହଁ ଗାଁରେ ସେଦିନ ସେଇଟା ଥିଲା ମୋର ଦ୍ୱିତୀୟ ମୃତ୍ୟୁ ।

ଛୁଟିରେ ଗାଁକୁ ଗଲି । ମୋର ପରିବର୍ତ୍ତନ ରଂଗ ଦେଖି ପରିବାରର ପ୍ରତ୍ୟେକ, ଗାଁର ପ୍ରତ୍ୟେକଙ୍କର ଆଶ୍ଚର୍ଯ୍ୟ ଭାବକୁ ମୁଁ ସ୍ୱାଭାବିକ ଭାବେ ଗ୍ରହଣ କରି ନେଇଗଲି । ସହରରେ ଥିବା ଯୌବନର ପ୍ରଥମ ଛଳନାକୁ, ଯାହାକୁ ପ୍ରେମ କୁହନ୍ତି, ଛୁଟିରେ କାଶ୍ମୀର ଯାଉଛି ଏବଂ ଫେରିଲା ବେଳେ ତା ପାଇଁ ଅନେକ ଉପହାର ଆଣିବାର ପ୍ରତିଶ୍ରୁତି ଦେଇ ଗାଁର ସେଇ ଅଧାଛପର ଭଡା କକ୍ଷ ମଧ୍ୟରେ ବସି ଚନ୍ଦ୍ର ମଧ୍ୟରେ ତାକୁ ସ୍ପଷ୍ଟ ଦେଖି ପାରୁଥିଲି । ଆଃ । କେଡେ ଆନନ୍ଦ ମୟ ଥିଲା ସେ ଦିନଗୁଡାକ । ଚିନ୍ତା କିଛି ନାହିଁ । ଭୟ କିଛି ନାହିଁ ସବୁ ଖାଲି ଭାବପ୍ରବଣତାର ଜୁଆରରେ ବୋହି ଯିବାର ଉଚ୍ଛ୍ୱାସରେ ଯେମିତି ଭାସି ଚାଲିଛି ।

ମୁଁ କିଛି ଭାବୁ ନ ଥିଲି । କେବଳ ତା କଥା ଭାବୁଥିଲି । ବାପା ସହିତ କ୍ଷେତକୁ ଯିବାକୁ ମୋର ଶିକ୍ଷିତ ଓ ଉଡନ୍ତା ମନ ଗ୍ରହଣ କରି ପାରିଲା ନାହିଁ । ଘର ଡିହ ଓ ଜମି, ଜମିଦାର ପାଖରେ ବନ୍ଧକ ପଡିଥିଲା । ମୁଁ କିନ୍ତୁ ସ୍ୱପ୍ନ ଦେଖୁଥିଲି । ଛୁଟୀର ଶେଷକୁ ତାକୁ ଉପହାର କେମିତି ଦେବି, ସେଇ ଚିନ୍ତାରେ ମୁଁ ଦିନକୁ ଦିନ ଝଡି ଯାଉଥିଲି, ଉପାୟ କିଛି ଦେଖା ଯାଉ ନଥିଲା ।

ମୋ ଗାଁରୁ ଆସିବା ପୂର୍ବଦିନ । ସେଦିନ ସକାଳୁ ଜମିଦାର ଚୌକିଦାର ଆସି ବାପାଙ୍କୁ ଡାକି ନେଇ ଗଲା । ଦ୍ୱିପ୍ରହରକୁ ବାପା ଫେରିଲେ । କହିଲେ, ଜମିଦାର-ଟଙ୍କା ସଂଗେ ସଂଗେ ନ ଦେଲେ ଘରଡିହ ନିଲାମ କରିନେବ, ମୁଁ କିଛି କହିଲି ନାହିଁ ।

ଗାଁ ପୋଖରୀ ତୁଠାରେ ବସି ସବୁ କିଛି ଛାଡି ଦୂରକୁ ଖୁବ୍ ଦୂରକୁ ଚାଲି ଯିବା ପାଇଁ ଦୃଢ ନିଶ୍ଚୟ କରି ଘରକୁ ଫେରି ଦେଖିଲି ବୋଉ ନିଜର ସମସ୍ତ ଅଳଙ୍କାର କାଢି ବାପାଙ୍କ ହାତକୁ ବଢେଇ ଦେଇ କହୁଛି । "ଅବନୀ ପାଠ ପଢି ଚାକିରୀ କଲେ, ଏସୁଣି ଫେରି ଆସିବ, ପ୍ରଥମେ ଘର ଓ ଜମି, ଏସବୁ ନେଇ ବିକିଦିଅ, ଯାହା ଟଙ୍କା ଆସିବ ତାକୁ ଜମିଦାରକୁ ଦେଇ ଦିଅ । ବାପା ଲୁହ ଛଳ ଛଳ ଆଖିରେ ସେ ଗହଣାକୁ ଛିଣ୍ଡା ଗାମୁଛାରେ ବାନ୍ଧୁ ବାନ୍ଧୁ ଆକାଶକୁ ଅନେଇ କହିଲେ, "ଭଗବାନ ଦିନେ ଆମ ଦୁଃଖ ବୁଝିବେ । ଅବନୀ ଆମ ଭାଗ୍ୟ ନିଶ୍ଚୟ ବଦଳାଇ ଦେବ ।"

ହଁ ! ମୁଁ ତାଙ୍କ ଭାଗ୍ୟ ବଦଳାଇ ଦେଲି । ସବୁ ଦୁଃଖ କଷ୍ଟରୁ ମୁକ୍ତି କରିଦେଲି । ମୋ ଆଖି ଆଗରେ ଥିଲା ସେଇ ଗାମୁଛାରେ ବନ୍ଧା ଗହଣା, ଏବଂ ସକାଳୁ ମୋର ଯିବାର ଥିଲା । ଆଉ ଏପଟେ ଘର ଓ ଜମି । ସେ ପଟେ ସହରର ଛଳନା ରୂପୀ ପ୍ରେମର ଉତ୍ସ, ଗୋଟାଏ ପଟେ ନିଲାମ ଏବଂ ଆରପଟେ ତିରସ୍କାର ଘୃଣା, ତାଚ୍ଛଲ୍ୟ ସହି ପାରିବି ନାହିଁ । ତା'ପରେ ରାତ୍ରିର ଶେଷ ପ୍ରହରରେ ମୁଁ ସେ ଗାମୁଛାକୁ ବାକ୍ସରେ ରଖି ତାଲା ପକାଇଲା ବେଳେ ମୁଁ ଦ୍ୱିତୀୟ ଥର ପାଇଁ ମୃତ୍ୟୁ ବରଣ କଲି । ଜୀବନର ପ୍ରଥମ ଚୋରୀ ଏବଂ ଜୀବନର ଦ୍ୱିତୀୟ ମୃତ୍ୟୁ । ବଡ ଶାନ୍ତି ଲାଗିଲା । ସକାଳୁ ଗାଁ ଛାଡି ସହରରେ ପହଞ୍ଚିବା ପାଇଁ ବ୍ୟଗ୍ର ହୋଇ ଉଠିଲି । ଗହଣା ବିକି ଯେଉଁ ଦିନ, ପ୍ରେମର ପାଦତଳେ ଉପହାରର ପ୍ୟାକେଟ ରଖି ଆନନ୍ଦରେ ମତୁଆଲା ହୋଇ ନିଜ ରୁମ୍‌କୁ ଫେରିଲି, ସେହିଦିନ ଗାଁରୁ ଚିଠି ପାଇଲି ଘର ଓ ଜମି ନିଲାମ ହୋଇ ଯାଇଛି, ଦୁଃଖରେ ମୋ ବାପା ମା ଗାଁ ଛାଡି କୁଆଡେ ଚାଲି ଯାଇଛନ୍ତି ।

ସତ କହୁଛି, ମୋତେ ଦୁଃଖ ଲାଗିଲା ନାହିଁ, ଯାହା ହେଉ ମୁକ୍ତି ମିଳିଗଲା, ଏବଂ ଥରେ ଚୋରୀ କଲାପରେ ଆଉ ଚୋରୀ ପାଇଁ ଭୟ ରହିଲା ନାହିଁ । ନିଜର ଦରକାର ପାଇଁ ପ୍ରତ୍ୟେକ ଥର ମୁଁ ଚୋରୀ କଲି ।

ତାପରେ ଦିନେ ଶୁଣିଲି ମୋ ପ୍ରେମର ବିବାହ ହେଉଛି । ଭାଂଗି ପଡିଲି । ମୋ ଆଖି ଆଗର ସମସ୍ତ ଆଲୋକ ଲିଭିଗଲେ । ଅନ୍ଧାର ମଧ୍ୟରେ ମୁଁ କିଛି ଖୋଜି ପାଇଲି

ନାହିଁ । ନିଜକୁ ନିଜର ଛାଇକୁ, ନିଜର ଅତୀତକୁ, ନିଜର ବର୍ତ୍ତମାନ ଓ ଭବିଷ୍ୟତ ସହିତ ସେଇ ଯୁବତୀଟିକୁ । ଯାହାକୁ ମୁଁ ନିଜ ଆଲିଙ୍ଗନ ମଧ୍ୟରେ ବାନ୍ଧି ରଖି ଅନେକ ଥର ଚୁମ୍ବନ କରିଥିଲି, ସେଇ ଅନ୍ଧାର ମଧ୍ୟରେ ଖୋଜି ଖୋଜି ପାଇଲି ନାହିଁ ।

ବିବାହର ପୂର୍ବ ଦିନ ତାକୁ ଦେଖା କରି ପଚାରିଲି, ସେ କିଛି କହିଲା ନାହିଁ, ନୀରବରେ ମୁଣ୍ଡ ତଳକୁ କରି ନଖରେ ମାଟିରେ ଗାର ପକାଉ ଥିଲା । ଖୁବ୍ ସୁନ୍ଦର ଦେଖାଯାଉଥିଲା ସେଦିନ, ଶେଷରେ କହିଲା, ‘‘ମୋର ଦୋଷ କିଛି ନାହିଁ । ପିତା ମାତାଙ୍କର ଆଦେଶ ମାନି ନେବାଟା ଏକ ହିନ୍ଦୁ କନ୍ୟାର ଉଚିତ ପ୍ରତିଦାନ, ସେମାନଙ୍କ ସ୍ନେହର ।’’ ମୁଁ ପ୍ରତିବାଦ କଲି ନାହିଁ । କାରଣ ତାକୁ ଭଲ ପାଉଥିଲି, ତା ପାଇଁ ପ୍ରେମର ଅର୍ଥ ଯାହା ଥାଉନା କାହିଁକି, ମୋ ପାଇଁ କିନ୍ତୁ ପ୍ରେମ ଥିଲା ଏକ ମନ ମତାଣିଆ ସୁଗନ୍ଧ । ଯାହା ଚିରଦିନ ପାଇଁ ହୃଦୟରେ ଏକ ଦାଗ ଛାଡିଯିବ । ଯେଉଁଥିରେ ଥିବ ତ୍ୟାଗର ଭାବନା, ଅନ୍ୟ ପାଇଁ ଜଳିବାର ଆନନ୍ଦ । ତାହାହିଁ ତ ପ୍ରେମ ।

ପରେ ଶୁଣିଲି, ଯାହାକୁ ସେ ବିବାହ କଲା ସେ ମଧ୍ୟ ଅଟ୍ଟାଳିକାର ଏକ ବନ୍ଦୀ, ଯେତେ ଛଳନା କଲେ ମଧ୍ୟ, ମିଛ କହିଲେ ମଧ୍ୟ । ଚୋରି କଲେ ମଧ୍ୟ ମୌଳିକ ସର୍ବଦା ମୌଳିକ । ମୁଁ କଅଣ ବା କରିପାରିଥାନ୍ତି ! ବଞ୍ଚିବାର ଉପାଦାନହୀନ ହୋଇ ମୁଁ ମଦ ପିଇପାରିନି, କବିତା ଲେଖିପାରିନି ପରିଚିତମାନଙ୍କ ଆଗରେ ସେଇ ଯୁବତୀ ଠାରୁ ପ୍ରତିଶୋଧ ନେବା ପାଇଁ ବୃଥା ଦମ୍ଭ ଦେଖାଇ ପାରିନି, କିନ୍ତୁ ପ୍ରକୃତରେ କିଛି କରି ପାରିବି ନାହିଁ ।

ସେ ସୁଖ ଚାହୁଁଥିଲା, ମୁଁ ପ୍ରେମ ଚାହୁଁଥିଲି । ସେ ସୁଖ ପାଇଲା, କିନ୍ତୁ ମୁଁ ପ୍ରେମ ପାଇ ପାରିଲି ନାହିଁ । ତେଣୁ ତାକୁ ଘୃଣା କରି ନିଜକୁ ସାନ୍ତ୍ୱନା ଦେଲି । ଏବଂ ସେଦିନ, ଯେଉଁଦିନ ତୃତୀୟ ଥର ପାଇଁ ମୋର ମୃତ୍ୟୁ ହେଲା, ମୁଁ ତାକୁ ବିବାହର ପ୍ରାୟ ତିନିମାସପରେ, ତା ଘରେ ପୁନର୍ବାର ଦେଖିଲି, ତା ସ୍ୱାମୀ ଥିଲେ ମୋର ଅଧ୍ୟାପକଙ୍କ ବନ୍ଧୁ, ଏକ ସମ୍ବାଦ ନେଇ ମୋତେ ତାଙ୍କ ଘରକୁ ଯିବାକୁ ପଡିଥିଲା, ସେଠି ତାକୁ ଦେଖି ମୁଁ ନିର୍ବାକ ହୋଇ ଯାଇଥିଲି । ବିବାହ ପରେ ନାରୀମାନେ ଖୁବ୍ ସୌନ୍ଦର୍ଯ୍ୟବତୀ ହୋଇ ଉଠନ୍ତି, ସେ ଯେମିତି ମୁକ୍ତ ପାଲଟି ଯାଇଥିଲା, ଖାଲି ଜ୍ୟୋତି । ସେ ଜ୍ୟୋତି ଭିତରେ ହଜିଯାଇ ଯେତେବେଳେ ମୁଁ ଜାଣିଲି, ତା ସ୍ୱାମୀ ଅନୁପସ୍ଥିତ ଏବଂ ଘରେ ସେ ଏକା, ସେତେବେଳେ ମୋ ଭିତରେ ହିଂସ୍ର ବ୍ୟକ୍ତି ପ୍ରତିଶୋଧ ନେବା ପାଇଁ ଆଗେଇ ଆସିଲା, ମୁଁ ସବୁ ଭୁଲି ଗଲି ।

ତା ପ୍ରତିବାଦର ଅର୍ଥ କିଛି ହୁଏନା, ପୁରୁଷ ଯେତେବେଳେ ହିଂସ୍ର ହୋଇଯାଏ କାମନାର ନିଶାରେ ମତୁଆଲା ହୋଇ ଉଠେ, ସେତେବେଳେ ନାରୀର ଆପତ୍ତି କିଛି ମାନେ ରଖେନା, ଏବଂ ତାର ପ୍ରତିବାଦ କିଛି ମାନେ ରଖିଲା ନାହିଁ, ମୁଁ ତାକୁ ପ୍ରତିବାଦ ସତ୍ତ୍ୱେ ବେଦ [illegible] ଟାଣି ନେଲି ।

ଫେରିଲା ବେଳେ ମୁଁ ମରି ସାରିଥିଲି, ତୃତୀୟ ଥର ପାଇଁ, ସେତେବେଳେ ସେଇ ବିବାହିତା ନାରୀଟି ମୋତେ ପ୍ରଶ୍ନଭରା ଚକ୍ଷୁରେ ଅନେକ କହିଲା, ‘‘ପୁରୁଷକୁ ନିଜ ଅଧିକାର ନିଜେ ନେବାକୁ ହୁଏ । ନାରୀ କେବେ ନିଜ ମୁଖ ଖୋଲି ଆମନ୍ତ୍ରଣ ଜଣାଏ ନି ? ମୁଁ ମୁଣ୍ଡ ତଳକୁ କଲି । ସେ ମୋ ଓଠରେ ଚୁମ୍ବନ ଦେଇ ହସି ହସି କହିଲା, ‘‘ବର୍ତ୍ତମାନ ଏତେ ଲାଜ ? ଆଉ ସେତେବେଳେ...

ସେ ହସୁଥିଲା, କିନ୍ତୁ ମୁଁ ଶୁଣିପାରୁ ନଥିଲି, କାରଣ ମୁଁ ମରି ସାରିଥିଲି, ଏକ ମୃତବ୍ୟକ୍ତି କେବେ କିଛି ଶୁଣିପାରେନି କିଛି କରିପାରେନି । କିଛି କହିପାରେନି, କିଛି ଦେଖି ପାରେନି ।

ତିନିଥର ମୃତ୍ୟୁ ପରେ ଆଉ ମୁଁ କଅଣ ଚତୁର୍ଥ ବା ଶେଷ ମୃତ୍ୟୁକୁ ଭୟ କରିବି ?

ଡାକ୍ତରମାନେ ଶୋଇ ପଡିଛନ୍ତି । ନର୍ସମାନେ ମୋତେ ଘେରି ବେଡ୍‌ରେ ମୁଣ୍ଡ ଦେଇ ଶୋଇ ପଡିଛନ୍ତି । ତୃତୀୟ ଥର ମୃତ୍ୟୁ ପରେ ଏକ ଅନ୍ତରାଳ ଏବଂ ଏହାପରେ ମୋର ପୁନର୍ବାର ମୃତ୍ୟୁ ହୋଇ ନଥିବା ଯୋଗୁଁ, ମନରେ ଏକ ଶୋଷ ଭରି ଯାଇଛି, ସେଥି ପାଇଁ ଚତୁର୍ଥଥର ମୃତ୍ୟୁ ବରଣ କଲେ କ୍ଷତି କିଛି ହେବ ନାହିଁ ।

ସମସ୍ତେ ଶୋଇ ପଡିଛନ୍ତି, ମୁଁ ଉଠି ଠିଆ ହୋଇଛି ମୃତ୍ୟୁ ଚାଦର ଧରି ମୋ ଦିଗକୁ ଆଗେଇ ଆସୁଛି ଏବଂ ମୋ ଆଖି ଆଗରେ ସେଇ ସୁନ୍ଦରୀ ନର୍ସଟି ହସି ଉଠୁଛି ।

□ *ଆଜିର ଗଳ୍ପ : ଡିସେମ୍ବର ୧୯୭୨*





# ଝଡ଼

ସପନି ମଳିକ ସବୁଦିନ ଅପେକ୍ଷା ସେ ଦିନ ଟିକେ ଶିଘ୍ର ଉଠିଲା । ଘରେ ତ କେହି ନାହାନ୍ତି, ମଣିଷ ଠାରୁ ନେଇ ପଶୁ ପକ୍ଷୀ ପର୍ଯ୍ୟନ୍ତ । ଘର କହିଲେ ତାଳପତ୍ର ଛାଆ ହୋଇଥିବା କୁଡିଆଟିଏ । ତାକୁ ମଧ ସପନି ଘର କୁହେ । ଯେମିତି ଚୌଧୁରୀ ବାବୁଙ୍କୁ ସେ ତାର ମାଲିକ କୁହେ । ଖାଲି କୁହେ ନାହିଁ ଜୋର ଦେଇ କୁହେ । ଚୌଧୁରୀ ବାବୁ ଏକଦା ଖୁବ, ସ୍ୱଛଳ ଥିଲେ । ସମୟଚକ୍ରର ଘୂର୍ଣ୍ଣନରେ ଆଜି ନିସ୍ୱଃ । ସଂପୂର୍ଣ୍ଣ ଅଭାବଗ୍ରସ୍ଥ ଦରିଦ୍ର । ଏକମାତ୍ର ପୁତ୍ର ବ୍ୟବସାୟ ନାଁରେ ସମସ୍ତ ସଂପତ୍ତିକୁ ଧ୍ୱଂସ କରି ଶେଷରେ ବିବାହିତା ସ୍ତ୍ରୀ, ଜନ୍ମିତ ସନ୍ତାନ ମାନଙ୍କୁ ପରିତ୍ୟାଗ କରି ଓ ନିଜର ବୃଦ୍ଧ ପିତାମାତାଙ୍କୁ ତିରସ୍କାର କରି ଆଜି କେଉଁ ଏକ ସହର ଶେଷର ଅପନ୍ତରା ବସ୍ତିରେ ମାତାଲ ହୋଇ ଗଡୁଛି । ନିଃସ୍ୱ ଦରିଦ୍ର ଚୌଧୁରୀ ବାବୁ ନିଜର ଅଭିଜାତ୍ୟ ଓ ବଂଶ ପରମ୍ପରାକୁ ଜଳାଞ୍ଜଳୀ ଦେଇ ମୂଲ ଲାଗି ପରିବାରର ପେଟ ପୋଷନ୍ତି । ୧୫ ବର୍ଷର ବଡ ନାତି ଧୋବା ସାହି ନାରଣ ସହିତ ବିଦେଶ ଯାଇଛି କାମ ଶିଖି, ୧୨ ବର୍ଷର ଦ୍ୱିତୀୟ ନାତି ଗାଁର କେତେକ ଘରର ଗାଈ ରଖି ଦିନକୁ ୧୫ ଟଙ୍କା ଆଣେ । ସେଥିରେ ସଂସାର ଚଳେ, ଆଉ ବୋଲ ହାକ୍ ପାଇଁ ସପନି ସଦା ସର୍ବଦା ତତ୍ପର, ନିଜ ପେଟ ଭୋକ ତାକୁ ଚୌଧୁରୀ ବାବୁଙ୍କ ପରିବାରକୁ ଦେଖି ମରିଯାଏ । ଖାଇବା ପାଖରେ ବସିଲେ ତାକୁ ଭାରି କାନ୍ଦ ଲାଗେ ଓ ତାର ଭୋକ ଆପେ ଆପେ ମରିଯାଏ । ସପନିକୁ ପ୍ରାୟ ୬୫ ବର୍ଷ ଓ ଚୌଧୁରୀ ବାବୁଙ୍କୁ ୭୨ ବର୍ଷ ହେବ । ଜନ୍ମରୁ ସପନି ଚୌଧୁରୀ ବାବୁଙ୍କ ଘରେ ଥିଲା, ସପନିର ବାପା ଚୌଧୁରୀ ବାବୁଙ୍କ ଘରେ କୋଠିଆ ଥିଲ ତାଙ୍କ ଅନ୍ତେ ସପନି ହେଲା କୋଠିଆ । ଜମି ସବୁ ଚାଲିଗଲା ପରେ ସପନିର ... ସମସ୍ତେ ଆର ପୁରକୁ ଚାଲିଗଲେ, ସପନି ଚୌଧୁରୀ ବାବୁଙ୍କ ମୁହଁକୁ ଚାହିଁ ସବୁ ଭୁଲିଲା, କଅଣ ଥିଲେ, କଅଣ ହୋଇଗଲେ ? ସେ ନିଜ ଆଖିରେ ଦେଖିଛି । ଚୌଧୁରୀ ବାବୁ କି ଅୟସରେ ଥିଲେ । କିନ୍ତୁ ସମୟ ଓ ଭାଗ୍ୟକୁ କେହି କେବେ ବଦଳାଇ ପାରିଛି ? ଆଜି ସବୁ ଶେଷ ହୋଇ ଯାଇଛି ।

ଦାନ୍ତ ଘଷୁ ଘଷୁ ସପନି ■ ନିଜ ଡିହ ଉପରୁ ଚୌଧୁରୀ ବାବୁଙ୍କ ଘରଆଡେ ଚାହିଁ ଦୀର୍ଘଶ୍ୱାସ ତ୍ୟାଗ କଲା, ଗତ ସଂଧ୍ୟାରେ ଚୌଧୁରୀ ବାବୁ ସପନିକୁ କହିଥିଲେ, ''ସପନି ସକାଳୁ ଟିକେ ଶିଘ୍ର ଆସିବୁ'' ଅଣ୍ଡିରା ଦାମୁରୀଟିକୁ ହାଟକୁ ନେବୁ, ଟଙ୍କା ଆଣିଲେ ନାତୁଣୀ ଝୁନୁର ସ୍ୱୀକାର ଯିବ ଜାଣିଛୁ ତ'' ସପନି ମୁଣ୍ଡ ହଲାଇ ସମ୍ମତି ଜଣାଇଥିଲା, ରାତି ସାରା ତାକୁ ଭଲ ନିଦ ମଧ ହୋଇ ନଥିଲା, ବଡ ଦାୟିତ୍ୱ କଥା, ଚୌଧୁରୀ ବାବୁଙ୍କ ଏକମାତ୍ର ନାତୁଣୀ ଝୁନୁକୁ ସେ ଖୁବ୍ ସ୍ନେହ କରେ । ପିଲା ଦିନେ ସପନିକୁ ଜମା ଛାଡୁ ନ ଥିଲା, ତା'ରି ବାହାଘର । ଦୁଃଖ ସମୟରେ କେହି ଆସି ନ ଥିଲେ ପାଖକୁ । କେହି ବନ୍ଧୁ ବାନ୍ଧବ ପାଖ ମାଡି ନଥିଲେ । ଝୁନୁକୁ ୨୨ ବର୍ଷ ହେଲାଣି । ସପନି ଓ ଚୌଧୁରୀ ବାବୁ ଖୁବ୍ ଦୌଡି ଦୌଡି, ଖୋଜି ଖୋଜି, ... ଗାଁରେ ସୋସାଇଟି ଅଫିସରେ ଟେମ୍ପରାରୀ ଭାବେ ଥିବା ପିଅନ ସତ୍ୟବାଦୀ ସହିତ ବିବାହ ଠିକ୍ କରି ଥିଲେ । ବର ପକ୍ଷର ଦାବୀ ମାତ୍ର ତିନି ହଜାର ଟଙ୍କା, ଯାହାକୁ ନେଇ ସତ୍ୟବାଦୀ ସୋସାଇଟିରେ ଜମା ଦେଲେ ପରମାନେଣ୍ଟ ହେବ । ତେଣୁ ଚୌଧୁରୀ ବାବୁ ଓ ସପନି ଦୁହେଁ ଶେଷ ସମ୍ବଳ ଅଣ୍ଡିରା ଦାମୁରୀ ଟିକୁ ଯତ୍ନରେ ବଢାଇଥିଲେ ପ୍ରତିଦିନ କଅଁଳ ଘାସ ଖାଇବାକୁ ଦେଇ, ଆଜି ସେଇଟି ହାଟକୁ ଯିବ ବିକ୍ରି ହେବା ପାଇଁ ।

ତା' ଛାତି ଭିତରଟା କୋହରେ ଭରିଗଲା । ଚୌଧୁରୀ ବାବୁଙ୍କ କୁଳାଙ୍ଗାର ପୁଅର ବାହାଘର ଆଖ ପାଖ ଦଶଟା ଗାଁ ମଧରେ ଆଜି ପର୍ଯ୍ୟନ୍ତ ଉଦାହରଣ ହୋଇ ରହିଛି । ଆଜି ତା'ର ଝିଅର ବାହାଘର କି ପ୍ରକାର ହେବାକୁ ଯାଉଛି ତାହା ହିଁ କେବଳ ସପନିର ସଂପୂର୍ଣ୍ଣ ଚେତନା ଶକ୍ତିକୁ ଗ୍ରାସ କରି ପକାଇଥିଲା । ସେ ମୁହଁ ଧୋଇ, ଭଗବାନଙ୍କ ଉଦ୍ଦେଶ୍ୟରେ ଉପରକୁ ହାତ ଟେକି ମନେ ମନେ ପ୍ରାର୍ଥନା କଲା । ''ହେ ପ୍ରଭୁ, ଶତ୍ରୁକୁ ମଧ ଏଦଶା କେବେ ନ ଦିଅ । ଝୁନୁର ବାହାଘର ସୁରୁଖୁରୁରେ ହୋଇଯାଉ । ଚୌଧୁରୀ ବୁଢା ତା, ଶେଷ ଦାୟିତ୍ୱରୁ ମୁକ୍ତି ହେଉ । ପୂର୍ବ ଦିଗରେ ଲାଲ ରଂଗ ଦେଖି ସେ ଚଞ୍ଚଳ ହୋଇ ଉଠିଲା । ଗୋରୁ ହାଟ ପ୍ରାୟ ୧୨ ମାଇଲ, ୧୨ ମାଇଲ ଗୋରୁକୁ ଧରି ଚାଲିଚାଲି ଯିବ । ୨ଟା ନଦୀ ପାର ହେବାକୁ ହେବ । ଶିଘ୍ର ନ ବାହାରିଲେ ହାଟରେ ଠିକ୍ ସମୟରେ ପହଞ୍ଚି ହେବ ନାହିଁ । ଖରାଦିନ, ଖରାରେ ବୁଢାଲୋକ ଚାଲିପାରିବ ନାହିଁ । ସଂଜ ହୋଇଗଲେ ତା' ଆଖିକୁ ମଧ ଭଲ ଦୃଶ୍ୟ ହେଉ ନାହିଁ । ରାତିରେ ବିଲ୍‌କୁଲ୍ ଦେଖାଯାଏ ନାହିଁ । ତାପରେ ଏତେ ଗୁଡାଏ ଟଙ୍କା ଧରି ଏକାକୀ ଫେରିବା ମଧ ନିରାପଦ ନୁହେଁ । ଗାମୁଛାରେ ମୁହଁ ପୋଛି ସେ ଚୌଧୁରୀ ବାବୁଙ୍କ ଘର ଆଡେ ପାଦ ପକାଇଲା ।

ଗୋରୁର ରସି ତା' ହାତରେ ଧରାଇ ଦେଇ ଚୌଧୁରୀ ବାବୁ କହିଲେ, ''ତୋତେ ସବୁ ଲାଗିଲା ସପନି, ଝୁନୁର ବିବାହ ପରେ ମୁଁ ଆଉ ତୋ ଖୁଡି ଦୁହେଁ ପୁରୀ ଚାଲି ଯାଇ ଦୀକ୍ଷା ନେଇ, ସେଇ କାଳିଆ ଚରଣରେ ମୁକ୍ତି ପାଇଯିବୁ । ଶିଘ୍ର ଏ ଦାୟିତ୍ୱରୁ ମୁକ୍ତ ହେବାକୁ ଚାହେଁରେ ।''

ସପନିର ଆଖିରେ ଲୁହ । କୋହ ଭରା ସ୍ୱରରେ ସେ କହିଲା ''ତମର ଏଇ ଯେଉଁ କଥା ନା ଦାଦା, ମୋତେ ଜମାଭଲ ଲାଗେ ନାହିଁ । ନାତୁଣୀ ବାହାଘର ପରେ

ତୁମେ ମୁକ୍ତି ପାଇଲ କେମିତି ? ନାତି ବାହାଘର କଅଣ ତୁମ ଦାୟିତ୍ୱ ନୁହେଁ ? ଚୌଧୁରୀ ହସିଥିଲେ । କହିଥିଲେ ଆଉ କେତେ ଦାୟିତ୍ୱ ମୋ ଉପରେ ଲଦି ଦେବୁରେ ସପନି ? ମୋର କଅଣ ଆଉ ଜୋର ଅଛି, ମନ ବଳ ଦେହ ବଳ ସମ୍ମୁଖରେ ହାର ମାନି ଗଲାଣି, ଆଉ କିଛି କରିବାକୁ ଆଗ୍ରହ ନାହିଁ । କେବଳ ସେହି ଚକା ଆଖିରେ ଲୀନ ହେବାକୁ ଇଚ୍ଛା ।

ସପନି ଅଭିମାନ କଲା, ‘‘ତାହା ହେଲେ ମୋତେ ମଧ୍ୟ ସାଂଗରେ ନେଇଯିବ ।’’ ତାପରେ ଗୋରୁର ରସି ଟାଣି ଟାଣି ହାଟ ଉଦ୍ଦେଶ୍ୟରେ ଆଗେଇ ଚାଲିଲା ।

ହାଟରେ ଠିକ୍ ସମୟରେ ଠିକ୍ ଦାମ୍‌ରେ ଗୋରୁ ବିକ୍ରି କରି ସେ ଶାନ୍ତିରେ ନିଶ୍ୱାସ ମାରିଲା, ଟଙ୍କାକୁ ତିନିଥର ଗଣି ଅଣ୍ଟାରେ ଖୋସିଲା, କଳରୁ ମନଭରି ପାଣି ପିଇଲା, ସମୟ ବିଶେଷ ହୋଇ ନାହିଁ । ଟିକେ ଗଛ ଛାଇରେ କ୍ଳାନ୍ତି ମେଣ୍ଟାଇ ଖରା କମିଲେ ବାହାରି ପଡିଲେ ସଂଧ୍ୟା ପୂର୍ବରୁ ଘରେ ପହଞ୍ଚିଯିବ । ହାଟରୁ ଟିକେ ଦୂରକୁ ଘୁଞ୍ଚିଯାଇ ଗଛତଳେ ଗାମୁଛା ପାରି ଶୋଇବାକୁ ଚେଷ୍ଟା କଲା । ରାତିରେ ଅନିଦ୍ରା ଯୋଗୁ ଆଖିଟା ମଧ୍ୟ ମାଡି ପଡିଲା ।

ହଠାତ୍ ହୋ ହାଲ୍ଲା, କୋଳାହଳ ଓ ଆର୍ତ୍ତ ଚିତ୍କାର ଦ୍ୱାରା ସେ ଚମକି ପଡି ଉଠି ବସିଲା, ନିଦରୁ ହଠାତ୍ ଚମକି ଉଠିଥିବାରୁ ସେ ପ୍ରଥମେ କିଛି ବୁଝି ପାରିଲା ନାହିଁ । ପରେ ଦେଖିଲା, କେତେ ଗୁଡାଏ ପୁଲିସ ଲୋକମାନଙ୍କୁ ଗୋଡାଇ ଗୋଡାଇ ପିଟୁଛନ୍ତି ଓ ଲୋକମାନେ ପୁଲିସ ଉପରକୁ ଟେକା ପଥର ଫିଙ୍ଗୁଛନ୍ତି । ପୁଲିସ ଗାଡିର ସାଇରନ୍ ଶୁଣି ଲୋକମାନେ ହାଟର ସପନି ଆଡକୁ ଦୌଡି ଆସିଲେ । ସପନି ଠିଆ ହେବା ପୂର୍ବରୁ ଶହ ଶହ ଲୋକ ତା ଉପରେ ଚଢି ତାକୁ ଛିନ୍ନ ଛତ୍ର କରି କ୍ଷତ ବିକ୍ଷତ କରି ହାଟ କେନାଲର ସେପଟକୁ ଚାଲିଗଲେ ଏବଂ ପଡିଥିବା ଭଙ୍ଗା ଇଟାମାନଙ୍କୁ ପୋଲିସ ଉପରକୁ ଫିଙ୍ଗିବାକୁ ଲାଗିଲେ । ସପନି ସେମିତି ପଡିରହି ନିଜକୁ ଅଣ୍ଡାଳିଲା, ବାଁ ହାତର ୨ଟି ଆଙ୍ଗୁଳି ଭାଂଗି ଯାଇଥିଲା । ମୁଣ୍ଡଫାଟି ରକ୍ତ ଝରୁଥିଲା, ମୁହଁ ଉପରେ ମାଡ ହୋଇ ଦରହଲା ଦାନ୍ତ ଦୁଇଟି ଭାଙ୍ଗି ଯାଇଥିଲା ଓ ଅଣ୍ଟାରେ ଯତ୍ନରେ ଖୋସା ହୋଇଥିବା ଟଙ୍କା ନଥଲା । ସେ ସେମିତି ପଡିରହି ଚାରିପଟେ ହାତ ବୁଲାଇ ଖୋଜିଲା । ପାଇଲା ନାହିଁ, ସେ ନିଜର ସମସ୍ତ ଯନ୍ତ୍ରଣା ଭୁଲିଯାଇ ଉଠିବସିଲା, ତା’ ଉପରେ ପାଦ ଦେଇ, ଦଳି ଚକଟି ଚାଲିଯାଇଥିଲା ସମୟରେ ଲୋକମାନେ ଦଙ୍ଗା ହୋଇଗଲା ବୋଲି କହୁଥିବାର ସେ ଶୁଣିଥିଲା । ସେ ଦଂଗାର ଅର୍ଥ ବୁଝିବାକୁ ଆଗ୍ରହ ନଥିଲା । ନିଜର କ୍ଷତ ବିକ୍ଷତ ଜର୍ଜର ଶରୀର ପ୍ରତି ମଧ୍ୟ ତା’ର ଧ୍ୟାନ ନଥିଲା, ତାର ଏକମାତ୍ର ଲକ୍ଷ୍ୟ ଥିଲା ଗୋରୁ ବିକିଥିବା ତା’ର ଟଙ୍କା କିଏ ନେଲା ? କୁଆଡେ ଗଲା ? ଚାରିପଟ ବୁଲି ଲକ୍ଷ୍ୟ କଲା । ନିଜ ଶରୀରରେ ଲାଗିରହିଥିବା ଛିଣ୍ଡା ଲୁଗାକୁ ଝାଡି ଦେଖିଲା । ନାଁ କେଉଁଠାରେ ମଧ୍ୟ ନାହିଁ । ତାକୁ ଧକ୍କା ଦେଇ ତା ଉପରେ ଚଢି ଚାଲିଯାଇଥିବା କୌଣସି ବ୍ୟକ୍ତି ସେ ଟଙ୍କା ନେଇ ଯାଇଛି, ତା’ ଚାରିପଟେ ପ୍ରଖର ସୂର୍ଯ୍ୟ କିରଣ

ଥିଲେ ମଧ୍ୟ ତାକୁ କିଛି ଦୃଶ୍ୟ ହେଲା ନାହିଁ । ସେ ତା'ର ନିଜ ଚତୁଃପାର୍ଶ୍ୱରେ ଘଟି ଯାଉଥିବା ଘଟଣା ଗୁଡାକ ପ୍ରତି ସେ ସଂପୂର୍ଣ୍ଣ ନିଲିପ୍ତ ଥିଲା । ସେ କେବଳ ଭାବୁଥିଲା ଝୁନୁ କଥା, ତା ବାହାଘର କଥା, ଚୌଧୁରୀ ବାବୁଙ୍କ କଥା, ତାଙ୍କ ମାନ ସମ୍ମାନ କଥା, ନିଜକଥା, ତାକୁ ସଅଁପି ଦେଇଥିବା ଦାୟିତ୍ୱ କଥା, କଅଣ ସେ କରିବ ? କଅଣ ସେ କହିବ ? ଆଉ ତ କୌଣସି ସମ୍ୱଳ ନାହିଁ । ଝୁନୁ ବାହାଘର କେମିତି ହେବ ? ତା ପାଇଁ ଚୌଧୁରୀ ବାବୁଙ୍କ ନାତୁଣୀ ଅବିବାହିତା ରହିଯିବ । ଗାଁ ଲୋକ କଅଣ କହିବେ ? ଚୌଧୁରୀ ବାବୁତ ଏକଥା ଶୁଣିଲେ ମରିଯିବେ । ଝୁନୁ କୁଅ ପୋଖରୀରେ ବୁଡି ମରିବ । ଏଇଥି ପାଇଁ ସପନିକୁ ସେ ଦାଦା ବୋଲି ଡାକୁଥିଲା ? ସଜନି ନିଜ ଉପରେ ରାଗିବାକୁ ଆରମ୍ଭ କଲା । ବସିବା ସ୍ଥାନରୁ ଉଠିଲା, ତା ମୁଣ୍ଡରୁ ରକ୍ତ ଝରୁଥିଲା, ତା ପାଟିରୁ ରକ୍ତ ଝରୁଥିଲା ଏବଂ ଏକ ଜର୍ଜରୀତ ଶରୀରରେ ଏତେ ସତ୍ତ୍ୱେ ଶତସିଂହର ବଳ ଯେମିତି ଯାଦୁର ପ୍ରଭାବରେ ଆସି ଯାଇଥିଲା, ତାକୁ ଦେଖି ହଠାତ୍ ଦଂଗା କରୁଥିବା ଲୋକମାନେ, ତାଙ୍କୁ ପ୍ରତିବାଦ କରୁଥିବା ପୋଲିସମାନେ ହଠାତ୍ ପ୍ରସ୍ତର ମୂର୍ତ୍ତୀ ପାଲଟି ଗଲେ ।

ସପନି ହଲି ହଲି ଜନତାଙ୍କ ନିକଟରେ ପହଞ୍ଚିଥିଲା । ଲାଲ ଲାଲ ଆଖିରେ ସେମାନଙ୍କ ପ୍ରତି ଦୃଷ୍ଟିପାତ କରି ଦକ୍ଷିଣହସ୍ତ ପାପୁଲିକୁ ତାଙ୍କ ସମ୍ମୁଖରେ ପ୍ରସାରଣ କରି ଖୁବ୍ ଜୋରରେ କ୍ରୋଧରେ ଥରି ଥରି ଚିତ୍କାର କଲା ''ମୋ ଟଙ୍କା ଦିଅ'' ମୁଁ କହୁଛି ମୋ ଟଙ୍କା ଦିଅ । ମୋ ଝିଅ ବାହା କରିବାକୁ ମୁଁ ଗୋରୁ ବିକି ଟଙ୍କା ଧରି ଗଛ ମୂଳେ ଶୋଇଛି । ବୁଢା ଲୋକ । ଚାରିଦିନ ହେବ ଖାଇନାହିଁ । ଦେହରେ ଜୋର ନାହିଁ ବୋଲି ମୋତେ ମାରିପିଟି ଦଳିଚକଟି ଦଙ୍ଗା ନାଁରେ ମୋ ଟଙ୍କା ଲୁଟି ନେଲ, କାହିଁକି ? ମୋର ଦୋଷ କଣ ? ମୋ ଝିଅ ମରିଯିବ, ମୋ ଦାଦା ମରିଯିବ । ମୁଁ କାହିଁକି ବଞ୍ଚିବି, ମୋତେ ମଧ୍ୟ ମାରିଦିଅ । ଟଙ୍କା ଦିଅ ନଚେତ ମୋତେ ମାରିଦିଅ ।

ବୁଢା ଦମ୍ ନେଲା । ଚତୁର୍ଦ୍ଦିଗରେ ସଂପୂର୍ଣ୍ଣ ନୀରବତା । କେହି କିଛି କହିଲେ ନାହିଁ । ସପନି ବୁଲି ପଡି ଦୃଢ ପଦରେ ପୋଲିସଙ୍କ ନିକଟକୁ ଚାଲିଲା । ଗୁରୁ ଗଂଭୀର ସ୍ୱରରେ ଆଦେଶ ଦେଲା ପରି କହିଲା ''ତୁମେ ମାନେ ପୋଲିସ । ଆମକୁ ତୁମେ ମାନେ ବିପଦରୁ, ଚୋରୀରୁ ବଳତ୍କାରରୁ ରକ୍ଷା କରିବ । ତୁମେ ମାନେ ରକ୍ଷୀ, ମୋତେ ରକ୍ଷା କର ତୁମ ଆଖି ସାମ୍ନାରେ ସେମାନେ ମୋ ଗୋରୁବିକା ଟଙ୍କା ଯେଉଁଥିରେ ମୋ ଝିଅ ବାହା ହୋଇଥାନ୍ତା । ସେ ଟଙ୍କା ଲୁଟି ନେଲେ । ତୁମେ କିଛି କରିପାରିଲ ନାହିଁ । ଏମିତି ଲୁଟ୍ ହେଉଥିବ ତୁମେ ଦେଖୁଥିବ ଦିଅ ମୋ ଟଙ୍କା ନଚେତ ମୋତେ ମାରିଦିଅ ।

ପୁନର୍ବାର ସେଇ ନୀରବତା । ସପନି ଝୁଲି ଝୁଲି ସେଇ ଗଛ ତଳେ ପହଞ୍ଚି ଥକା ହୋଇ ବସି ପଡିଲା । ଲୋକମାନଙ୍କ ମଧ୍ୟରୁ ଜଣେ କେହି ପ୍ରଶ୍ନକଲା, ''ଏ ଲୋକଟି କିଏ'', କେତେକ ଚିତ୍କାର କରି ଉଠିଲେ, ''ପାଗଳଟାଏ'', ସେପଟେ ପୁଲିସ ସୁପରି ଟେନ୍‌ଡେଣ୍ଟ ପ୍ରଶ୍ନ କଲେ, ''କଅଣ ହେଲା'' ଅଧୀନସ୍ଥ କର୍ମଚାରୀଗଣ ଏକ ସ୍ୱରରେ ଉତ୍ତର ଦେଲେ, ''ପାଗଳଟାଏ'' ସାର୍

ସପନି ସବୁ ଶୁଣିଲା । ହେଲେ ଦୀପ ଲିଭିବା ପୂର୍ବରୁ ସମସ୍ତ ଉଜ୍ଜ୍ୱଳତା ପ୍ରକାଶ କରି ନଉମିଗଲା ପରି ସପନିର ସମସ୍ତ ଶକ୍ତି ଶେଷ ହୋଇ ଯାଉଥିଲା । ଧିର ଅଥଚ ଦୃଢ ସ୍ୱରରେ କହିଲା, "ମୁଁ ପାଗଳ ନୁହେଁ।" ମୁଁ ସପନି ମଳିକ । ହରେକୃଷ୍ଣପୁର ଚୌଧୁରୀ ବାବୁଙ୍କର ମୁଁ କୋଠିଆ । ମୋ ଟଙ୍କା ଲୁଟି ନେଇ ମୋତେ ପାଗଳ କହୁଛ ? ମୋପରି କେତେ ଆଉ ସପନିଙ୍କୁ ମାରିବ, ଆମେ କଅଣ କେବଳ ଜନ୍ମ ହୋଇଛୁ ତମରି ହାତରୁ ମରିବା ପାଇଁ ? ତମେ ଯାହା କରୁଛ କରିଯାଅ । ମୋ ହାତରେ ଶକ୍ତି ନାହିଁ ତୁମକୁ ଶାସ୍ତି ଦେବା ପାଇଁ । ପ୍ରତିଶୋଧ ନେବା ପାଇଁ । ହେଲେ ଭଗବାନ ମୋ ପାଇଁ । ଆମପରି ଲୋକମାନଙ୍କ ପାଇଁ ନିଶ୍ଚୟ ପ୍ରତିଶୋଧ ନେବେ । ଶେଷ ବେଳକୁ ତାର ସ୍ୱର ଧିମା ପଡିଆସିଲା, ଉପାୟହୀନ ବ୍ୟକ୍ତି ଭଗବାନ ଓ ଭାଗ୍ୟରେ ବିଶ୍ୱାସ କଲାପରି ସପନି ନିଜର ସମସ୍ତ ସମସ୍ୟାର ସମାଧାନ ସେଇ ଭଗବାନଙ୍କ ଉପରେ ନ୍ୟସ୍ତ କରିଦେଲା ପରେ ତାକୁ ଖୁବ୍ ଶାନ୍ତି ଲାଗିଲା ଏବଂ ଦୁଇ ଆଣ୍ଠୁ ମଧ୍ୟରେ ମୁହଁ ପୋତି ଦେଇ ନିଜ ଶରୀରକୁ ଢିଲା ଛାଡି ଦେଲା । ତା'ର ମନେ ହେଉଥିଲା, ଗଛର ପତ୍ରଗୁଡାକ ତା ଘର୍ମାକ୍ତ ଶରୀରକୁ ଶୀତଳ ପବନ ପ୍ରଦାନ କରୁଥିଲେ ଏବଂ ତା ପାଦତଳର ଉତ୍ତପ୍ତ ଧରିତ୍ରୀ ନରମ ଶଯ୍ୟାରେ ପରିଣତ ହୋଇ ଯାଇଥିଲା ।

ଝଡ ପୂର୍ବର ଶାନ୍ତି ହଠାତ୍ ଭଗ୍ନ ହେଲା । କେଜାଲ ସେପଟ ଅନ୍ଧକାର ମଧ୍ୟରୁ ଆରମ୍ଭ ହୋଇଗଲା ଝଡ୍ । ଦଂଗା ଆରମ୍ଭ ହୋଇଗଲା ଦୁଇଦଳ ମଧ୍ୟରେ, ଦୁଇ ସଂପ୍ରଦାୟ ମଧ୍ୟରେ, ଦୁଇ ଗୋଷ୍ଠି ମଧ୍ୟରେ, ଦୁଇ ଜାତି ମଧ୍ୟରେ ରକ୍ଷାକାରୀ ପୋଲିସ ସେଇ ଦଂଗା ରୂପୀ ଝଡର ବେଗରେ ଅନେକ ଦୂରକୁ ଚାଲିଗଲା, ଜଳିଲା ନିଆଁ, ଏବଂ ସେଇ ନିଆଁ ମଧ୍ୟରେ ଜଳିଗଲା ସପନିର ସମସ୍ତ ଆଶା ଆକାଂକ୍ଷା ଓ କାମନା ।

ତଥାପି ସେଇ ପ୍ରଜ୍ୱଳିତ ଅଗ୍ନି ମଧ୍ୟରୁ ସପନିର କ୍ଷୀଣ ସ୍ୱର ଏବେ ବି ପ୍ରତିଧ୍ୱନୀତ ହୋଇ ଉଠୁଛି । "ମୋ ଟଙ୍କା ମୋତେ ଫେରାଇ ଦିଅ । ମୋତେ ରକ୍ଷାକର ।"

କିନ୍ତୁ ସେ ସ୍ୱର କାହାକୁ ଶୁଭୁ ନ ଥିଲା, ଦଙ୍ଗା ସେମିତି ବଢି ଚାଲିଥିଲା । ଝୁନୁ ଅନେକ ରାତି ପର୍ଯ୍ୟନ୍ତ ତା ସପନି ଦାଦା ପାଇଁ ଗରମ ଭାତ ରଖି ଅପେକ୍ଷା କରିଥିଲା ଚୌଧୁରୀ ବାବୁଙ୍କ ପ୍ରତୀକ୍ଷାର ଅନ୍ତ ନଥିଲା, ବା ଆଖିରେ ନିଦ ନଥିଲା । ଝଡ ସେମିତି ହେଉଥିଲା ।



# ସ୍ୱୀକାରୋକ୍ତି

''ହଁ ଧର୍ମାବତାର ମୁଁ ଡାକୁ, ଖୁନୀ''....

''ତୁମ୍ଭେ ସ୍ୱୀକାର କରୁଛ ?

''ହଁ, କିନ୍ତୁ ମୁଁ କିଛି କହିନି...

''କହିପାର

''ହଜୁର, ମା' ପେଟରୁ କେହି କେବେ ଚୋର ଡାକୁ ହୋଇ ଜନ୍ମ ହୋଇନଥାଏ । ତେବେ ମୁଁ ହେଲି କିପରି ? ମୁଁ ଜନ୍ମରୁ ତ ଚୋର ନଥିଲି, ଖୁନୀ ନଥିଲି ।

ପ୍ରତ୍ୟେକ ଶିଶୁ, କିଶୋର ପରି ମୋର ମଧ୍ୟ କଅଁଳ ହୃଦୟ ଥିଲା, ଯେତେଦିନରୁ ମୁଁ ଜ୍ଞାନ ପାଇଛି, ଦେଖିଛି ମୋ ବାପା, ମା' ପରିବାର ପ୍ରତ୍ୟେକ ଯନ୍ତା ମଧ୍ୟରେ ଥିବା ପଶୁପରି । ସକାଳୁ ବାହାରିଯାନ୍ତି କ୍ଷେତକୁ ଏବଂ ରାତ୍ରିରେ ଫେରି କେଉଁ ଦିନ ଖାଇ କେଉଁଦିନ ନଖାଇ ଶୋଇ ପଡନ୍ତି । ମୁଁ ଭୋକ ଉପାସରେ କାହାକୁ କିଛି କହି ପାରେନା, ମୁଁ ଜାଣେ ମୋ ବାପା ମୋତେ କେଉଁ ଦୃଷ୍ଟିରେ ଦେଖେ, ତା'ର ସ୍ୱପ୍ନ ମୁଁ ବୁଝିପାରିଥିଲେ ମଧ୍ୟ କିଛି କରିବାକୁ ନିରୁପାୟ ।

ତାଙ୍କ ନିକଟରେ ଆନନ୍ଦ ନାମକ ବସ୍ତୁ ନ ଥିଲା । ଲୋକ ଦୁଃଖ ସହି ସହି ସୁଖକୁ ଭୁଲିଯାଏ... । ଅତୀତ ଭୁଲିଯାଏ । ଭବିଷ୍ୟତର ଚିନ୍ତା କରିପାରେ ନାହିଁ । ବର୍ତ୍ତମାନର ଠୋକର ଖାଇଖାଇ ପଥର ହୋଇଯାଏ । କେତେକ ପଥର ମିଶି ହିଁ ପ୍ରାଚୀର ନିର୍ମାଣ କରିଥାନ୍ତି । ଯାହା ନିର୍ବାକ... ନିସ୍ପନ୍ଦ... ପ୍ରାଣହୀନ... ଅନୁଭବହୀନ ।

ଆପଣ ଥରେ ଚିନ୍ତା କରନ୍ତୁ ହଜୁର, ଗାଁର ଛୋଟ ଛୋଟ କ୍ଷେତରେ ନିଜକୁ ମାଟି ସହିତ ମିଶାଇ ଦେଇ ଦୁଇ ଓଳି ପେଟପୂରା ଖାଇବାକୁ ନପାଇ, ଅନ୍ୟ ଚିନ୍ତା କରିବାକୁ ସମୟ କାହିଁ । ପେଟପୂରିଲେତ ମାନସିକ ତୃପ୍ତି ମିଳିବ ଏବଂ ଉନ୍ନତି କରିବାର ପଥ ଖୋଜିବ । କିନ୍ତୁ ଅପୂର୍ଣ୍ଣ ପେଟର ଜ୍ୱାଳା ସହ୍ୟ କରିବାକୁ ଯଥାସାଧ୍ୟ ଚେଷ୍ଟା କରି କରି... ଶେଷରେ କ୍ଷେତର ମୁଣ୍ଡରେ ଏକ ଛୋଟ ବରଗଛଥିବା ଶ୍ମଶାନରେ ଜଡ ଶରୀରରେ ନିଆଁ ଲଗାଇ ଦିଆଯାଏ, ତାପରେ ସବୁ ଶୂନ୍ୟ...

ମୁଁ ବଡ ହେଲି... ଏହି ପରି ବାତାବରଣ ମଧ୍ୟରେ ମୁଁ ବଡ ହେଲି । ଯୌବନ ଆସିଲା, ପଶୁପରି ଅତ୍ୟାଚାର ସହୁଥିବା ସେହି କୃଷକଙ୍କୁ ଦେଖିଲି, ଯିଏ ଏତେ ପରିଶ୍ରମ

ପରେ ମଧ ଦିଓଳି ପେଟ ଭରି ଖାଇ ପାରୁନି । ନିଜର ନଗ୍ନ ଶରୀରକୁ ଲୁଚାଇ ପାରୁନି । ଟିକିଏ ସ୍ୱାଧୀନତା ପାଇଁ ଗଳା ଫଟାଇ ଚିତ୍କାର କରୁଛି । କାହିଁ କେଉଁଠି ସୁଖ ଆନନ୍ଦ ? ଦେଶ, ସ୍ୱାଧୀନ ହେଲା, ଆମର ସରକାର ହେଲା, ଦେଶ, ଆମର ହୋଇ ପାରିଲା ନାହିଁ, ଅଶିକ୍ଷିତ ଶିକ୍ଷିତ ହୋଇ ପାରିଲେ ନାହିଁ । ଭୋକିଲା ଆହୁରି ଦୁଃଖ ପାଇଲା, ପେଟ ଭରିଲା ନାହିଁ... ତେବେ ଏ ସ୍ୱାଧୀନତାର ମୂଲ୍ୟ କ'ଣ ? ଆମର ସନ୍ତାନ... ଭବିଷ୍ୟତର କର୍ଣ୍ଣଧାର । ସେହି ପଥକଡର ନାଳୀ ମଧରୁ ଖାଦ୍ୟ ଦରାଣ୍ଡିଲେ, କୁକୁରମାନଙ୍କ ସହ ଲଢେଇ କରି ଛିଣ୍ଡା ପାଉଁରୁଟିର ଖଣ୍ଡ ସଂଚୟ କଲେ । ଭିକ ମାଗିଲେ... । ଗରିବମାନେ ସେହି ଛିଣ୍ଡା ପିନ୍ଧି ଭବିଷ୍ୟତକୁ ଅନାଇ ରହିଲେ, ରାମ ରାଜ୍ୟ... କଳ୍ପନାରେ ରହିଲା, ଯଦି ଆମର ସରକାର... ଆମର ଦେଶ ଆମକୁ ଖାଦ୍ୟ, ପୋଷାକ ଦେଇ ନପାରିଲା ତେବେ ଦେଶକୁ ଜାଳି ଦିଅ, ସରକାରକୁ ରାସ୍ତାରେ ଛକ ଉପରେ ଠିଆକରି ଗୁଳି ମାରିଦିଅ । ରକ୍ତର ନଦୀ ବୁହାଇ ଦିଅ ।

ମୁଁ ଅତ୍ୟାଚାର ଦେଖିଲି, ନିଶ୍ଚୟ କଲି, ତଣ୍ଟିରେ ବିରାଟ କୋଠାମାନଙ୍କର ମୂଳଦୁଆ ହଲାଇବାକୁ ଆରମ୍ଭ କଲି, ସେହି କାମରେ ଯଦି ମୋ ହାତରେ ଖୁନ୍ ହୋଇଯାଇଥିବ, ତେବେ ମୁଁ ନିରୁପାୟ ।

ଯଦି ମୁଁ ଏପରି ନ କରିଥାନ୍ତି... ଯଦି ଏପରି ନକରିବା, ତେବେ ଆମେ ଏପରି ସହି ଚାଲିଥିବା । ଏହିପରି ସକାଳ, ସଂଜ, ରାତ୍ରି ହେଉଥିବ, ଏବଂ ବର୍ଷ ପରେ ବର୍ଷ ଗଡି ଚାଲିଥିବ । ଶେଷରେ ମୃତ୍ୟୁକୁ ଦେଖି ଆମେ ଚିତ୍କାର କରିବା ''ମୁକ୍ତି... ମୁକ୍ତି''

କେତେ ଆଉ ସହିବା... ସୀମା ପାର ହୋଇ ଗଲାଣି । ଶେଷରେ ଏକ ବିସ୍ଫୋରଣ ହେବ । ଆଉ ସମୟ ନାହିଁ ଆସିଗଲା ।''

ଅଦାଲତରେ ଗୁଂଜନ ଓ ଜଜ୍‌ସାହେବଙ୍କର ଅର୍ଡର ଅର୍ଡର ଶବ୍ଦ ।

''ଯେଉଁଦେଶର କର୍ଣ୍ଣଧାର ମାନେ ପୁଞ୍ଜି ଏକ ସ୍ଥାନରେ ଠୁଳ କରିବାଟାକୁ ଦେଶର ଆଗେଇବା ଆଖ୍ୟା ଦିଅନ୍ତି, ସେ ଦେଶର ପତନ ଅବ୍ୟଶମ୍ଭାବି ।''

ଅବଶେଷରେ ଜଜ୍ ସାହେବ ଅପରାଧୀ ଅପରାଧ ପ୍ରମାଣିତ ହେବା ଯୋଗୁ ତାଙ୍କୁ ମୃତ୍ୟୁ ଦଣ୍ଡ ଦେଲେ ଏବଂ ତାର ବକ୍ତବ୍ୟକୁ ଏକ ବିକୃତ ମସ୍ତିଷ୍କର ପ୍ରଳାପ ଆଖ୍ୟା ଦେଇ ଚେୟାର ଛାଡିଲେ । ଅପରାଧୀ କେବଳ ହସୁଥିଲା ।

□ *ବେଳା : ନଭେମ୍ବର-ଡିସେମ୍ବର ସଂଖ୍ୟା, ୧୯୭୦*



# ଆତ୍ମହତ୍ୟା

ଅବଶେଷରେ ମୁଁ ଆତ୍ମହତ୍ୟା କଲି ।

ଶେଷ ମୂହୂର୍ତ୍ତ ପର୍ଯ୍ୟନ୍ତ ମୋର ବିଶ୍ୱାସ ନ ଥିଲା, ଯେ ମୁଁ ଆତ୍ମହତ୍ୟା କରି ପାରିବି । ମୁଁ ଅତ୍ୟନ୍ତ ଦୁର୍ବଳ ହୋଇ ପଡିଥିଲି । ଦୁର୍ବଳ ବ୍ୟକ୍ତିମାନେ ଆତ୍ମହତ୍ୟା କରିପାରନ୍ତି ନାହିଁ । ନିଜ ଉପରେ ମୋର ବିଶ୍ୱାସ ନଥିଲା । ପ୍ରାୟ ମାନେ ଦିନେ ମୁଁ ନିଶ୍ଚୟ କରିଥିଲି । କିନ୍ତୁ ନିଶ୍ଚୟକୁ କାର୍ଯ୍ୟାନ୍ୱିତ କରିବା ପାଇଁ ମୋ ନିକଟରେ ସାହସ ନଥିଲା । ଏବଂ ଜୀବନଟା ବୋଝ ହୋଇ ପଡିଥିଲା । ତିନି ମାସର ବିଚ୍ଛେଦ ମୋତେ ଅତ୍ୟନ୍ତ କ୍ଳାନ୍ତ କରି ଦେଇଥିଲା । ସତ କହିବାକୁ ଗଲେ ମୁଁ ''ତୃପ୍ତିର'' ବିବାହ ପରେ ହାରିଯାଇଥିଲି । ଯେଉଁ ଲକ୍ଷ୍ୟ ପାଇଁ ମୁଁ ମନରେ ଦୃଢ ନିଶ୍ଚୟ କରି ଆଗେଇ ଚାଲିଥିଲି, ସେ ଲକ୍ଷ୍ୟ ମୋର ହଜିଯାଇଥିଲା ।

''ତୃପ୍ତିକୁ'' ମୁଁ ଭଲ ପାଉଥିଲି, ତା ବିନା ମୁଁ ନିଜକୁ ଅସ୍ତିତ୍ୱହୀନ ମନେ କରୁଥିଲି, ବିବାହ ପରେ ଭାବିଥିଲି ତାକୁ ଭୁଲି ଯିବି, ଚେଷ୍ଟା ମଧ ଅନେକ କରିଛି, ହେଲେ ସଫଳ ହୋଇ ପାରିଲି ନାହିଁ । ବଂଧୁ ମାନେ ଉପହାସ କରୁଥିଲେ । ମୁଁ ଲଜ୍ଜିତ ହୋଇ ପଡୁଥିଲି । ମୋର ଚତୁର୍ଦ୍ଦିଗରେ ଭରିଯାଇଥିଲା ଖାଲି ଏକ ଶୂନ୍ୟତା, ଏବଂ ସେଇ ଶୂନ୍ୟତା ମଧରେ ମୁଁ ଅଣନିଶ୍ୱାସୀ ହୋଇ ପଡିଥିଲି । ଅସହାୟତା... ବ୍ୟର୍ଥତା... ଏବଂ ଅସଫଳତା ବ୍ୟତୀତ ଆଉ ମୋ ପାଖରେ କିଛି ନଥିଲା ।

''ତୃପ୍ତି'' ଛଳନା କରିଥିଲା, କିନ୍ତୁ ମୁଁ ତାକୁ ବିଶ୍ୱାସ କରିଥିଲି, ତାକୁ ପ୍ରେମ କରିଥିଲି, ପ୍ରତିଦାନରେ କେବଳ ସେ ମୋତେ ଦେଇଯାଇଥିଲା, ଅତୀତକୁ ବିଶ୍ଳେଷଣ କରିବା ପାଇଁ, ସେ ସ୍ୱାର୍ଥ ପାଇଁ ପାଗଳ ହୋଇ ମୋର ନିରୀହତା ସହିତ କିଛି ଦିନ ବେଶ୍ ଖେଳି ଚାଲିଗଲା, ମୁଁ ନିର୍ବୋଧ ପରି କେବଳ ପଛରେ ଛାଡି ଆସିଥିବା ପଦଚିହ୍ନ ମଧରୁ ନିଜର ପାଦଚିହ୍ନ ଖୋଜିବା ପାଇଁ ଚେଷ୍ଟା କରୁଥିଲି । ପ୍ରେମ ତ ସ୍ୱାର୍ଥପର ନୁହେଁ । ତେଣୁ ତା ପ୍ରତି ମୋର ଅଭିଯୋଗ କିଛି ନଥିଲା, କେବଳ ନିଜକୁ ଦାୟୀ କରୁଥିଲି, ନିଜକୁ ସାନ୍ତ୍ୱନା ଦେଉଥିଲି ।

''ତୃପ୍ତି'' ଯୁକ୍ତି କରିଥିଲା, ବିବାହ ପୂର୍ବକ୍ଷଣରେ ତା'ର ସେ ଯୁକ୍ତି ହାସ୍ୟାସ୍ପଦ ମନେ ହେଲେ ହେଁ ମୁଁ ନୀରବ ରହିବାକୁ ବାଧ୍ୟ ହୋଇଥିଲି, ସେ କହିଥିଲା- ବିବଶତା, ପରିବାରର ବଂଧନ ପାଇଁ ମୋତେ ଏ ତ୍ୟାଗ କରିବାକୁ ପଡୁଛି, ଯେଉଁ କୁମାରୀ କନ୍ୟା ନିଜର ଶରୀର ବିନା ପ୍ରତିବାଦରେ ତାର ପ୍ରେମିକକୁ ଅଜାଡି ଦେଇଛି, ତାକୁ ତୁମେ ସନ୍ଦେହ କରିବ ନାହିଁ। ମୁଁ ନୀରବ ରହିଥିଲି, ଲାଲ ଶାଢୀରେ ସଜ୍ଜିତ ତାର ଗୋରା ଶରୀରକୁ ବିସ୍ମୟରେ ଚାହିଁ ରହି ଭାବୁଥିଲି ଅତୀତର ସେଇ କ୍ଷଣମାନଙ୍କୁ, ଯେଉଁ ମୂହୂର୍ତ୍ତରେ ତାର ନଗ୍ନ ଶରୀର ମୋର ପୌରୁଷର ଅହଂକାରକୁ ଭାଂଗି ଚୁରମାର କରିଦେଇଥିଲା, ଏବଂ ମୁଁ ତାର ନାରୀତ୍ୱ ନିକଟରେ ପରାଜିତ ହୋଇ ପଡିଥିଲି। ସେ ପରାଜୟ ଆଜି ହୁଏତ ମୋ ପାଇଁ ବିଜୟର ଚିହ୍ନ।

ଡାକ୍ତର ଜନାର୍ଦ୍ଦନ ବାବୁ ମୋତେ ହିଂସ୍ର ଚାହାଣିରେ ଅନେଇ ରହିଥିଲେ, ମୁଁ ତାଙ୍କର ସେ ଅହଂକୁ ସହି ପାରିନଥିଲି। ବ୍ୟଂଗରେ ହସି ସେ ଦୂରକୁ ଚାଲି ଯାଇଥିଲେ, ତାଙ୍କ ପରିବାରର ପ୍ରତ୍ୟେକ ମୋତେ ବିଦ୍ରୁପରେ ଲକ୍ଷ୍ୟ କରୁଥିଲେ, ''ତୃପ୍ତି'' ଭିତରକୁ ଚାଲିଯାଉଥିଲା, ଏବଂ ତାର ଡାକ୍ତର ପିତା ମହୋଦୟ ହସି ହସି ଜଣକୁ କହୁଥିଲେ 'ଆମେ ବ୍ରାହ୍ମଣ' ଆମର ଆଭିଜାତ୍ୟ ଅଛି, ପରମ୍ପରା ଅଛି। ମୁଁ ଭାବୁଥିଲି ଏଇ ତାହା ହେଲେ ଆଭିଜାତ୍ୟ ? ଏକ ଗର୍ଭବତୀ କନ୍ୟାର ଗର୍ଭକୁ ନଷ୍ଟକରି ତାକୁ ଅନ୍ୟ ଏକ ନିରୀହ ପୁରୁଷ ହାତରେ ଟେକି ଦେବାଟା ଯଦି ଆଭିଜାତ୍ୟ ଏବଂ ବଂଶ ପରଂପରା ହୁଏ ତେବେ ମୋର କହିବାର କିଛି ନାହିଁ। ''ତୃପ୍ତି'' ଗର୍ଭରେ ଥିବା ସେଇ ସନ୍ତାନଟିକୁ ଡାକ୍ତର ପିତା ଠିକ୍ ସ୍ଥାନରେ ପହଞ୍ଚାଇ ଦେଇ ଆଜି ଗର୍ବ ଅନୁଭବ କରିପାରୁଛନ୍ତି। ଏବଂ ବଡ ଭାଇ ଅମୂଲ୍ୟବାବୁ ସ୍ୱାଗତମ ଜଣାଉଛନ୍ତି ଭଦ୍ରବ୍ୟକ୍ତିମାନଙ୍କୁ।

ତାପରେ ତିନିମାସ, ଏବଂ ମୁଁ ଏଇ ତିନିମାସ ମଧ୍ୟରେ ନିଜର ନିଜତ୍ୱ ହରାଇ ବସିଥିଲି। କାହିଁକି ଓ କିପରିର ଉତ୍ତର ପାଇଁ ଅନେକ ଚେଷ୍ଟା କରି ଶେଷକୁ ଭାବନା ଶୂନ୍ୟ ହୋଇ ଯାଇଥିଲି।

ସବୁ ସଂପର୍କ ତୁଟିଗଲା। ଏକ ବିନ୍ଦୁରୁ ଦୁଇଟି ସରଳରେଖା ସୃଷ୍ଟି ହୋଇ ଦୁଇବିପରୀତ ଦିଗକୁ ଚାଲିଗଲେ। ଏବଂ ମୁଁ ଆତ୍ମହତ୍ୟା କଲି।

ନିଦ ବଟିକା ଅନେକ ଦିନରୁ ପାଖରେ ଥିଲା। ଗତ ରାତିରେ ଶୋଇଲା ବେଳେ ହଠାତ୍ ମସ୍ତିଷ୍କ ମଧ୍ୟରେ ଏକ ଶୂନ୍ୟତା ସୃଷ୍ଟି ହେଲା ଏବଂ ମୁଁ ନିଦ ବଟିକା ଗୁଡିକ ଖାଇ ଶୋଇ ପଡିଲି। ଏବଂ ଭାବିଲି ଏଥର ଶାନ୍ତି। ''ତୃପ୍ତି'' ଜାଣୁ ଏକ ନାରୀ ପ୍ରେମରେ ପୁରୁଷ କେତେ ବଡ ତ୍ୟାଗ କରିପାରେ, ଡାକ୍ତର ଜନାର୍ଦ୍ଦନ ବାବୁ ଜାଣନ୍ତୁ ଆଭିଜାତ୍ୟ କଅଣ ? ଯଦି ମୁଁ ଚାହିଁଥାନ୍ତି ତାହେଲେ ତାଙ୍କର ସେ ଆଭିଜାତ୍ୟକୁ ମାତ୍ର କେତେ କ୍ଷଣମଧ୍ୟରେ ଧୂଳିସାତ କରି ଦେଇଥାନ୍ତି। ତୃପ୍ତିର ଚିଠି ଗୁଡାକ ତ ଅଦରକାରୀ ନୁହେଁ। ଏବଂ ତାର 'ସ୍ୱାମୀ ରୁଦ୍ର ମାଧବ' କେବେ ହେଲେ ବିବାହ ପୂର୍ବରୁ ମା'

ହୋଇ ଗର୍ଭ ନଷ୍ଟ କରିଥିବା ଯୁବତୀକୁ ନିଜ ବଂଶର ଭବିଷ୍ୟତ ବଂଶଧରଙ୍କର ମା' ରୂପେ ପରିଚୟ ଦେବାକୁ ପସନ୍ଦ କରିନଥାନ୍ତେ । ମୁଁ କିନ୍ତୁ ଚାହୁଁଥିଲି ତାକୁ ମାନସିକ ଶାସ୍ତି ଦେବା ପାଇଁ ।

ମୃତ୍ୟୁର ଯନ୍ତ୍ରଣା ମୁଁ ଅନୁଭବ କରିପାରିଲି ନାହିଁ । ସକାଳେ ଉଠି ଦେଖିଲି ମୋ ଶରୀରକୁ ଘେରି ମୋ ପରିବାରର ପ୍ରତ୍ୟେକ କାନ୍ଦୁଛନ୍ତି । ତାଙ୍କର ବେଦନା ଦେଖି ମୋ ହୃଦୟ ପ୍ଳାବିତ ହୋଇ ଉଠିଲା । କିନ୍ତୁ କିଛି କରିବା ପାଇଁ ମୁଁ ଅସମର୍ଥ । ଏଥର ତ ସେମାନେ ଖାଲି କାନ୍ଦିବେ । ମୁଁ କଅଣ କରି ପାରିବି ? ମୁଁ ଯେ ଅଶରୀରୀ ହୋଇ ଯାଇଛି । ସେମାନଙ୍କୁ ସେଇ କକ୍ଷ' ମଧ୍ୟରେ ଛାଡି ମୁଁ ବାହାରକୁ ଚାଲି ଯାଉଛି । ମୋ ବଂଧୁମାନେ ଖବର ପାଇ ମୋ ଘର ସାମ୍ନାରେ ଜମା ହୋଇ ଯାଇଥାନ୍ତି ଏବଂ ଶୋକ ପ୍ରକାଶ କରୁଥାନ୍ତି । ମୋର ଜଣେ ବଂଧୁ ''ତୃପ୍ତି''କୁ ଏ ଖବର ଜଣାଇ ଦେବା ପାଇଁ ଟେଲିଗ୍ରାମ ଅଫିସ ଆଡେ ଆଗେଇ ଗଲା, ବଂଧୁମାନେ ମୋ ବିଷୟରେ କଥାବାର୍ତ୍ତା ହେଉଥିଲେ । ହୁଏତ ଦୋଷ ଗୁଣ ଓ ଦୁର୍ବଳତା ବିଷୟରେ ଆଲୋଚନା କରୁଥିବେ । ମୁଁ ଆଗେଇ ଚାଲିଲି, ମୋର ଲକ୍ଷ୍ୟ ଥିଲା । ତୃପ୍ତି... ତା'ପରେ ଶାନ୍ତି ହିଁ ଶାନ୍ତି ।

ମୋର ଆତ୍ମହତ୍ୟାର ପ୍ରତିକ୍ରିୟା ମୁଁ ଦେଖିବା ପାଇଁ ଚାହୁଁଥିଲି । ରାସ୍ତାରେ ଗଲାବେଳେ ମୋତେ ଖୁବ୍ ହାଲୁକା ଲାଗୁଥିଲା । ଚିନ୍ତା କରି ପାରୁନଥିଲି । ମସ୍ତିଷ୍କ ଖୁବ୍ ଶାନ୍ତ ଥିଲା । ମୁଁ ଗୀତ ଗାଉଥିଲି ପଥ ମଧ୍ୟରେ ଡାକ୍ତର ଜନାର୍ଦ୍ଦନଙ୍କ ବାସଭବନ ନିକଟରେ ଅଟକିଗଲି । ମୋ ମୃତ୍ୟୁ ଖବର ତାଙ୍କ ନିକଟରେ ପହଞ୍ଚି ଯାଇଥିବ । ଭିତରକୁ ଅବାଧରେ ଚାଲିଯାଇପାରିଲି । ''ତୃପ୍ତି'' ର ବିବାହ ପରେ ଭିତରକୁ ପ୍ରବେଶ ମୋ ପାଇଁ ନିଷେଧ ଥିଲା । ନିରୁପମା, ତୃପ୍ତିର ସାନଭଉଣୀ ଏକ ଗୋଲାପ ଗଛ ପାଖରେ ଠିଆ ହୋଇ କାନ୍ଦୁଥିଲା, ଗୋଲାପ ଗଛର ଫୁଲଟିର ପାଖୁଡା ଗୁଡିକ ଝଡି ପଡିଥିଲା । ଏବଂ ନୀରୁ ସେ ପାଖୁଡା ଗୁଡିକ ଗୋଟାଇ ହାତରେ ଧରି ନିଜ ମନକୁ ମନ କହିଲା ''ତୁମେ ଶେଷ ପର୍ଯ୍ୟନ୍ତ ମଧ ମୋ ମନକଥା ବୁଝି ପାରିଲ ନାହିଁ ''ଶିଶିର'' ମୋତେ ବୁଝିବାକୁ ଚେଷ୍ଟା ବି କଲ ନାହିଁ । ଗଛଟିକୁ ମୁଁ ନିରୁକୁ ଉପହାର ଦେଇଥିଲି, ନିରୁର ଦୁର୍ବଳତା ମୁଁ ଜାଣିଥିଲି । ହେଲେ ତୃପ୍ତି, ପାଇଁ... ଆଉ ତୃପ୍ତି... । ହସିଲା, ଭିତରେ ଜନାର୍ଦ୍ଦନବାବୁ ହସୁଥାନ୍ତି । ମୁକ୍ତ ହସ ଏଥର ତାଙ୍କର ଚିନ୍ତାଗଲା । ଉଙ୍କିମାରି ଦେଖିଲି ଅମୂଲ୍ୟବାବୁ, ଦ୍ରୁତ ଗତିରେ ଆସି ଏଁ ସୁଇସାଇଡ କଲା....? ଅମୂଲ୍ୟ ବାବୁ ଭିତରକୁ ଲିଗଲେ । ଜନାର୍ଦ୍ଦନାବାବୁ ଠିଆ ହେଲେ ଆଖି ତାଙ୍କର ଛଳ ଛଳ ହୋଇ ଉଠିଲା । ସେ ଅସ୍ପଷ୍ଟ ସ୍ୱରରେ କଅଣ କହିଲେ, ମୁଁ ବୁଝି ପାରିଲି ନାହିଁ । ମୋତେ ଲାଗିଲା ସେ ଯେମିତି ଅନୁତାପ କରୁଛନ୍ତି ।

ମୁଁ ଚାଲୁଥିଲି, କାହିଁ ଆଜି ତ ଟିକେ କ୍ଲାନ୍ତି ନାହିଁ, ବଡ ଫୁର୍ତ୍ତୀ ଲାଗୁଛି, ମୁଁ ଭାବୁଥିଲି, ତାହା ହେଲେ କଅଣ ମୁଁ ଜନାର୍ଦ୍ଦନ ବାବୁଙ୍କୁ ଭୁଲ ବୁଝିଥିଲି । ଏତେ ନିଷ୍ଠୁର

ବ୍ୟକ୍ତି ଯଦି ମୋ ମୃତ୍ୟୁ ଖବର ପାଇ କାନ୍ଦି ଉଠୁଛନ୍ତି ତେବେ ହୁଏତ ମୋ ମୃତ୍ୟୁ ସଂବାଦ ପାଇ 'ତୃପ୍ତି' ନିଜକୁ କେବେ କ୍ଷମାକରି ପାରିବ ନାହିଁ। ସେ ଯେପରି ଭାବପ୍ରବଣା। ହୁଏତ କିଛି ଭୁଲ୍ ପଦକ୍ଷେପ ନେଇପାରେ, ମୁଁ ଚଞ୍ଚଳ ହୋଇ ଉଠିଲି, ମୋତେ ରାଉରକେଲାରେ ପହଞ୍ଚିବାକୁ ପଡିବ।

ମାଇଲି ଖୁଣ୍ଟଗୁଡାକ ଦ୍ରୁତ ଗତିରେ ପଛକୁ ଚାଲିଯାଉଥାନ୍ତି ଏବଂ ମୁଁ ଆଗେଇ ଯାଉଥାଏ। ରାଉରକେଲାର ଗଳି କନ୍ଦିରେ ମୁଁ ଇଂଜିନିୟର ରୁଦ୍ରମାଧବର ସରକାରୀ କ୍ୱାଟର ଖୋଜି ବୁଲୁଥାଏ। ସଂଧ୍ୟା ବିତିଗଲା ପରେ ରାଉରକେଲାର ରାସ୍ତା ଗୁଡାକ ନୀରବ ହୋଇ ପଡିଥାନ୍ତି ଏବଂ କୁହୁଡି ଚାରି ଆଡେ ଖେଳେଇ ହୋଇ ଯାଇଥାଏ। ମୁଁ କିଛି ଅନୁଭବ କରି ପାରୁନଥାଏ। କ୍ଷୁଧା, ତୃଷ୍ଣା, ଶୀତ, ଉଷ୍ଣତା... କିଛି ନୁହେଁ।

କ୍ୱାର୍ଟର ସମ୍ମୁଖରେ ଫୁଲଗଛ। ତୃପ୍ତିର ଫୁଲର ଭାରି ସଉକ, ତାକୁ ଫୁଲ ଭଲ ଲାଗେ, ରାତି ଅନେକ ହୋଇ ଯାଇଥାଏ। ସେତେବେଳେ, ଯେତେବେଳେ ମୁଁ 'ତୃପ୍ତି'ର ବେଡରୁମରେ ପ୍ରବେଶ କଲି ଦ୍ୱାର କିମ୍ବା କାନ୍ଥ କେହି ମୋ ପଥରେ ପ୍ରତିବନ୍ଧକ ସୃଷ୍ଟି କରି ପାରିଲେ ନାହିଁ। ମୁଁ ସେତେବେଳକୁ ଏକ ''ଫୋର ଡାଇମେନସ ନାଲ ଫିଗର'' ରେ ପରିବର୍ତ୍ତିତ ହୋଇ ଯାଇଥିଲି।

କକ୍ଷ ମଧ୍ୟରେ ନିସ୍ତବ୍ଧତା। କେବଳ ନିଶ୍ୱାସ ପ୍ରଶ୍ୱାସର ଶବ୍ଦ। ସ୍ୱାମୀ, ସ୍ତ୍ରୀ ଦୁହେଁ କାନ୍ତ ହୋଇ ପଡିଥାନ୍ତି; ମୁଁ ଆଶଙ୍କା କଲି 'ତୃପ୍ତି' ବୋଧ ହୁଏ ମୋ ମୃତ୍ୟୁ ଖବର ପାଇନି, ନିକଟକୁ ଚାଲିଗଲି, 'ତୃପ୍ତି' ର ନଗ୍ନ ଶରୀର ଉପରେ ରୁଦ୍ର ମାଧବର ହାତ... ଅଧରରେ ଅଧର... ମୁଁ ଅଶ୍ଳୀଳ ହୋଇ ଉଠିଲି। ଆଖି ବନ୍ଦକଲି। କ୍ଳାନ୍ତ ନିଶ୍ୱାସ ପ୍ରଶ୍ୱାସର ଗତି ତୀବ୍ର ହୋଇ ଉଠିଲା। ଅସ୍ୱାଭାବିକ ଶବ୍ଦ ଏବଂ ତାପରେ ପୁନର୍ବାର କ୍ଳାନ୍ତି, ଚନ୍ଦ୍ରକିରଣ କିଞ୍ଚିତ ଆଲୋକିତ କରି ପକାଇଥାଏ। ଆଖି ଖୋଲିଲି 'ତୃପ୍ତି' ନିଜ ଶରୀରକୁ ସଂଯତ କରି ସାରିଥାଏ, ରୁଦ୍ରବାବୁ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲେ, ଦିଆସିଲିର ଆଲୋକରେ ଟେବୁଲ୍ ଉପରର ଗୋଲାପି ଟେଲିଗ୍ରାମକୁ ସ୍ପଷ୍ଟ ଦେଖିପାରିଲି, ଟେଲିଗ୍ରାମକୁ ପଢିଲି, ଅନିଲ ମୋ ବଂଧୁ ମୋର ଆତ୍ମହତ୍ୟାର ଖବର ଟେଲିଗ୍ରାମ ଦ୍ୱାରା ଜଣାଇ ଦେଇଛି।

ମୁଁ ହଠାତ୍ କ୍ଳାନ୍ତ ହୋଇ ଉଠିଲି। ଏଇଥି ପାଇଁ ଆତ୍ମହତ୍ୟା କରିଥିଲି। ଦୁଃଖ ହେଲା, ଅବଶୋଷ ହେଲା, ରୁଦ୍ର ମାଧବ ଉଠି ଠିଆ ହୋଇ ସିଗାରେଟ୍ ଝର୍କାବାଟେ ବାହାରକୁ ଫିଙ୍ଗି ଦେଇ 'ତୃପ୍ତି' ପାଖରେ ବସି ପଡି ପଚାରିଲେ ''ଆଚ୍ଛା ଏ ଶିଶିର କିଏ ? ଅନିଲ କିଏ ? ଆତ୍ମହତ୍ୟା କାହିଁକି କଲା ? ଏବଂ ତୁମକୁ କାହିଁକି ଟେଲିଗ୍ରାମ କରା ହୋଇଛି।''

ମୁଁ ନିଶ୍ୱାସ ବନ୍ଦ କରି 'ତୃପ୍ତି'ର ଉତ୍ତର ପାଇଁ ଅପେକ୍ଷା କଲି, ସେଇକ୍ଷଣଟା ଯେପରି ମୋ ପାଇଁ ପରୀକ୍ଷାର କ୍ଷଣ। ମୁଁ ଦୁଇ ଜଣଙ୍କ ପାଖରେ ଠିଆ ହୋଇ ବ୍ୟଗ୍ର

ହୋଇ ଉଠିଲି, 'ତୃପ୍ତି' ନୀରବ ରହିଲା । ରୁଦ୍ର ମାଧବ ନିଜ ପ୍ରଶ୍ନ ପୁନର୍ବାର ପଚାରିଲା ଏବଂ ମୁଁ ଦେଖିଲି 'ତୃପ୍ତି' ଦୁଇ ମୃଣାଳବାହୁ ରୁଦ୍ରମାଧବର ବେକରେ ଗୁଡ଼େଇ ହୋଇ ନିଜ ନିକଟକୁ ଟାଣି ନେଲା, ଅଧର ସହିତ ଅଧର ମିଶିବା ପୂର୍ବରୁ 'ତୃପ୍ତି'ର ସ୍ୱର ମୁଁ ଶୁଣିଲି, ଏ ରାତିରେ ମୃତ ବ୍ୟକ୍ତି ବିଷୟରେ କଥା କାହିଁକି ? କିଏ କେଜାଣି... ମୋର ମନେ ନାହିଁ । ସେ କଥା ଛାଡ । ଦେଖ... ମୋତେ ଦେଖ... ।

ଏବଂ ରୁଦ୍ର ମାଧବ 'ତୃପ୍ତି'ର ନଗ୍ନ ଶରୀରକୁ ନୀରିକ୍ଷଣ କରିବାକୁ ଲାଗିଲା । ଝର୍କାବାଟେ ପବନ ଜୋରରେ ଭିତରକୁ ଚାଲି ଆସିଲା ଟେବୁଲ ଉପରର ଟେଲିଗ୍ରାମଟି ଉଡିତଳେ ପଡିଲା । ଏବଂ ଏକ ଧକ୍କାରେ ମୋତେ ଯେପରି କିଏ ଫୁଲମାନଙ୍କ ଉପରକୁ ଫିଙ୍ଗି ଦେଲା,

କକ୍ଷ ଭିତରୁ ଏବେବି ଅସ୍ପଷ୍ଟ ଶବ୍ଦ ଶୁଭୁଥିଲା । ଏବଂ ବଗିଚାର ଫୁଲ ଗୁଡାକ ଝଡି ପଡିଥିଲେ ।

*ଶାଶ୍ୱତୀ : ଅକ୍ଟୋବର-ନଭେମ୍ବର ସଂଖ୍ୟା, ୧୯୭୨*

■■■

# ନଦୀ ଉଦ୍ୟାନ ଓ ମୁଁ

୧

## ନଦୀ:

ମୁଁ ପହଁରି ଜାଣିନାହିଁ । ତେଣୁ ନଦୀ ପ୍ରତି ମୋର ଏକ ଭୟ ମନ ଭିତରେ ପିଲାଦିନରୁ ରହି ଯାଇଛି । ଗାଁକୁ ଗଲେ ସମବୟସ୍କମାନେ ଉପହାସ ଭରା ଚକ୍ଷୁରେ ଲକ୍ଷ୍ୟ କରନ୍ତି । ଧୋୟା ଅଞ୍ଚଳର ବାସିନ୍ଦା ହୋଇ ପହଁରି ନ ଜାଣିବାଟା ସେମାନଙ୍କ ପକ୍ଷେ ଖୁବ୍ ଲଜ୍ଜାଜନକ କଥା । କିନ୍ତୁ ଏହା ସତ୍ତ୍ୱେ ମୁଁ ପହଁରି ଜାଣିନାହିଁ । ଗାଁରେ ନଦୀ ଥିଲା, ସହରରେ ନଦୀ ଅଛି, ଏପରି କୌଣସି ପ୍ରଦେଶ ମୁଁ ଦେଖି ନାହିଁ, ଯେଉଁଠିକି ନଦୀ ନାହିଁ, ନଦୀ ପ୍ରତ୍ୟେକ ସ୍ଥାନରେ ଅଛି ଏବଂ ପହଁରି ଜାଣୁଥିବା ବ୍ୟକ୍ତିମାନେ ବି ଅନେକ ଅଛନ୍ତି । ବେଳେ ବେଳେ ସେଇ ବ୍ୟକ୍ତି ବିଶେଷମାନଙ୍କ ମଧ୍ୟରେ ମୁଁ ଏକାକୀ ହୋଇପଡେ ଏବଂ ଆଖି ବନ୍ଦକରି ନିକଟସ୍ଥ ବାରକୁ ଚାଲିଯାଏ । ପ୍ରଥମ ପେଗ୍ ମୁଁ କିଛି ଅନୁଭବ କରିପାରେ ନାହିଁ । ସବୁ ନର୍ମାଲ, ହେଲେ ଦ୍ୱିତୀୟ ପେଗ୍ ମୁଁ ଖୁବ୍ ପ୍ରଫୁଲ୍ଲ ହୋଇ ଉଠେ । ମୁଁ ନିଜକୁ ଦେଖେ "ସୁଇମିଙ୍ଗ ସୁଟରେ ଏକ ଖରସ୍ରୋତା ନଦୀ ତୀରରେ ତା' ପରକ୍ଷଣରେ ମୋ ଆଖି ଆଗରୁ ସବୁ ଦୃଶ୍ୟ ଏବଂ ସବୁ କୋଳାହଳ ଦୂର ହୋଇ ଯାଆନ୍ତି, କେବଳ କେନ୍ଦ୍ରିଭୂତ ହୁଏ ଏକ ସ୍ନାନରତ ବ୍ୟକ୍ତି ଉପରେ । ବ୍ୟକ୍ତି ମୁଁ... ନଦୀର ଜଳରେ ଯେପରି କଂପନ । ଦୂର ତୀର ଯେପରି ମିଳନ ପାଇଁ ଅତୁର ହୋଇ ଉଠନ୍ତି, ମୁଁ ହଠାତ୍ ମଝି ନଦୀରେ ଠିଆ ହୋଇ ଦୂର ତୀରକୁ ହାତ ଉତ୍ତୋଳନ କରେ । ମୋ ହାତ ଦୂର ତୀରର ବାଲିକୁ ସ୍ପର୍ଶ କରେ । ମୁଁ ଦୂର ତୀରକୁ ଟାଣି ଆଣି ମିଳନ କରି ଦେବା ପାଇଁ ବ୍ୟାକୁଳ ହୋଇ ଉଠେ । ଏବଂ ଆଖି ଖୋଲି ବିଜୟ ଗର୍ବରେ ହସେ । ବାର୍‌ର ଲୋକମାନେ ଚମକି ଉଠନ୍ତି । ଅବଚେତନ ମନରେ ଥିବା ଭାବନା କିନ୍ତୁ କେବଳ ଏକ କଳ୍ପନା ହୋଇ ରହିଯାଏ । ଦୁଇଟି ସମାନ୍ତର ସରଳରେଖାର ମିଳନ ସ୍ଥଳୀ ଚିନ୍ତା କରିବା ମୂର୍ଖାମୀ ବ୍ୟତୀତ ଆଉ କିଛି ନୁହେଁ । ଏବଂ ମୁଁ ନଦୀକୁ ଭୟ କରେ । ଏପରି କି ନୌକାରେ ଯିବାକୁ ମଧ୍ୟ ଭୟକରେ ଏକାନ୍ତରେ ନଦୀ ତୀରରେ ଠିଆ ହୋଇ ଅସ୍ତଗାମୀ ସୂର୍ଯ୍ୟଙ୍କ ରକ୍ତିମ ଆଭା ଉପଭୋଗ କରିବାକୁ ଭଲ ଲାଗେ ।

କିମ୍ବା ନଦୀରେ ଦୁଇଗୋଡ ଝୁଲେଇ ଦେଇ ସିଗାରେଟ୍ ପିଇବାକୁ ପସନ୍ଦ କରେ। ନଦୀ ପରି ସାଗରର ଅନ୍ୱେଷଣରେ ଅନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଗତି, ମଧ୍ୟ ମୋ ପସନ୍ଦ ନୁହେଁ। ଅସ୍ଥିରତା ସପକ୍ଷରେ ମୁଁ ନୁହେଁ, କିନ୍ତୁ ନଦୀ ଅସ୍ଥିର... ସବୁ ବେଳେ ଅନ୍ୟ କିଛି ପାଇବା ଆଶାରେ ଆଗକୁ ଆଗକୁ ବଢ଼ି ଚାଲିବା ତାର ଧର୍ମ। ଏ ଦୁଇମାସ ହେବ ମୁଁ ମୋ ପୁରୁଣା ସହର ଛାଡ଼ିଛି, ଏ ସହରର ନଦୀ ଖୁବ୍ ଦୂରରେ। ସହଜରେ ତା ପାଖରେ ପହଞ୍ଚି ହୁଏ ନାହିଁ। କିନ୍ତୁ ପୁରୁଣା ସହରର ନଦୀ ଠିକ୍ ମୋ ଘର ପଛ ପଟେ ଧୀର ମନ୍ଥର ଗତିରେ ବହିଯାଉଥିଲା। ପ୍ରତିଦିନ ସଂଧ୍ୟାଟା ସେଇ ନଦୀ ତୀରରେ କଟୁଥିଲା। ବର୍ତ୍ତମାନ କେମିତିକା ଗୋଟାଏ ଖାପଛଡ଼ା ଲାଗୁଛି। ମୁଁ ଯଦି ଓ ଜାଣେ ଏଇ ଅନ୍ତରଂଗତ୍ୱର ସ୍ମୃତି ଚିହ୍ନ ମୋ ମନରେ ଅନେକ ଦିନ ରହିବ ନାହିଁ, ତଥାପି ମୁଁ ନିଜର ଏକାକୀତ୍ୱକୁ ହଠାତ୍ ଗ୍ରହଣ କରିପାରୁନି। ବେଳେ ବେଳେ ଇଚ୍ଛାହୁଏ ନଦୀ ନିଜ ଗତି ପଥ ବଦଳାଇ ମୋ ଘର ଦେଇ ଗତିକରି ପାରନ୍ତା ନାହିଁ ନଦୀର ହୁଏତ ସେ କ୍ଷମତା ଅଛି। ଅତି ଅକ୍ଲେଶରେ ସେ ନିଜ ଗତି ପଥ ବଦଳାଇ ପାରେ, ହେଲେ ମୁଁ... ମୋର ଗତିପଥ ତ ସୀମାବଦ୍ଧ, ସ୍ଥିର, ତେଣୁ ନଦୀ ମୋର ଅନୁଭୂତିକ ଅନୁଭବ କରୁଥାନ୍ତା, ତେବେ ହୁଏତ ସେ ଗତିପଥ ବଦଳେଇ ପାରିଥାନ୍ତା, ମୁଁ ତ ପହଁରି ଜାଣିନି, ନଦୀର ସ୍ରୋତର ପ୍ରତିକୂଳରେ ଯାଇ ତାକୁ ଅସ୍ତବ୍ୟସ୍ତ କରି ପାରିନି। ତେଣୁ ନଦୀର ଧର୍ମ ନୁହେଁ ମୋତେ ଚିରଦିନ ମନେ ରଖିବ। ମୁଁ ଯଦି ନୌକା ହୋଇଥାନ୍ତି ତେବେ ହୁଏତ.... ।

ତେଣୁ ନଦୀକୁ ମୁଁ ଭୟ କରେ। ତାର ହିଂସ୍ରତାକୁ ଭୟକରେ।

## ଉଦ୍ୟାନ:

ମୁଁ ଫୁଲକୁ ଭଲ ପାଏ, ତେଣୁ ଏଇଟା ସ୍ୱାଭାବିକ ଯେ, ଉଦ୍ୟାନକୁ ଭଲ ପାଇବି। କିନ୍ତୁ ଅନେକ ଅଛନ୍ତି ସେମାନେ ଫୁଲକୁ ଭଲପାନ୍ତି ଉଦ୍ୟାନକୁ ନୁହେଁ। ଆଉ ଅନେକ ଅଛନ୍ତି ଯେଉଁମାନେ ଉଦ୍ୟାନକୁ ଭଲ ପାନ୍ତି ଫୁଲକୁ ନୁହେଁ। ମୁଁ ଆଶ୍ଚର୍ଯ୍ୟ ହୁଏ ଫୁଲକୁ ଭଲପାଇ, ଫୁଲର ସମଷ୍ଟିକୁ ଭଲ ନ ପାଇବାଟା ସ୍ୱାର୍ଥପରତା ଏବଂ ଛଳନା। ମୁଁ ଭାବିଥିଲି ଉଦ୍ୟାନ କରିବି ମୋର ଘର ସାମ୍ନାରେ ଥିବା ଖାଲି ଯାଗାରେ, ଫୁଲ ଗଛ ଲଗାଇବି ଏବଂ ସଂଧ୍ୟାରେ ସେଇଠି ବସି ନିଜର କ୍ଳାନ୍ତି ଦୂର କରିବି। ତାପରେ ଗଛ ଲଗାଇଲି ଅନେକ ହେଲେ ସବୁଗଛ ମରିଗଲା, ବଂଚି ରହିଲା କେବଳ ଗୋଟିଏ ଗଛ।

ଏବଂ ମୁଁ ଈର୍ଷାଳୁ ହୋଇ ଉଠିଲି, ରାସ୍ତାରେ ଗଲା ବେଳେ ଅନ୍ୟର ବଗିଚାରେ ଫୁଲମାନଙ୍କୁ ହସୁଥିବାର ଦେଖିଲେ, ସେମାନଙ୍କୁ ଥାପଡ ମାରି କନ୍ଦାଇ ଦେବା ପାଇଁ ଇଚ୍ଛା ହୁଏ। ସେ ସୁନ୍ଦର ଗଛ ଓ ତା ଉପରେ ହଲୁଥିବା ରଂଗୀନ ଫୁଲମାନଙ୍କୁ ଛିଣ୍ଡାଇ ଫୋପାଡି ଦେବାକୁ ଇଚ୍ଛା ହୁଏ। ମାଳୀମାନଙ୍କୁ ଦେଖିଲେ ନିଜର ଅସମର୍ଥତା ପାଇଁ

ନିଜ ଉପରେ ମୋର କ୍ରୋଧ ହୁଏ । ଏଇ ମାଳୀମାନେ ତ ଫୁଲର ଯତ୍ନ ନେଇ ତାକୁ ଏତେ ସୁନ୍ଦର କରି ପାରିଛନ୍ତି, ମୁଁ କାହିଁକି ପାରୁନି ? ମୋ ହାତରେ କାହିଁକି ଗଛ ଗୁଡାକ ମରି ଯାଉଛନ୍ତି ।

ତାପର ଦିନ ମୁଁ ଏକ ସ୍ୱପ୍ନ ଦେଖିଲି, ମୋ ଉଦ୍ୟାନର ଏକମାତ୍ର ଗଛ ହଠାତ୍ ଏକ ଯୁବତୀ ପାଲଟି ଗଲା ଏବଂ ହସି ଉଠି କହିଲା ଇର୍ଷା କାହିଁକି କରୁଛ ? ଦେଖ ମୋତେ ଅନ୍ୟ କାହା ବଗିଚାରେ ମୋ ଅପେକ୍ଷା ସୁନ୍ଦର ଫୁଲ ପାଇପାରିବ ? ମୁଁ ତ ତୁମରି ପାଇଁ ସୃଷ୍ଟି, ଆସ ମୋତେ ତୋଳି ନିଅ, ମୋ ସୁଗନ୍ଧକୁ ମନ ଭରି ଉପଭୋଗ କର । ମୋତେ ବଞ୍ଚାଅ । ସ୍ୱପ୍ନ ଭାଙ୍ଗିଗଲା ପରେ ମୁଁ ବଗିଚାକୁ ଗଲି ଏବଂ ସେଇ ଫୁଲ ଗଛକୁ ଚୁମ୍ବନ କଲି ମୋ ଓଠରେ ଥିଲା ଯୁଗ ଯୁଗର ଶୋଷ । ଚୁମ୍ବନ କଲାପରେ ମୁଁ ଅସ୍ଥିର ହୋଇ ଉଠିଲି । ଗଛରେ ଫୁଲ ହେବା ପାଇଁ ଖୁବ୍ ଡେରି ଥାଏ, ଏବଂ ପ୍ରତି ରାତିରେ ସ୍ୱପ୍ନ ଦେଖୁଥାଏ । ଦିନେ ମୁଁ ସେଇ ଫୁଲ ନାଁରେ ଏକ ଚିଠି ଲେଖିଲି ।

ଫୁଲ ଗୁଡାକ କେତେ ସ୍ୱାର୍ଥପର । ମନ୍ଦିରରେ ଭଗବାନଙ୍କ ପାଦତଳେ ଲୋଟାଇ ଦେବାକୁ ସମସ୍ତଙ୍କ ଇଚ୍ଛା । ତାଙ୍କୁ ସିନା ବାଧ କରାଯାଇ ବାସର ଘରେ, ବ୍ୟବହାର କରାଯାଉଛି । ହେଲେ ସେମାନେ କଅଣ ସେତିକିରେ ତୃପ୍ତ ?

ମୁଁ ଫୁଲଟିଏ କାହାକୁ ଉପହାର ଦେଇ ପାରିନି । କାରଣ ମୁଁ ସେମାନଙ୍କୁ ଖୁବ୍ ଭଲ ପାଏ । ଏବଂ ସେଇ ଭଲ ପାଇବାଟା ଏତେ ବୃଦ୍ଧି ପାଇଲା ଯେ ମୁଁ ଆଉ କାହାକୁ ଭଲ ପାଇ ପାରିଲି ନାହିଁ ।

ମୋ ଉଦ୍ୟାନରେ ଗୋଟିଏ ଗଛ ମୋ ପ୍ରେମର ସ୍ପର୍ଶରେ ବଢ଼ି ଚାଲିଥାଏ । ରାତିରେ ତାକୁ ସ୍ୱପ୍ନ ଦେଖେ । ସକାଳୁ ଯତ୍ନ ନିଏ । ଦ୍ୱିପ୍ରହରେ ତା ପାଇଁ ଗୀତ ଲେଖେ । ସେ କେତେ ଦିନ ମଧ୍ୟରେ ମୁଁ ନିଜ ଏକାକୀତ୍ୱକୁ ସଂପୂର୍ଣ୍ଣ ଭୁଲି ସାରିଥିଲି ।

ଅନେକ ଦିନ ବିତିଗଲା । ଫୁଲ ଗଛ ଯୌବନର ସୀମାରେ ପ୍ରବେଶ କଲା, ହଠାତ୍ ଦିନେ ସକାଳୁ ମୁଁ ଆବିଷ୍କାର କଲି ଏକ ଛୋଟ କଢ଼ ।

ତିନି ଦିନପରେ ରାତିରେ ଶୋଇବା ପୂର୍ବରୁ ମୁଁ ମନରେ ଅନେକ ଆଶା, ଅନେକ କଳ୍ପନା, ଅନେକ କାମନା ଭରି ଶୋଇ ପଡିଲି । ସକାଳୁ କଢଟି ଫୁଲ ହୋଇଯିବ । ମୋତେ ଲାଗୁଥାଏ ଯେମିତି ଆସନ୍ତା କାଲି ସକାଳୁ ହିଁ ମୁଁ ମୋ ପ୍ରିୟତମାକୁ ପାଇପାରିବି । ଏତେ ଦିନ ଧରି ଦେଖିଥିବା ସ୍ୱପ୍ନ ମୋ ସଫଳ ହେବ । ରାତିରେ ସେଦିନ ଭଲ ଭାବରେ ଶୋଇ ମଧ୍ୟ ପାରିନଥିଲି ।

ସକାଳୁ ଉଠି ଉଦ୍ୟାନରେ ପହଞ୍ଚି ଚମକି ପଡିଲି । ଗଛରେ ଫୁଲ ନାହିଁ । ହଠାତ୍ ପଡ଼ୋଶୀ ସାମନ୍ତ ରାୟ ବାବୁ ହସି ଉଠି ଟିକେ ଉଚ୍ଚସ୍ୱରରେ କହି ଉଠିଲେ, ''ବାସ୍ତବିକ ଫୁଲଟା ଯାହା ହୋଇଥିଲା ନା ! କିଛି ମାଇଣ୍ଡ କରିବେ ନାହିଁ । ଫୁଲ ଦେଖିଲେ ମୁଁ ତାକୁ ନନେଇ ରହି ପାରେ ନାହିଁ । ଦେଖନ୍ତୁତ କୋଟରେ କେମିତି ମ୍ୟାଚ କରୁଛି ?''

ସେ ଦିନୁ ଜୀବନରେ ହତାଶ ଭାବ ପ୍ରବେଶ କଲା । ବ୍ୟର୍ଥତା ଜାଣେନା କାହିଁକି ମୋତେ ଗ୍ରାସ କଲା, ମୁଁ ଆଉ କାହାକୁ ଭଲ ପାଇ ପାରିଲି ନାହିଁ । ଉଦ୍ୟାନ ବି କରି ପାରିଲି ନାହିଁ । ଭୟ ହୁଏ ମୋ ଉଦ୍ୟାନର ଫୁଲକୁ ଅନ୍ୟ କେହି ଛିଣ୍ଡାଇ ନେଇ ନିଜ ଖୋସା, ବା କୋଟରେ ବ୍ୟବହାର କରିବ ନାହିଁତ ?

ମୋ ଜୀବନର ଲକ୍ଷ୍ୟ ହଜିଗଲା, ମୋତେ ଲାଗିଲା ଯେମିତି ମୋ ପ୍ରିୟତମାକୁ କେହି ମୋ ନି‌ ଟରୁ ମୋ ଅଜାଣତରେ ଛିଡାଇ ନେଇ ହସୁଛି । ମୁଁ କିଛି କରିନପାରି ଦୂରରୁ ଦେଖି କେବଳ ଦୀର୍ଘଶ୍ୱାସ ତ୍ୟାଗ କରୁଛି ।

ସେଦିନୁ ଫ‌ ‌ କ ଭଲ ପାଇଲେ ମଧ୍ୟ ଉଦ୍ୟାନ କରି ପାରେ ନାହିଁ, କିମ୍ୱା ନିଜ ଘରେ ବଗିଚା କରିପା‌ ‌ରେ ନାହିଁ । ଅନ୍ୟ ବଗିଚାରେ ଫୁଲ ଦେଖି ସନ୍ତୋଷ ଲାଭ କରେ,

ତଥାପି ମୁଁ ଫୁଲକୁ ଭଲ ପାଏ । ତାର କୋମଳତାକୁ ମଧ୍ୟ ଭଲ ପାଏ ।

ନିଜକଥା- ମୁଁ ନଦୀକୁ ଭୟକରେ । ଫୁଲ ଓ ଉଦ୍ୟାନକୁ ଭଲପାଏ । ନଦୀ ଯେପରି କେବେ କାହାରି ହୋଇ ପାରି ନାହିଁ । ଫୁଲ ସେପରି କେବେ କାହାରି ହୋଇ ପାରି ନାହିଁ ।

□ ସ୍ୱର : ଜୁନ୍ ୧୯୭୪

■ ■ ■

# ଆଘାତ

ପ୍ରଥମ କରି ଯେତେବେଳେ ଶୁଣିଲି ରିଜିୟା ବେଗମ ଶଙ୍କର ମୃତ୍ୟୁର ମାତ୍ର ମାସକ ପରେ ସେଇ ବୃଦ୍ଧା ଆଫଜଲ ଖାଁକୁ ବିବାହ କରିଛି, ଯିଏ ତା ସୁଖମୟ ବୈବାହିକ ଜୀବନ ପଥରେ ନାନା ପ୍ରକାରର ପ୍ରତିବନ୍ଧକ ସୃଷ୍ଟି କରି ଆସୁଥିଲା, ସେତେବେଳେ ପ୍ରଥମେ ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ପରେ ପରେ ଶଙ୍କରର ଆତ୍ମା ପ୍ରତି ସହାନୁଭୂତି ଜ୍ଞାପନ କରି ରିଜିୟାକୁ ଘୃଣା କରିବାକୁ ଆରମ୍ଭ କଲି ।

ସେଦିନ ଅଫିସରେ ଏ ସମ୍ବାଦ ପ୍ରତ୍ୟେକଙ୍କୁ ଚକିତ କରି ଦେଇଥିଲା । ପ୍ରଥମେ ମୂର୍ତ୍ତୀ ଯେତେବେଳେ ଏ ସଂବାଦ ସମସ୍ତଙ୍କୁ କହିଲା, ସେତେବେଳେ ପ୍ରତ୍ୟେକ ମୋ ପରି ଅବିଶ୍ୱାସ କରିଥିଲେ, ଶଙ୍କରର ମୃତ୍ୟୁ ପାଇଁ ଆଫଜଲ ଖାଁ ଦାୟୀ । ଏକଥା ସମସ୍ତେ ଜାଣନ୍ତି । କେବଳ ଟଙ୍କା ଥିଲା ବୋଲି ଆଫଜଲ ଖାଁକୁ ପୋଲିସ ଛାଡି ଦେଲା । ରିଜିୟା ମଧ୍ୟ ଏକଥା ଜାଣେ । ତଥାପି ସେ ତାକୁ ବିବାହ କଲା.... ।

କିନ୍ତୁ ସତ୍ୟକୁ ଅସ୍ୱୀକାର କରି ହେବ ନାହିଁ । ସମସ୍ତେ ସହକର୍ମୀ ଶଙ୍କରର ଆତ୍ମା ପ୍ରତି ଗଭୀର ସହାନୁଭୂତି ପ୍ରକାଶ କରି ନିଜ ନିଜ ଟେବୁଲକୁ ଫେରିଗଲେ, ମୁଁ ଶଙ୍କର ବସୁଥିବା ଟେବୁଲକୁ ଲକ୍ଷ୍ୟକଲି । ନୂଆ ହୋଇ ନିଯୁକ୍ତି ପାଇଥିବା 'ସକ୍ସେନା' ଏବେ ସେଠାରେ ବସୁଛି । ମାସକ ତଳେ ସେଠି ଶଙ୍କର ବସୁଥିଲା । ଯିଏକି ମୋର ଅନ୍ତରଂଗ ବନ୍ଧୁଥିଲା ।

ମାସକ ତଳେ ହଠାତ୍ ଏହି ପରି ଏକ ଦିନରେ ଶଙ୍କର ଅନେକ ସମୟ ପର୍ଯ୍ୟନ୍ତ ଅଫିସ ଆସିନଥିଲା । ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ପଡିଥିଲୁ । ପ୍ରାୟ ଦିନ ଗୋଟାଏ ବେଳେ ରିଜିୟା ରିକ୍ସାରେ ଅସ୍ତବ୍ୟସ୍ତ ଭାବେ କାନ୍ଦି କାନ୍ଦି ଅଫିସରେ ପହଞ୍ଚିଲା । କିନ୍ତୁ ଦୁର୍ଭାଗ୍ୟ ଆମେ ହସପିଟାଲରେ ପହଞ୍ଚୁ ପହଞ୍ଚୁ ଶଙ୍କର ଇହଧାମ ତ୍ୟାଗ କରି ସାରିଥିଲା, ନିଜ ପଛରେ ଦୁଇଟି ସନ୍ତାନ ଏକ ବିଧବା ସ୍ତ୍ରୀକୁ ଛାଡି ।

ମୃତ୍ୟୁ ପୂର୍ବଦିନ ରାତ୍ରିରେ ସେ ଘରକୁ ଫେରି ନଥିଲା । ଅନୁସନ୍ଧାନରୁ ଜଣା ପଡିଲା ଯେ ରାତିରେ ସେ ଘରକୁ ଫେରିବା ସମୟରେ ମୁସଲମାନ ବସ୍ତିରେ ତାକୁ କେତେଜଣ ମିଳିମିଶି ପିଟିଥିଲେ ଏବଂ ତାର ସଞ୍ଜ୍ଞାହୀନ ଶରୀରକୁ ସହର ବାହାରେ ଫିଙ୍ଗି ଦେଇଥିଲେ ।

କେହି ଜଣେ ଭଦ୍ରବ୍ୟକ୍ତି ତାର ରକ୍ତାକ୍ତ ଶରୀରକୁ ଦେଖି ହସପିଟାଲରେ ଆଣି ପହଞ୍ଚାଇ ଦେଲା ପରେ ଶଙ୍କର ନିଜ ସ୍ତ୍ରୀ ଓ ଘର ଠିକଣା କହିଥିଲା ।

''ଏଥିପାଇଁ ସେଇ ବୁଢା ଆଫଜଲ ଖାଁ ହିଁ ଦାୟୀ, ଆରମ୍ଭରୁ ପାଞ୍ଚ ବର୍ଷ ହେଲା ସେ ଆମ ପଛରେ ଲାଗିଥିଲା । ତା'ରି ଚକ୍ରାନ୍ତରେ ଏସବୁ ହୋଇଛି ।'' ରିଜିୟା କାନ୍ଦି କାନ୍ଦି ପୋଲିସକୁ ନିଜ ସନ୍ଦେହ କହିଥିଲା ।

କିନ୍ତୁ ମୁସଲମାନ ବସ୍ତିର ମୁଖିଆ ବିରୁଦ୍ଧରେ କୌଣସି ପ୍ରମାଣ ପାଇ ପାରିନଥିଲା, ଆଜି ସେଇ ଆଫଜଲ ଖାଁକୁ ରିଜିଆ ବିବାହ କଲା, ମୁଁ ତଥାପି ବିଶ୍ୱାସ କରି ପାରୁନଥିଲି । ମୋ ଆଖି ଆଗରେ ଘୋର ବିଶ୍ୱାସରେ ପରିପୂର୍ଣ୍ଣ ରିଜିଆର ନୀରିହ ମୁଖମଣ୍ଡଳ ଭାସି ଉଠୁଥିଲା ।

ମୁଁ ଧୀରେ ଧୀରେ ଭାବପ୍ରବଣ ହୋଇ ପଡୁଥିଲି, ନିଜ ଚତୁଃପାର୍ଶ୍ୱର ବାତାବରଣକୁ ଭୁଲି, ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ ହୋଇ ଯାଇଥିଲେ, ମୁଁ ମନେ ମନେ ଅସ୍ଥିର ହୋଇ ଉଠିଲି । ମୋ ସମ୍ମୁଖରେ ଫାଇଲମାନ ଥାକ ଥାକ ହୋଇ ଗଦା ହୋଇଥିଲା, ଅନ୍ୟ ମନସ୍କ ହୋଇ ମୁଁ ନିଜ କର୍ତ୍ତବ୍ୟ ସଂପାଦନା କରିବାକୁ ଲାଗିଲି । ଏବଂ ମୋ ଆଖି ଆଗରେ ଅତୀତଟା ସ୍ପଷ୍ଟ ହୋଇ ଉଠିଲା । ମୁଁ ଅଫିସର ଉକ୍ତ କର୍ମବ୍ୟସ୍ତ ବାତାବରଣ ଠାରୁ ଦୂରେଇ ଯାଇ ପହଞ୍ଚି ଗଲି ମୁସଲମାନ ବସ୍ତିର ଏକ କ୍ଷୁଦ୍ର କକ୍ଷ ମଧ୍ୟରେ । ଯେଉଁଠି ଶଙ୍କର ଓ ମୁଁ ଦୁହେଁ ଯାପନ କରୁଥିଲୁ ଏକ ଚିନ୍ତାମୁକ୍ତ ଜୀବନ । ସେଇଠି ରହି ଶଙ୍କର ହଠାତ୍ ପଡୋଶୀ ବିଧବାଙ୍କର ଏକମାତ୍ର କନ୍ୟା ରିଜିୟାକୁ ଭଲ ପାଇ ବସିଲା, ରିଜିଆର ବାପା ଅନେକ ଦିନରୁ ସେମାନଙ୍କୁ ଦୁଃଖମୟ ଦୁନିଆଁରେ ଛାଡି ଦେଇ ଚାଲିଯାଇଥିଲେ । ତାର ମା' ଭିନ୍ନ ଭିନ୍ନ ଘର ମାନଙ୍କରେ କାମ କରି ନିଜର ରିଜିଆର ଗୁଜୁରାଣ ମେଣ୍ଟାଉଥିଲେ ।

ଶଙ୍କର ରିଜିୟାର ପ୍ରେମ ଆରମ୍ଭଟା ମୁଁ ଜାଣେ ନାହିଁ । ହଠାତ୍ ଦିନେ ଶଙ୍କର ମୋତେ ନିଜ ସହିତ ପାର୍କକୁ ଡାକିନେଲା, ''ଆ ତୋତେ ଜଣକ ସହିତ ପରିଚିତ କରାଇ ଦେବି ।''

ପାର୍କର ଶାନ୍ତ ସ୍ନିଗ୍ଧ ବାତାବରଣରେ ପ୍ରଥମ ଥର ମୁଁ ରିଜିଆକୁ ଭଲ ଭାବରେ ଦେଖିଲି । ପ୍ରକୃତରେ ସେ ଦିନ ତାର ସୌନ୍ଦର୍ଯ୍ୟ ଓ ବ୍ୟବହାରରେ ମୁଗ୍ଧ ନହୋଇ ରହି ପାରିଲି ନାହିଁ ।

ସେଇଟା ଥିଲା ପ୍ରଥମ ସାକ୍ଷାତ, ତାପରେ ଅନେକ ଥର, ଅନେକ ସ୍ଥାନରେ ଆମ ତିନିଜଣଙ୍କର ସାକ୍ଷାତ ହୋଇଛି, ଏକ ସଂଗେ ବୁଲିଛୁ । ରାସ୍ତାର ଦୈର୍ଘ୍ୟ ମାପିବାକୁ ଚେଷ୍ଟା କରିଛୁ । ପାର୍କରେ ବସିଛୁଁ ଏବଂ ବିଭିନ୍ନ ବିଷୟରେ ଆଲୋଚନା କରିଛୁ ।

ଦିନେ ରାକ୍ଷୀ ପୂର୍ଣ୍ଣିମାରେ ରିଜିଆ ରାକ୍ଷୀ କିଣି ମୋ ହାତରେ ବାନ୍ଧି ମୋତେ ନିଜର ଭାଇ କରି ନେଇଥିଲା । ଶଙ୍କର ସେଦିନ ଆନନ୍ଦରେ ନାଚି ଉଠି ମୋତେ ''ଶଳା'' ସଂବୋଧନ କରିଥିଲା ଏବଂ ମୃତ୍ୟୁ ପର୍ଯ୍ୟନ୍ତ ସେ ମୋତେ କେବଳ ''ଶଳା'' ହିଁ ସଂବୋଧନ କରି ଆସିଥିଲା ।

ସେ ସବୁ ଅନେକ ଦିନର । ପ୍ରାୟ ଛଅବର୍ଷ ତଳର କଥା । ନୂଆ ନୂଆ କଲେଜରୁ ବାହାରି ଆମେ କେବଳ ଇଣ୍ଟରଭିୟୁ ଦେବାକୁ ପ୍ରସ୍ତୁତ ହେଉଥାଉ । ମନରେ ଆଶା, କଳ୍ପନା ଥାଏ । ସେଇପରି ସମୟରେ ଦିନେ ପାର୍କରେ ରିଜିୟା ଉଦାସ ହୋଇ କହିଲା ''ଆଜି ମା କହୁଥିଲା, ମୋ ବାହାଘର ବସ୍ତିର ମୁଖିଆ ଆଫଜଲ ଖାଁ ସହିତ କରିଦେବ ।''

''ସେ ବୁଢ଼ା ଅଫଜଲ ଖାଁ ସହିତ'' ? ଶଙ୍କର ହସିଥିଲା, ''ଯା'ର ତମେ ନାତୁଣୀ ପରିହେବ ?'' ରିଜିୟା ନୀରବରେ ମୁଣ୍ଡ ହଲାଇଲା । ମୁଁ କେବଳ ହସିଲି । ''ତମେ ଥଟ୍ଟା କରୁଛ'' ।

ରିଜିୟା ମନା କଲା, ''ମୁଁ ସତ କହୁଚି । ତମେ କିଛି ବ୍ୟବସ୍ଥା କର ନଚେତ ମୁଁ ବିଷ ଖାଇ ଦେବି ।''

ମୁଁ ସତର୍କ ହେଲି, ଶଙ୍କର ସଂଯତ ହେଲା । ମୁଁ ପ୍ରସ୍ତାବ ଦେଲି, ''କୋର୍ଟରେ ବାହାହୋଇ ପଡ, ତମେ ତ ବୟସ୍କା ।'' ଶଙ୍କର ଗର୍ଜିଆକୁ ଅନେଇଲା, ରିଜିୟା ମୁଣ୍ଡ ହଲାଇଲା ''ଭାଇ ଠିକ୍ କହୁଛନ୍ତି । ଏହା ବ୍ୟତୀତ ଅନ୍ୟ ଉପାୟ ନାହିଁ ।''

ସେଇ ଦିନ ସଂଧ୍ୟାରେ ବୃଦ୍ଧ ଆଫଜଲ ଖାଁ ଓ ଅନ୍ୟ ତିନିଜଣ ବସ୍ତି ଲୋକ ମୋତେ ଓ ଶଙ୍କରକୁ ରାସ୍ତାରେ ଅଟକାଇ ଧମକ ଦେଇ ଥିଲେ ''ଏ ବସ୍ତିର ଝିଅ ବୋହୂଙ୍କ ସହିତ ଖରାପ ବ୍ୟବହାର କଲେ ତମେ ଏଠି ରହି ପାରିବ ନାହିଁ ।''

ସେତେବେଳେ ଆମ ରକ୍ତ ଗରମ ଥିଲା । ଆମେ ହସିଥିଲୁ, ତାପରେ ଏକ ଅନ୍ତରାଳ, ହଠାତ୍ ମୁଁ ଗାଁରେ ବାପାଙ୍କ ଶରୀର ଅସୁସ୍ଥର ସଂବାଦ ପାଇ ଗାଁ ଚାଲି ଗଲି । ଶଙ୍କର ଚିଠି ଦିଏ । ଥରେ ଥରେ ଲେଖେ, ''ତୁ ଚାଲିଗଲୁ, ଏଠି ମୁଁ ଏକା, ଅଫଜଲଖାଁ ଓ ତାର ଦଳ ମୋତେ ପ୍ରତି ପଦକ୍ଷେପରେ ଜଗି ରହିଛନ୍ତି । ରିଜିୟା ସହିତ ଦୀର୍ଘ ଦିନ ଧରି ଦେଖା ମଧ ହେଉନାହିଁ । ବିବାହ ପାଇଁ କୋର୍ଟରେ ଦରଖାସ୍ତ ଦେଇଛି ଇତ୍ୟାଦି...

ମୋର ଖୁବ୍ ଇଚ୍ଛା ହୁଏ ଶଙ୍କର ନିକଟକୁ ଯାଇ ତାକୁ ସାହାଯ୍ୟ କରିବାକୁ । କିନ୍ତୁ ପରିସ୍ଥିତି ଦୃଷ୍ଟିରୁ ମୁଁ ନିରୁପାୟ ଥିଲି । କେବଳ ତାକୁ ଉତ୍ସାହ ଦେଇ ଚିଠି ଲେଖେ ।

ତାପରେ ହଠାତ୍ ଦିନେ ଶଙ୍କର ଚିଠି ପାଇଲି ''ଗୁରୁବାର ଦିନ କୋର୍ଟରେ ବିବାହ ହେବ, ତୁ ନିଶ୍ଚୟ ଆସିବୁ ।''

ବାପାଙ୍କ ଦେହ ଭଲ ଥାଏ, ତେଣୁ ସେହି ଦିନ ସଂଧ୍ୟାରେ ମୁଁ ସହରରେ ପହଞ୍ଚି ସିଧା ବସ୍ତିକୁ ଘରକୁ ଗଲି । ବସ୍ତିର ଲୋକମାନେ ଉତ୍ୟକ୍ତ ହୋଇ ବୁଲୁଥାନ୍ତି, ମୋତେ ଦେଖି ଅନେକ ଉତ୍ତେଜିତ ହୋଇ ମନ୍ତବ୍ୟ ପ୍ରକାଶ କଲେ । ମୁଁ ମନେ ମନେ ହସିଲି । ଏବେ ମଧ ଆମେ ଜାତି, ଧର୍ମ ପାଇଁ ନିଜ ନିଜ ମଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ।

ଉକ୍ତ କ୍ଷୁଦ୍ର କକ୍ଷ ସମ୍ମୁଖରେ ଗୋଟଏ କନେଷ୍ଟବଲ ଠିଆ ହୋଇଥାଏ, ଶଙ୍କର ମୋତେ ଦେଖି ଆନନ୍ଦରେ ଚିତ୍କାର କଲା, ତା ମୁଣ୍ଡରେ ପଟି ଭିଡା ହୋଇଥାଏ । ମୁଁ

ଆଶ୍ଚର୍ଯ୍ୟ ହେଲି, ବସ୍ତିର ବାତାବରଣ ମୋତେ କ୍ଷୁବ୍ଧ କରି ପକାଉଥାଏ । ହିନ୍ଦୁ, ମୁସଲମାନ ମଧ୍ୟରେ ପାର୍ଥକ୍ୟକୁ ଏମାନେ ଏତେ ଗୁରୁତ୍ୱ କାହିଁକି ଦେଉଛନ୍ତି । ଦୁହେଁତ ସେଇ ମଣିଷ, ରକ୍ତତ ସେଇ ଏକ...ଲାଲ ।

କୋର୍ଟକୁ ଗଲାବେଳେ ବାଟରେ ଆଫଜଲ ଖାଁର ଦଳ ଆକ୍ରମଣ କରି... । ମୁଁ ସେଇ ଅବସ୍ଥାରେ ଯାଇ ବିବାହ କରି ନିଜର ସୁରକ୍ଷା ପାଇଁ ଅନୁରୋଧ କଲି । ତେଣୁ ବାହାରେ କନେଷ୍ଟବଲ ।

ମୁଁ ମନେ ମନେ ଆନନ୍ଦିତ ହୋଇଥିଲି । ପ୍ରେମ କରି ଖୁବ୍ କମ୍ ସଫଳ ହୋଇଥାନ୍ତି ନିଜ ଲକ୍ଷ୍ୟରେ । କେତେବେଳେ ପୁରୁଷ ହାରିଯାଏ । କେତେବେଳେ ନାରୀ ଭୁଲିଯାଏ । କିନ୍ତୁ ଶଙ୍କର ଖୁବ୍ ଭାଗ୍ୟବାନ, ରିଜିୟା ପରି ସୁନ୍ଦରୀ ଓ ବ୍ୟବହାର ନିପୁଣା ଏକ ନାରୀକୁ ସହଧର୍ମିଣୀ ରୂପେ ପାଇଥିବାରୁ ।

ତାପରେ ଅନେକ ଦିନ ବିତିଯାଏ... ଧିରେ ଧିରେ । ଦୁହେଁ ଏକାସଂଗେ ଏକା ଅଫିସରେ ନିଯୁକ୍ତି ପାଇଁ ରିଜିୟା ମା' ଇହଧାମ ତ୍ୟାଗ କରନ୍ତି ଏବଂ ଶଙ୍କର ଭଡାଘର ଛାଡି ରିଜିୟା ସହିତ ଉକ୍ତ ଘରେ ରୁହେ ।

ସବୁ ସୁରୁଖୁରୁରେ ଚାଲେ । କିନ୍ତୁ ଆଫଜଲ ଖାଁ ଓ ତାର ଦଳ ପ୍ରତି ପଦକ୍ଷେପରେ ପ୍ରତିବନ୍ଧକ ସୃଷ୍ଟି କରନ୍ତି, ଶଙ୍କର ଓ ରିଜିୟା ଯେତେ ଚାହିଁଲେ ମଧ୍ୟ ସାମାନ୍ୟ ଟିକେ ଶାନ୍ତି ପାଇ ପାରନ୍ତି ନାହିଁ ।

ବର୍ଷ ବର୍ଷ ହୋଇ ପାଞ୍ଚବର୍ଷ ବିତିଯାଏ । ଶଙ୍କର ଓ ରିଜିୟା ଦୁଇଟି ସନ୍ତାନର ବାପା ମା ହୁଅନ୍ତି, ଅଫଜଲ ଖାଁ ତଥାପି ଶନି ଗ୍ରହ ପରି ସେମାନଙ୍କ ପଛରେ କେବଳ ରିଜିୟାର ଶରୀର ପାଇଁ ଲାଗି ଥାଏ ।

ଶଙ୍କର ମୃତ୍ୟୁର ପ୍ରାୟ ତିନିଦିନ ତଳେ ରିଜିୟାକୁ ନେଇ ମୋ ନିକଟକୁ ଆସିଥିଲା, ଅନେକ ସମୟ ଯାଏଁ, ବିଭିନ୍ନ କଥା ପରେ ହଠାତ୍ ରିଜିୟା ମୋତେ ଅନେଇ ଅଭିଯୋଗ ଭରା ସ୍ୱରରେ କହିଥିଲା । "ଭାଇ ଯାଙ୍କୁ ଟିକେ ବୁଝାଅ, ଦୁଇଟି ଛୁଆଁ... ତାଙ୍କ ପାଇଁ କିଛି ସଞ୍ଚୟ ନକଲେ କେମିତି ହେବ । ମାସକୁ ତ ଯାହା ଟଙ୍କା ଆସୁଛି ସେଥିରେ ଅତି କଷ୍ଟରେ ସବୁ ଖର୍ଚ୍ଚ ଚଳେଇବାକୁ ପଡୁଛି, ମୁଁ ବା ଯଦି ପାଠ ପଢିଥାନ୍ତି, ତେବେ ହେଲେ କିଛି ଚାକିରି କରି ସାହାଯ୍ୟ କରିପାରିଥାନ୍ତି, କିନ୍ତୁ ମୁଁ ତ ଅପାଠୋଇ, ମୋ ଦ୍ୱାରା କିଛି ହେବ ନାହିଁ । କେବଳ ଇଏ ଯଦି ନିଜ ସିଗାରେଟ୍, ଚା ଓ ସିନେମା ଖର୍ଚ୍ଚ ବନ୍ଦକରି ଦିଅନ୍ତେ... ।

ଶଙ୍କର ହସିଥିଲା, ମୁଁ ମଧ୍ୟ ହସିଥିଲି । "ରଜୁ"... ସଂଚୟ ଆମ ପରି କିରାନୀମାନଙ୍କ ପକ୍ଷେ ଅସମ୍ଭବ । ବଜାର ଦର ପ୍ରତିଦିନ ବଢି ଚାଲିଛି । ଟାକ୍ସ ବଢି ଚାଲିଛି ହେଲେ ଦରମା ଯେତିକି ସେତିକି । ସଂଚୟ କଥା ଭୁଲିଯା । ରିଜିୟା କୃତ୍ରିମ କ୍ରୋଧରେ ନାକଟେକି ଥିଲା । "ଦୁହିଁକୁ ଦୁହେଁ ସମାନ । କିନ୍ତୁ ତା'ର ମାତ୍ର ତିନୋଟି ଦିନ ପରେ ସବୁ ଶେଷ ହୋଇଗଲା । ସେ ହସ, ସେ ଉତ୍ସାହ, ସେ ଅପନତ୍ୱ ସବୁ ହଜିଗଲା ଦୂର ଦିଗ୍‌ବଳୟର ଆରପଟେ ।

ମୁଁ ଆତ୍ମସ୍ଥ ହେଲି, ନିଜ ଭାବନା ମଧ୍ୟରେ ବନ୍ଦୀହୋଇ ମୁଁ ସବୁକିଛି ଭୁଲି ଯାଥିଲି । ଆଖିରେ ନିଜ ଅଜାଣତରେ ଲୁହ ଭରି ଯାଇଥିଲା । ଜୀବନରେ ଅନ୍ତରଂଗ ବଂଧୁ ଖୁବ୍ କମ୍ ମିଳନ୍ତି । ବିଶ୍ୱସ୍ତ ସ୍ୱାମୀ ମଧ୍ୟ କଦାଚିତ ମିଳନ୍ତି । ସେପରି ବ୍ୟକ୍ତି ବିଶେଷଙ୍କୁ ଭୁଲି ହୁଏନା । କିନ୍ତୁ ରିଜିୟା ଭୁଲିଗଲା । ଯେଉଁ ଯୁବକକୁ ସେ ପ୍ରେମ କରିଥିଲା, ଯିଏ ତା ପାଇଁ ନିଜ ପରିବାର ଜାତି, ଧର୍ମ ସବୁକିଛି ଭୁଲିଥିଲା । ଯିଏ ତା ପାଇଁ ନିଜ ଜୀବନ ପ୍ରତି ଭ୍ରୂକ୍ଷେପ କରି ନଥିଲା, ଯିଏ ତା ପାଇଁ ଶେଷରେ ମୃତ୍ୟୁ ବରଣ କଲା, ତାକୁ ଏତେ ସହଜରେ ରିଜିୟା ଭୁଲି ପାରିଲା, ମାତ୍ର ମାସକ ପରେ ସେ ପୁଣି ଅନ୍ୟକୁ ବିବାହ କରି ପାରିଲା, ମୋ ମନଟା ବିଷାକ୍ତ ହୋଇ ଉଠିଲା, ଏତେ କୃତଘ୍ନ ।

ଶଙ୍କରକୁ ଶ୍ମଶାନରେ ପାଉଁଶ କରି ଫେରିବା ପରେ ଯିଏ ରିଜିୟାକୁ ଦେଖିଥିବ, ସେ ହୁଏତ ଆଜିର ସଂବାଦରେ କେବେ ବିଶ୍ୱାସ କରି ପାରିବ ନାହିଁ । ସେଦିନ ଘର ସାମ୍ନା ମାଟିରେ ଗଡି ଗଡି ତାର ଯେଉଁ ବିଳାପ ତା, ଏବେ ମଧ୍ୟ ମୋର ମନେ ଅଛି, ତାର ସେ ଯେଉଁ ଲୁହ ଧାର, ତା ମଧ୍ୟ ଏବେ ସୁଦ୍ଧା ମୋର ମନେ ଅଛି, ସେ ସବୁ ତାହା ହେଲେ କଣ କେବଳ ଛଳନା, ଏକ ସୁବିଧାବାଦୀ ନାରୀର ଅଭିନୟ । ମୁଁ ଉତ୍ତେଜିତ ହୋଇ ଉଠିଲି ।

ଯନ୍ତ୍ର ଚାଳିତ ପରି ମୋ ହାତ ଫାଇଲରେ କଲମଗାର ପକାଇ ଚାଲିଥାଏ । ଏବଂ ମୋ ମସ୍ତିଷ୍କ ରିଜିୟା କଥା ବିଶ୍ଳେଷଣ କରି ଚାଲିଥାଏ । ମନେ ମନେ ମୁଁ ଅସହ୍ୟ ହୋଇ ଉଠିଥାଏ । ଅଫିସରୁ ବାହାରି ମୁଁ ରାସ୍ତାରେ ଠିଆ ହୋଇ ଚତୁର୍ଦ୍ଦିଗ ନୀରିକ୍ଷଣ କଲି । କୌଣସି ଟିକେ ବି ପରିବର୍ତ୍ତନ ନାହିଁ, ଶୀତ ଦିନର ସଂଧ୍ୟା କାହାକୁ ନ ଜଣାଇ ସହର ଉପରେ ଅଧିପତ୍ୟ ଜମାଇ ଦେଇଛି । ମୁଁ ପକେଟରେ ହାତ ଭରି, କ୍ଲାନ୍ତ ପାଦରେ ଆଗକୁ ଅଗ୍ରସର ହେବା ସମୟରେ ଏକ ପରିଚିତ ନାରୀ କଣ୍ଠ ''ଭାଇ'' ।

ମୁଁ ଅଟକି ଗଲି, ପଛକୁ ମୁହଁ ବୁଲାଇ ଚାହିଁବା ପାଇଁ ଇଚ୍ଛା ହେଲା ନାହିଁ, ଏପରି ଛଳନାମୟୀ ନାରୀକୁ ମୁଁ ଘୃଣା କରେ ।

''ମୁଁ ତୁମକୁ ଅନେକ ବେଳୁ ଏଠି ଠିଆ ହୋଇ ଅପେକ୍ଷା କରିଥିଲି ।''

ସେ ମୋ ସାମ୍ନାକୁ ଚାଲି ଆସିଲା,

ମୁଁ ତାକୁ ଲକ୍ଷ୍ୟ କଲି । ସନ୍ଧ୍ୟାର ନମ୍ର ଅନ୍ଧାର ମଧ୍ୟରେ ତା ମୁଖାକୃତି ମୋତେ ସଂପୂର୍ଣ୍ଣ ଅଚିହ୍ନା ଜଣାଗଲା, ଅତୀତର ରିଜିୟାର ଇଏ... ଯେମିତି ଏକ ଛାଇ, ଗୋରା ରଂଗ ସାମାନ୍ୟ ମଳିନ ପଡିଯାଇଛି, ମୁହଁ ଶୁଖିଲା ଆଖି ଜ୍ୟୋତିବିହୀନ ।

''ମୁଁ ତୋ ନିକଟରୁ ଏକଥା ଆଶା କରିନଥିଲି'' ମୁଁ ବିଷାକ୍ତ ହୋଇ କହି ଉଠିଲି ।

''ଭାଇ'', ତା ସ୍ୱରରେ କୋହ ଭରିଗଲା, ''ଥରେ ମୋ ଘରକୁ ଯାଇ ଦେଖିଥାନ୍ତ, ମୋ ଛୁଆ କେମିତି ଅଛନ୍ତି,... ମୁଁ କେମିତି ଅଛି ।.... ତା ପରେ କହିଥାନ୍ତ ।'' ତାପରେ ନିଜକୁ ସଂଯତ କରି ମୋତେ ଲକ୍ଷ୍ୟ କଲା । ''ମୁଁ ଜାଣେ

ମୋତେ ସମସ୍ତେ ଭୁଲ ବୁଝିବେ। ସମସ୍ତଙ୍କ ଭୁଲ ବୁଝିବା ପ୍ରତି ମୋର ଖାତିର ନାହିଁ। କେବଳ ତମେ ଭାଇ, ତମେ ମୋତେ ଭୁଲ ବୁଝ ନାହିଁ, ତାଙ୍କ ଆତ୍ମା ଦୁଃଖ ପାଇବ।''

ତା ସ୍ୱରରେ କଣ ଥିଲା କେଜାଣି ମୋ ଆଖିରେ ଲୁହ ଜକେଇ ଆସିଲା, ତଳ ଓଠ ଥରିବାକୁ ଆରମ୍ଭ କଲା। ଏବଂ ମୋତେ ଲାଗିଲା ମୁଁ କାନ୍ଦି ପକାଇବି। ''ସେ ତିରିଶ ଦିନ। ତିରିଶ ଦିନ ମୁଁ ଅନେକ ଚେଷ୍ଟା କରିଛି। ଏପରିକି ଲୋକମାନଙ୍କ ଘରେ ବାସନ ମଧ ମାଜି ଯାଇଛି। କିନ୍ତୁ କେହି ରଖି ନାହାଁନ୍ତି। ଭାଇ, ମୁଁ କଅଣ କରିଥାନ୍ତି କୁହ ? ସେ ତ କିଛି ଛାଡିଗଲେ ନାହିଁ। ନିଜ କୋଳର ସନ୍ତାନ ଦୁଇଟିକୁ ମୁଁ ଏତେ ବଡ ଦୁନିଆରେ ଆଶ୍ରୟହୀନ ହୋଇ ବଞ୍ଚେଇ ଥାନ୍ତି କେମିତି କୁହ ? ବାଧ ହୋଇ ନିଜ ସନ୍ତାନମାନଙ୍କ ପାଇ  ମୋତେ ନିଜକୁ ଅଫଜଲ ଖାଁ ନିକଟରେ ବିକିବାକୁ ପଡିଲା।'' ସେ କାନ୍ଦୁଥିଲା ମୁହଁରେ ପଣତ ଚାପିଧରି।

ମୁଁ ନିଜକୁ ଆୟତ କରି ପାରିଲି ନାହିଁ। ଯଥେଷ୍ଟ ଚେଷ୍ଟା କରିଥିଲେ ମଧ ମୋ ଆଖି ଦୁଇଟାରୁ ଲୁହ ଧାର ବୋହି ଚାଲିଲା। ଯାହାକୁ ମୁଁ ପୋଛିବାକୁ ଚେଷ୍ଟା କଲି ନାହିଁ। ଏଇ ନାରୀଟି ପ୍ରତି ମୁଁ ଯେଉଁ ବିକୃତ ଧାରଣା ମନରେ ଦୃଢକରି ସାରିଥିଲି, ଯେଉଁ ଅନ୍ୟାୟ କରିଥିଲି। ତା ମନରେ ଯେଉଁ ଆଘାତ ଦେଇଥିଲି। ତା ହୁଏତ ଏଇ ଲୁହ ଧାର ଧୋଇ ଦେବ।

''ଭାଇ, ଆଉ କିଛି ଉପାୟ ନଥିଲା, ଗତ କାଲି ମୋ ସାନଛୁଆ ଭୋକରେ ବେହୋଶ ହେଲା ପରେ ମୁଁ ଆଉ ନିଜକୁ ଅଟକେଇ ପାରିଲି ନାହିଁ। ନଅଦିନ ହେଲା ଆମେ କିଛି ଖାଇ ନ ଥିଲୁ। ସେ ନିଜକୁ ସଂଯତ କରିଥିଲେ ମଧ କୋହରେ ତା ଶରୀର ରହି ରହି କଂପି ଉଠୁଥିଲା।

ସେ ଅନେକ ବେଳୁ ଚାଲିଯାଇଥିଲା, ତାର ଯିବା ପଥକୁ ଚାହିଁ ଚାହିଁ ମୋ ଆଖି ଶୁଖିଲା ହୋଇ ଯାଇଥିଲା। ସନ୍ଧ୍ୟା ଆହୁରି ଗଭୀର ହୋଇ ଯାଇଥିଲା। ମୁଁ ଥଣ୍ଡା ଅନୁଭବ କରୁଥିଲି।

□ *ଚୁମ୍ବକ : ଜାନୁଆରୀ, ୧୯୭୪*



# ଅନ୍ଧ ବିଶ୍ୱାସ

ସଂପର୍କୀୟଙ୍କର ଅସୁସ୍ଥତା ମୋତେ ବାଧ୍ୟ କରିଥିଲା, ପ୍ରଥମ ଥର ୍ରାଞ୍ଚି ସହରର ଉପକଣ୍ଠରେ ଥିବା ହସପିଟାଲ ମଧ୍ୟକୁ ପ୍ରବେଶ କରିବାପାଇଁ । ଚିଠି ଓ ପରେ ପରେ ଜରୁରୀ ଟେଲିଗ୍ରାମ ଦ୍ୱାରା ମୋର ଆଗମନକୁ ବାଧ୍ୟ କରାଯାଇଥିଲା । ପରୀକ୍ଷା ନ ଦେଇ, ନିଜ ସହରରେ ପହଞ୍ଚି ସଂପର୍କୀୟଙ୍କର ଶରୀର ଭୀଷଣ ଅସୁସ୍ଥତା ସମ୍ବାଦ ମୋତେ ବିବ୍ରତ ଓ ବ୍ୟଥିତ କରିଥିଲା । ଏବଂ ମୁଁ ହସପିଟାଲ ଯାଇଥିଲି, ଯଦିଓ ଜୀବନରେ କେବେ ହସପିଟାଲ ଯିବା ପାଇଁ ଇଚ୍ଛୁକ ନଥିଲି ।

କଲେଜରେ ହସପିଟାଲ ବିଷୟରେ ଅନେକ କିଛି ଶୁଣିଥିଲି । ଯୁବକ ମନତ, କିଛି ଚିନ୍ତା ନକରି ଯାହା ଶୁଣିଥିଲି ବିଶ୍ୱାସ କରି ନେଇଥିଲି । ଡାକ୍ତର ଓ ନର୍ସ ମାନଙ୍କର ଅବୈଧ ସଂପର୍କ ଓ ନର୍ସ ମାନଙ୍କର ବ୍ୟଭିଚାର ବିଷୟରେ ଅନେକ ବନ୍ଧୁଙ୍କ ନିକଟରୁ ଶୁଣି ଶୁଣି ମନରେ ମୋର ଏକ ଦୃଢ ବିଶ୍ୱାସ ଜନ୍ମିଯାଇଥିଲା, ଯେ, ସେମାନେ ନଷ୍ଟ ଚରିତ୍ରା ।

ରାଜପଥ ଅଳ୍ପ ଦୂର ଟର୍ଚ୍ଚ ଦିଗରେ ଗଲାପରେ, ବାଁ ପଟକୁ ବୁଲି ପୁନର୍ବାର ବାଁ ହାତି ଅଳ୍ପ ଦୂର ଆଗେଇ ଗଲାପରେ ଡାହାଣ ପଟେ ଯେଉଁ କୋଠା ଗୁଡିକ ଦେଖାଯାଏ ତାହାହିଁ ହସପିଟାଲ, ସଂଗରେ କେତେକ ଫଳ ନେଇ ହତା ମଧ୍ୟରେ ଥିବା ଏକ ବଉଳ ଗଛ ତଳେ ସାଇକେଲ ରଖିଲି । ନିକଟରେ କେତୋଟି ଗ୍ରାମିଣ ପରିବାର ନିଜ ଆତ୍ମୀୟଙ୍କୁ ନେଇ ହସପିଟାଲରେ ପ୍ରବେଶ କରାଇ, ଇଷ୍ଟଦେବୀଙ୍କୁ ରୋଗୀର ମଙ୍ଗଳ ପାଇଁ ପ୍ରଣାମ କରି ଦୁଃଖିତ ହୃଦୟରେ ନିଜ ଗାଁକୁ ଫେରି ଯିବା ପାଇଁ ଅପେକ୍ଷା କରିଥାନ୍ତି, କେତୋଟି ବୁଲା କୁକୁର ଚତୁର୍ଦ୍ଦିଗରେ ବୁଲୁଥାନ୍ତି, ''ଆଉଟ୍‌ଡୋର ନିକଟରେ ରୋଗୀଙ୍କ ଭିଡ'' ଏପରି ଏକ ବାତାବରଣ ଯେଉଁଥିରେ ଡେଟଲ୍ ଓ ଔଷଧର ସୁଗଂଧ ଭରି ରହିଛି । ଭଲ ଲାଗିଲା ନାହିଁ । ବୋଧ ହେଲା ଯେପରି ଏକ ଶ୍ମଶାନ... । ଧଳା ପୋଷାକ ପରିହିତା ନର୍ସମାନେ ଶ୍ମଶାନର ଜଗୁଆଳୀ । ଡାକ୍ତର ଯିଏକି ଜଣେ ସାମାନ୍ୟ ମନୁଷ୍ୟ, ତା ହାତରେ ଅନ୍ୟ ଏକ ମନୁଷ୍ୟର ଜୀବନ ଟିକିଏ ଭୁଲ୍.... ହୁଏତ ସବୁ ସମାପ୍ତ କରି ଦେଇ ପାରେ ।

ଫଳ ବ୍ୟାଗ ନେଇ ୱାର୍ଡ ମଧ୍ୟକୁ ପ୍ରବେଶ କଲି... । ଅନେକ ଶୁଷ୍କ ଚେହେରା, ମୃତ୍ୟୁର ଅପେକ୍ଷାରେ । ସେମାନେ ନିଜ ନିଜର ମୁଣ୍ଡ ଟେକି ମୋତେ ଲକ୍ଷ୍ୟ କଲେ, ତାଙ୍କର ଚକ୍ଷୁରେ ମୁଁ ଅନୁଭବ କଲି ଉପହାସ ଈର୍ଷା ।

ସଂପର୍କୀୟ ବହୁତ ରୁଗଣ୍ ହୋଇ ଯାଇଥାନ୍ତି । ପ୍ରଣାମ କରି ଫଳ ଦେଇ, ଲୋକାଚାର ଦୃଷ୍ଟିରୁ ଦି'ପଦ ସାନ୍ତ୍ୱନାର ବାଣୀ ଶୁଣାଇ, ଯେତେ ଶିଘ୍ର ପାରେ ଫେରିବା ପାଇଁ ଚେଷ୍ଟା କରିବା ସମୟରେ ତାକୁ ଦେଖିଲି ।

ପରେ ଜାଣିଲି ନାଁ ତାର ସ୍ୱପ୍ନା । ଜାତି ବଙ୍ଗାଳି, ବଙ୍ଗାଳି ଝିଅ ମାନଙ୍କ ସୁନ୍ଦରତା ଓ ଆକର୍ଷଣ ବିଷୟରେ କିଛି କହିବାର ପ୍ରୟୋଜନ ହୁଏ ନାହିଁ । କାରଣ ଲମ୍ବା କେଶ, ଶ୍ୟାମଳ ବର୍ଣ୍ଣ, କଳାକଳା ଲମ୍ବା ଆଖି, ପ୍ରକୃତରେ କ'ଣ ସୁନ୍ଦରତାର ଲକ୍ଷ୍ୟ ନୁହେଁ, ତାକୁ ଲକ୍ଷ୍ୟ କଲି ଏବଂ ଏତେ ଦିନ ପର୍ଯ୍ୟନ୍ତ ଏପରି ସୁନ୍ଦରତା ଦେଖି ନଥିବା ହେତୁ ନିଜକୁ ଅପରାଧି ସାବ୍ୟସ୍ତ କରି, ଯିବା ବନ୍ଦକରି ସଂପର୍କୀୟଙ୍କ ଶଯ୍ୟାରେ ବସି ପଡ଼ିଲି ।

ହଠାତ୍ ମୋତେ ପୂର୍ବର ବାତାବରଣ ଭଲ ଲାଗିବାକୁ ଲାଗିଲା । ସେ ଝିଅଟି ସେହି ସହପିଟାଲର ମଧ୍ୟ ଏକ ନର୍ସ । ସେ ମଧ୍ୟ ଅନ୍ୟମାନଙ୍କ ପରି ଧଳା ପୋଷାକ ପିନ୍ଧିଥାଏ ।

ସେହି ଦିନଠାରୁ ମୁଁ ପ୍ରତ୍ୟେକ ଦିନ ସଂପର୍କିୟଙ୍କୁ ଦେଖିବା ବାହାନାରେ ତାକୁ ଦେଖିବା ପାଇଁ ହସପିଟାଲ ଯିବାକୁ ଲାଗିଲି । ବନ୍ଧୁମାନଙ୍କ ଠାରୁ ଶୁଣିଥିବା ପ୍ରତ୍ୟେକ୍ଷ ଅନୁଭୂତିକୁ ଏଇଠି ପରୀକ୍ଷା କରି ଦେଖିବା ପାଇଁ ନିଶ୍ଚୟ କଲି । ଯାହାର ଚରିତ୍ର ନାହିଁ, ତା' ସହିତ... କ୍ଷତି କଅଣ ।

ପ୍ରତ୍ୟେକ ଦିନ ତାକୁ ଦେଖୁଥିଲେ ମଧ୍ୟ କଥାଟା କିପରି ଭାବେ ଆରମ୍ଭ କରିବି ଭାବି ପାରୁନଥିଲି, ସେ ଦେଖିଲେ ହସେ, ଏବଂ ମୁଁ ମନେ ମନେ ଉତ୍ତେଜିତ ହୋଇ ପଡେ । ତଥାପି ସଙ୍କୋଚ ମନ ତ । ସାହସ କରି ପଦକ୍ଷେପ ନେଇ ପାରେନି ।

କିଛି ଦିନ ପରେ ।

ସଂପର୍କୀୟ ଅନେକ ପରିମାଣରେ ସୁସ୍ଥ ହୋଇ ଉଠିଥାନ୍ତି । ହୁଏତ ଦିନେ ଦୁଇଦିନ ପରେ ସେ ଘରକୁ ଫେରିବେ । ସେହି ସମୟରେ ଦିନେ ମୁଁ ଜୋର କରି ତାଙ୍କ ନିକଟରେ ରାତ୍ରିରେ ରହିଲି । ସେ ଦିନ ମଧ୍ୟ ତାର ରାତ୍ରି ଡ୍ୟୁଟିଥାଏ । ସେହିଦିନ ସକାଳରୁ ମୁଁ ରାତ୍ରିର କାର୍ଯ୍ୟସୂଚୀ ସ୍ଥିର କରିସାରିଥାଏ ।

ରାତ୍ରି କେତେ ହେବ ମନେ ନାହିଁ । ସେ ଆସିଥିଲା ମୋ ନିକଟକୁ । ମୁଁ ଆତ୍ମ ବିଭୋର ହୋଇ ଉଠିଥିଲି । ସଂପର୍କିୟ ଅନ୍ୟ ରୋଗୀମାନଙ୍କ ପରି ଗାଢ ନିଦ୍ରାରେ ଶୋଇପଡିଥାନ୍ତି । ସେ ମୋତେ ନିଜ ପାଇଁ ଉଦ୍ଦିଷ୍ଟ କୋଠରୀକୁ ଡାକି ନେଇ ଥିଲା ଏବଂ ମୁଁ ଅତି ଆନନ୍ଦରେ ଭବିଷ୍ୟତ କ୍ଷତମାନଙ୍କୁ ଆଶ୍ୱାସନା ଦେଇ କୋଠରୀ ମଧ୍ୟରେ ପ୍ରବେଶ କରିଥିଲି ।

ସାଧାରଣ ଭାବେ ଦୁଇଟି ଅଳ୍ପ ପରିଚିତ ବ୍ୟକ୍ତି ହଠାତ୍ ଏକ ଜନଶୂନ୍ୟ ପଥରେ ଦେଖା ହୋଇଗଲେ, ଯେପରି କଥାବାର୍ତ୍ତା, ଆରମ୍ଭ କରନ୍ତି, ପ୍ରଥମେ ମନରେ ସଙ୍କୋଚ ଭରି ଆରମ୍ଭ କରି ଧିରେ ଧିରେ, ମନ ଭିତରର ସମସ୍ତ ରହସ୍ୟକୁ ଅପାର ସମ୍ମୁଖରେ ଖୋଲି ଦିଅନ୍ତି, ପଥ ଶିଘ୍ର ବିତିଯିବା ପାଇଁ, ଠିକ୍ ସେହିପରି ସେ ରାତ୍ରିର ନିସ୍ତବ୍ଧତାକୁ ଦୂର କରିବା ପାଇଁ ଓ ମୁଁ ନିଜ ପ୍ରକୃତ ବ୍ୟକ୍ତଟାକୁ ଆରମ୍ଭ କରିବା ପୂର୍ବର ଭୂମିକା ପ୍ରସ୍ତୁତ ପାଇଁ କଥାବାର୍ତ୍ତା କଲା । କଥାର ଗତି ଗୋଟିଏ ଦିଗରୁ ଆରମ୍ଭ ହୋଇ ଅନେକ ଶାଖା ପ୍ରଶାଖା ସୃଷ୍ଟି କରି ଶେଷରେ ଏକ ଅମୁହାଣି ଛକ ନିକଟରେ ପହଞ୍ଚି ଅସମାପ୍ତ ହୋଇଗଲା ।

ରାତ୍ରିଟା ଅନେକ ଶିଘ୍ର ବିତିଯାଉଥାଏ । ଦେଖୁ ଦେଖୁ ଘଡିର ବଡ କଣ୍ଟାଟା ଦୁଇଥର ଘଡିର ପରଧିରେ ବୁଲି ଆସିଲା । ମୁଁ ବ୍ୟତିବ୍ୟସ୍ତ ହୋଇ ପଡିଲି । ଏପରି ଏକ ନିସ୍ତବ୍ଧ ରାତ୍ରିରେ ପାଇଥିବା ସୁଯୋଗକୁ ଅପବ୍ୟବହାର ନକରି, ମନରେ ଜମାଟ ବାନ୍ଧିଥିବା ଦୃଢ ବିଶ୍ୱାସ ଦ୍ୱାରା ସଂକ୍ରମିତ ହୋଇ ମୁଁ ସ୍ୱପ୍ନାର ହାତକୁ ଦୁଇ ପାପୁଲି ମଧ୍ୟରେ ଧରି ତାକୁ ଏକ ବିନତୀ ଭରା ଦୃଷ୍ଟିରେ ଲକ୍ଷ୍ୟ କଲି । ତା ଚକ୍ଷୁରେ ପ୍ରଥମେ ଆଶ୍ଚର୍ଯ୍ୟ, ତାପରେ ଦୟା ଓ ଶେଷରେ ଏକ ଅପୂର୍ବ ଛାୟା ବାସନାର ଛାୟା ପରି ବୋଧ ହେଲା । ଏବଂ ମୋ ନିଜ ମୁଖକୁ ଧିରେ ଧିରେ ତା ଅଧର ଦିଗରେ ବଢାଇ ଦେଲି । ସେ ନିଜ ଆଖି ବନ୍ଦ କରି ମୋ ଓଠରେ ନିଜ ବାଁ ହାତ ପାପୁଲି ଦେଇ ଧିର ସ୍ୱରରେ କହିଲା ।

''ନାଁ..... ନାଁ..... ।''

''କ୍ଷତି କଅଣ ? ମୁଁ ଅନେକ ସାହସ କରି କହିଲି । ଏବଂ ପର ମୁହୂର୍ତ୍ତରେ ସେ ଯାହା କହିଲା, ତାହା ମୋତେ ଚମକାଇ ଦେଲା । ଖୁବ୍ ଦୃଢରେ ଯେପରି କିଏ ମହତ୍ୱ ଭରା କଣ୍ଠରେ ମୋତେ ଚେତାଇ ଦେଲା । ମୁଁ ଅପରାଧି ପରି କକ୍ଷରୁ ବାହାରି ଆସିଲି । ଶେଷଥର ପାଇଁ ଦ୍ୱାର ବନ୍ଧରେ ଠିଆ ହୋଇ ପଛକୁ ବୁଲି ଲକ୍ଷ୍ୟ କରି, ଦେଖିଲି ତା ଚକ୍ଷୁରେ ଅଶ୍ରୁ ।

ତା ପରଠାରୁ ମୁଁ ଆଉ ହସପିଟାଲ ଯାଇନି । ସେ କହିଥିଲା- ''ମୋତେ ବିବାହ କରିପାରିବ... ଯଦି ନୁହେଁ, ତେବେ ମୋତେ କାହିଁକି ବେଶ୍ୟାରେ ପରିଣତ କରୁଛ ? ମୁଁ ବେଶ୍ୟା ନୁହେଁ..... ।''

*ଯୁଗଭେରୀ : ଫେବୃଆରୀ, ୧୯୭୧*



# ଧର୍ମଘଟ

ସେତେବେଳେ ମୁଁ ଅତ୍ୟନ୍ତ ଉତ୍ତେଜିତ ହୋଇଉଠିଲି ଯେତେବେଳେ ମୋ ହାତରେ ଥିବା ଉପନ୍ୟାସ ନାୟକ ଶହେ ଏକଚାଳିଶ ପୃଷ୍ଠାରେ ନାୟିକାର ବସ୍ତ୍ର ଖୋଲି ଅଂଧାର କକ୍ଷ ମଧ୍ୟରେ ଏକ ପ୍ରକାର ଧର୍ଷଣ ଆରଂଭ କରିଦେଲା । ନା... ଆଉ ପଢି ହେବ ନାହିଁ ... ।' ମୁଁ ଉପନ୍ୟାସର ପୃଷ୍ଠାକୁ ସେଇଠି ମୋଡି ରଖି ଦେଇ ଭାବିଲି । ଏପ୍ରକାର ଉପନ୍ୟାସ ଏକାକୀ ପଢିବା ଉଚିତ ନୁହେଁ ବୋଲି ନିଜକୁ ଉପଦେଶ ଦେଲି । ଏବଂ ନିଜ ଉତ୍ତେଜିତ ମନକୁ ନାରୀ ଓ ପୁରୁଷ ମଧ୍ୟର ନିବିଡ ସଂପର୍କ ବିଷୟରେ ଭାବିବା ପାଇଁ, ମୋହନ୍ ମେକିନ୍ସ କ୍ୟାଲେଣ୍ଡରର ଅର୍ଦ୍ଧନଗ୍ନ ନାରୀ ଚିତ୍ରକୁ ଦେଖିବା ପାଇଁ, ସୁଯୋଗ ନ ଦେଇ ଝର୍କା ବାହାରକୁ ଲକ୍ଷ୍ୟ କଲି ନିହାତି ନିରୁଦ୍ଦିଷ୍ଟ ଭାବେ ।

ହଠାତ୍ ମୁଁ ମନେ ମନେ ବିରକ୍ତ ହୋଇ ଉଠିଲି । କିଛି ଭଲ ଲାଗୁନି । ଶରୀରଟା ନିତାନ୍ତ କ୍ଳାନ୍ତ ଜଣାପଡୁଛି । ଚତୁର୍ଦ୍ଦିଗରେ ଏକ ଅସଂଭବ ନିସ୍ତବ୍ଧତା । ସମଗ୍ର ସହରରେ ଏକ ନିର୍ମମ ନିସ୍ତବ୍ଧତା । ମୁଁ ଅସ୍ଥିର ହୋଇ ଉଠିଲି । ଚାରିଦିନ ହେଲା ଘରୁ ବାହାରିବା ପାଇଁ ଭୟ ଲାଗୁଛି । ଏବଂ ଘରେ ଏକାକୀ ରହିଲେ ବିଭିନ୍ନ ପ୍ରକାରର ଅସଂଲଗ୍ନ ଓ ଅଶ୍ଳୀଳ ଚିନ୍ତା ମନରେ ପ୍ରବେଶ କରି ମସ୍ତିଷ୍କକୁ ଭାରାକ୍ରାନ୍ତ କରିପକାଉଛି । ସହରରେ ଗତ ତିନିଦିନ ହେଲା ଧର୍ମଘଟ ।

କାନ୍ଥ ଉପରେ ପ୍ରେମକରା ଫଟୋ ଉପରେ ଦୁଇଟି ଘରଚଟିଆ ବସି କର୍ କିର୍ ହେଉଛନ୍ତି । ମୁଁ ହାତ ଉଠାଇ ସେମାନଙ୍କୁ ଉଡାଇ ଦେଲି । ସେମାନେ ଝର୍କା ଦେଇ ଦ୍ରୁତ ଗତିରେ ଉଡି ଚାଲିଗଲେ ଦୂର ନଡିଆ ଗଛ ଉପରକୁ ଏବଂ ଗଛ ଉପରେ ବସି ମୋତେ ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଲେ । ମୁଁ ପୁନର୍ବାର ଖଟ ଉପରେ ଶୋଇପଡି ଛାତର କଡିବରଗାମାନଙ୍କୁ ମନେ ମନେ ଗଣିବାକୁ ଲାଗିଲି ।

ସବୁ ଗୋଳମାଳ ହୋଇଯାଉଛି । ମସ୍ତିଷ୍କକୁ କୌଣସି ଏକ ନିର୍ଦ୍ଦିଷ୍ଟ ବିନ୍ଦୁରେ କେନ୍ଦ୍ରୀଭୂତ କରି ହେଉନାହିଁ । ଦ୍ୱିପ୍ରହରର ଖରା ଝର୍କା ବାଟେ ଘରର ଚଟାଣକୁ କିଂଚିତ ଅଧିକାର କରି ଦେଇଛି । ମୁଁ ଶୋଇବା ପାଇଁ ଚେଷ୍ଟାକଲି । ନା... ନିଦ ବି ନାହିଁ ଆଖିରେ । ତିନିଦିନ ହେଲା କେବଳ ଶୋଇବା ବା ଶୋଇବାର ଛଳନା କରି କରି

ମୁଁ ନିତାନ୍ତ କ୍ଲାନ୍ତ ହୋଇ ପଡିଛି । ତିନିଦିନ ପୂର୍ବ ଜୀବନର ଧାରା ଏବଂ ଆଜି ଓ ଗତ ତିନିଦିନର ଜୀବନ ଧାରା ଯେମିତି ସଂପୂର୍ଣ୍ଣ ବିପରୀତ । ମୁଁ ଆଶ୍ଚର୍ଯ୍ୟ ହେଲି । ହଠାତ୍ କେମିତି ସ୍ଥିର ଜୀବନରେ ଏକ ପରିବର୍ତ୍ତନ ଆସିଯାଏ । ଏବଂ ଏ ପରିବର୍ତ୍ତନ କେମିତି ଏକ ରୁଟିନ୍ ବଂଧା ଜୀବନରେ ଅଭ୍ୟସ୍ତ ବ୍ୟକ୍ତିକୁ ଅସ୍ତବ୍ୟସ୍ତ କରିପକାଏ !

ସକାଳେ ଶଯ୍ୟାତ୍ୟାଗ ଓ ନିତ୍ୟକର୍ମ ପରେ ଅଫିସ । ଏବଂ ଅଫିସ ପରେ ସଂଧ୍ୟାରେ ସହରର ଗଳି କନ୍ଦିରେ, ରାଜରାସ୍ତାରେ, ବିଭିନ୍ନ କଲୋନୀରେ ବୁଲି ବୁଲି ସଦ୍ୟ ଯୌବନା, ବିଗତ ଯୌବନା ଏବଂ ଆଗତ ଯୌବନା ପରୀମାନଂକୁ ଦେଖି- ନିଜ ଏକାନ୍ତ କକ୍ଷକୁ ଫେରି କ୍ଲାନ୍ତ ହୋଇ ଶୋଇ ପଡିବା ଅନ୍ତତଃ ମୋ ପରି ଏକ ଏକାକୀ ପ୍ରାଣୀ ପାଇଁ ଯଥେଷ୍ଟ । କିନ୍ତୁ ବର୍ତ୍ତମାନ କେବଳ ବିରକ୍ତି ଏବଂ ବିରକ୍ତି ।

ଅଫିସ କଥା ମନେ ପଡିଲା ସଂଗେ ସଂଗେ ଅଫିସର କର୍ମବ୍ୟସ୍ତ ବାତାବରଣ ଓ ତା' ମଧ୍ୟରେ ରୋଜି ହଠାତ୍ ମନେ ପଡିଲା । ରୋଜି ! ଟାଇପିଷ୍ଟ ରୋଜି । ଅଫିସ ବନ୍ଦ ହେଲା ଦିନଠାରୁ ଟାଇପିଷ୍ଟ ରୋଜିର ମାଂସଳ, ଲୋମହୀନ ଗୋରା ପାଦ ଓ ଅଧା ଜଂଘ ଆଉ ଦେଖି ହେଉନାହିଁ । ଯାହାକି ମୋତେ ଓ ମୋର ଯୁବକ ପ୍ରାଣକୁ ଯଥେଷ୍ଟ ସାନ୍ତ୍ୱନା ଦିଏ ଏକାକୀ କ୍ଷଣ ମାନଙ୍କରେ । ଯାହାକୁ ନେଇ ମୁଁ ନିଜ ଭବିଷ୍ୟତ ଜୀବନ ଏବଂ ଭବିଷ୍ୟତ ଜୀବନର ଅନେକ ଅନ୍ତରଂଗ ମୂହୂର୍ତ୍ତମାନଂକ ବିଷୟରେ କଳ୍ପନା କରେ । ଯାହା ମୋତେ ଉତ୍ତେଜିତ କରେ । ସମସ୍ତ ଇନ୍ଦ୍ରିୟ ଗୁଡାକ ସତେଜ ହୋଇ ଉଠନ୍ତି । ସୁରେଶ କୁହେ, ସେ ଯେଉଁ ସେଣ୍ଟବ୍ୟବହାର କରେ ତା'ର ଦାମ କୁଆଡେ ଶହେ ଦଶଟଙ୍କା ତେଣୁ ମୁଁ ତାକୁ ଦୂରରୁ ଦେଖେ । ଏବଂ ତୃପ୍ତ ହୁଏ ।

ଦିନେ ସେକେଣ୍ଡ କ୍ଲାସ ଟିକେଟ କରି ହଲ୍ ଭିତରକୁ ଗଲାବେଳେ ମୋ ଅଫିସର ଓ ରୋଜିକୁ ଏକାସଂଗେ 'ବକ୍ସ' କୁ ଯିବାର ଦେଖିଥିଲି । ସେ ଦିନ ରାତିରେ ମୋତେ ଭୀଷଣ ଦୁର୍ବଳ ଲାଗିଥିଲା । ତା' ପରଦିନ ସକାଳେ ସୁରେଶ ମୋତେ ବୁଝାଇ ଥିଲା ''ଏଇଟା ନାଚୁରେଲ୍ । ଅଫିସର ମାସକୁ ହଜାରେ ଟଙ୍କା ଦରମା ପାଆନ୍ତି । ତେଣୁ ଏଇଟା ନିତାନ୍ତ ନାଚୁରେଲ୍ ।''

ମୁଁ ବୁଝିଥିଲି । ସୁରେଶ ଠିକ୍ କହୁଛି । ମୁଁ ତା କଥାରେ ପ୍ରତିବାଦ କରିନଥିଲି । ମୁଁ ମନେ ମନେ ହସିଲି । ଆଜିକୁ ଚାରିଦିନ ହେଲା ରୋଜିକୁ ଦେଖି ପାରିନାହିଁ । ତାକୁ ଦେଖିଲେ ଖୁବ୍ ଶାନ୍ତି ଲାଗେ । ଏ ବୟସରେ କେବଳ ରୋଜି କାହିଁକି, ଯେ କୌଣସି ଯୁବତୀକୁ ଦେଖିଲେ ଖୁବ୍ ଶାନ୍ତି ଲାଗେ । ଏବଂ ଇଚ୍ଛା ହୁଏ.... । ସୁରେଶ କୁହେ, ଏଇଟା ତୋର ଦୋଷ ନୁହେଁ, ବୟସର ଦୋଷ ।''

ମୁଁ ମନେ ମନେ ଖୁବ ବିରକ୍ତ ହୋଇ ଉଠିଲି ।

କ୍ୟାଲେଣ୍ଡରକୁ ଲକ୍ଷ୍ୟକଲି । ଆଜି ପନ୍ଦର ତାରିଖ । ବାର ତାରିଖରୁ ଧର୍ମଘଟ ଆରମ୍ଭ ହୋଇଛି । ଧର୍ମଘଟ ! ମୁଁ ବିଶ୍ଳେଷଣ କରିବା ପାଇଁ ଚେଷ୍ଟା କଲି ଧର୍ମଘଟର ଅର୍ଥ ।

ସେଦିନ ସେମାନେ ହଠାତ୍ ଅଫିସକୁ ଆସିଥିଲେ । ମୋତେ କହିଥିଲେ, ''ତୁମକୁ ଚାରିଦିନ ପାଇଁ ଛୁଟି ନେବାକୁ ପଡିବ'' ମୁଁ ଆଶ୍ଚର୍ଯ୍ୟ ହୋଇ ସେମାନଂକୁ ପ୍ରଶ୍ନ କରିଥିଲି, ''କାହିଁକି ?''

ସେମାନେ ମୋତେ ବୁଝାଇଥିଲେ । କହିଥିଲେ, ''ଆମର ଦାବୀ ପୂରଣ ହୋଇ ପାରୁନାହିଁ । ତେଣୁ ତାର ପ୍ରତିବାଦ ସ୍ୱରୂପ ଆମେ ଏକ ସଂଗେ ଛୁଟି ନେବା । ୟୁନିଅନର ଆଦେଶ । ଏବଂ ଏହା ତୁମକୁ ମଧ୍ୟ ମାନିନେବାକୁ ପଡିବ ।''

ମୁଁ କିଛି ବୁଝିନପାରି ବୋକାଙ୍କ ପରି ପ୍ରଶ୍ନ କରିଥିଲି, ''ଛୁଟୀ ନ ନେଲେ ? ୟୁନିଅନର ଆଦେଶ ନ ମାନିଲେ ?''

ସେମାନେ ରାଗିଯାଇ, ସ୍ୱରରେ ବିରକ୍ତିଭରି ମୋତେ ଲକ୍ଷ୍ୟକରି କହିଥିଲେ, ''ନ ନେଲେ, ମାଡ !''

ମୁଁ କହିଥିଲି, ''ଠିକ ଅଛି । ମୁଁ ଛୁଟି ନେବି ।''

ଏବଂ ମୁଁ ମଧ୍ୟ ଅନ୍ୟମାନଙ୍କ ପରିଛୁଟୀ ନେଇଥିଲି । କିନ୍ତୁ ଦାବି କଅଣ ? କାହିଁକି ଏ ପ୍ରତିବାଦ, ତା ମୁଁ ସେଦିନ ବୁଝି ପାରିନଥିଲି । କିଂବା ବୁଝିବାକୁ ଚେଷ୍ଟା ମଧ୍ୟ କରିନଥିଲି । ଆଜି ପର୍ଯ୍ୟନ୍ତ ମଧ୍ୟ ବୁଝିବା ପାଇଁ ଚେଷ୍ଟା କରିନାହିଁ, ଦୁଇଶହ ଦଶଟଙ୍କାରେ ମୁଁ ଏକାକୀ ଏକ ଏକମାତ୍ର କୋଠରୀ ମଧ୍ୟରେ ଠିକ ଚଳିଯାଉଥିଲି । ଦାମ ବଢୁଥିଲା । ବଢୁ । ଦୁଇଶହ ଦଶଟଙ୍କାରେ ପାଇ ତ ହେଉଛି । ଯେତେବେଳେ ଖାଇବାକୁ ନ ମିଳିବ, ସେତେବେଳେ ଚିନ୍ତା କରିବା । ବର୍ତ୍ତମାନ ଏ ସବୁ ମୋ ପାଇଁ 'ପଲିଟିକ୍ସ' । ଏବଂ ମୁଁ 'ପଲିଟିକ୍ସ' ବୁଝେନା ।

ଛୁଟିର ପ୍ରଥମ ଦିନ ସଂଧ୍ୟାରେ ପ୍ରତ୍ୟେକ ଦିନ ପରି ମୁଁ ବୁଲି ବାହାରିଥିଲି । ଆଖିରେ ପଡିଥିଲା କେବଳ ଧାଡି ଧାଡି ଚାଳକ ବିହୀନ ଯାନ, ବନ୍ଦ ଦୋକାନ ଏବଂ ଅସଂଭବ ନିସ୍ତବ୍ଧତା । ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ଏବଂ ଅଂଧକାର ଭରା ସହରକୁ ପଛରେ ଛାଡି ମୁଁ ନିଜ ଏକାନ୍ତ କକ୍ଷ ମଧ୍ୟରେ ନିଜକୁ ଆବଦ୍ଧ କରି ଦେବାକୁ ହଠାତ୍ ଆଗ୍ରହୀ ହୋଇ, ଘରକୁ ଫେରି ଦେଖିଥିଲି ଇଲେକଟ୍ରିକ ନାହିଁ । ବିଭାଗର କର୍ମଚାରୀମାନେ ମଧ୍ୟ ସେତେବେଳକୁ ଧର୍ମଘଟରେ ଯୋଗଦାନ କରି ସାରିଥିଲେ ।

ତିନିଦିନ ହେଲା ପାଣିଭାରର ଦାମ ମଧ୍ୟ ହଠାତ୍ ଅସଂଭବ ଭାବେ ବୃଦ୍ଧି ପାଇ ଯାଇଛି । ସହରର ପ୍ରତ୍ୟେକ କଳ ବନ୍ଦ । ଏବଂ ଭାରୁଆ ମାନେ ସମ୍ମିଳିତ ଭାବେ ନିଜ ଦାମ ବଢେଇ ଦେଇଛନ୍ତି । ତଥାପି ସେମାନଂକର ଏତେ ଚାହିଦା ଯେ ସେମାନେ ଠିକ ରୂପେ ପ୍ରତ୍ୟେକ ଘରେ ପାଣି ଯୋଗାଇ ପାରୁ ନାହାଁନ୍ତି । ଆମ ଗଳିର କେତେକଙ୍କ ଘରେ, ଯେଉଁମାନଙ୍କ ଘରେ କଳ କିଂବା କୂଅ ନାହିଁ ଯେଉଁ ଭାରୁଆ ପାଣି ଦେଉଥିଲା, ସେ ପାଣିକଳ ବନ୍ଦ ହେଲା ଦିନଠାରୁ ପ୍ରତ୍ୟେକ ଘରକୁ ମାତ୍ର ଭାରେ ପାଣି ଦେଉଛି । ଭାରେ ପାଣି, ମାନେ ମାତ୍ର ଦୁଇଟିଣ । ଏବଂ ସେତିକି ପାଣିରେ ନିଜର ସମସ୍ତ କାମ ସମାପ୍ତ କରି ସାରିବା ପରେ ଆଉ ଗାଧୋଇ ହେଉ ନାହିଁ । ତେଣୁ ମୁଁ ତିନିଦିନ ହେଲା

ଗାଧୋଇ ପାରିନି । ଦେହ, କାଖ ତଳେ, ପିଠି ଖୁବ୍ ଗନ୍ଧ ହେଉଛି । ମୁଣ୍ଡ ବାଳ ଗୁଡାକ ଶୁଖିଲା ବ୍ରସ ପରି ଲାଗୁଛି । ଏବଂ ସବୁବେଳେ କୁଣ୍ଡେଇ ହେଉଛି ।

ମୁଁ ଛୁଟି ନେଇଥିଲି । ପ୍ରଥମେ ଛୁଟି ଗୁଡାକ ମୋ ପାଇଁ ଏକ ଭିନ୍ନ ରୂପରେ ଆସୁଥିଲେ । କିନ୍ତୁ ଏଥର ର ଛୁଟି ! ଏଇଟା ତ ଛୁଟି ନୁହେଁ, ବରଂ ଶାସ୍ତି । ଏବଂ ମୁଁ ଶାସ୍ତି ଭୋଗ କରୁଛି ନିଜ କ୍ଷୁଦ୍ର କକ୍ଷ ମଧ୍ୟରେ ବନ୍ଦୀ ହୋଇ ।

ସକାଳୁ ସଂଜ ପର୍ଯ୍ୟନ୍ତ କୌଣସି ପତ୍ରିକା ଅଥବା ନଭେଲ ପଢିବା, ନଚେତ୍ ନିହାତି ଅସଂଲଗ୍ନ କଥା ଚିନ୍ତା କରି ନିଜକୁ ଅସଂଯତ ଓ ମସ୍ତିଷ୍କକୁ ଭାରାକ୍ରାନ୍ତ କରିପକାଇବା ଏକ ଦୈନନ୍ଦିନ ଜୀବନର ଧାରାରେ ପଡିଗଲାଣି । ମୁଁ ଘରେ ବସିରୁହେ । ସାମ୍ନା ମାଳୀ ବଗିଚାରେ ସ୍ନାନରତ ମାଳୀଝିଅ ସତ୍ୟଭାମାର ଅର୍ଦ୍ଧନଗ୍ନ ଶରୀରକୁ ନିରେଖି ଦେଖେ ଝର୍କା ପଛପଟେ ଲୁଚିରହି ଏବଂ ନିଜକୁ ତୃପ୍ତ କରେ ।

ଏବଂ ମୁଁ ଭୁଲେ, ମାତ୍ର କେତେକ କ୍ଷଣ ପାଇଁ । ତାପରେ ପୁନର୍ବାର ବିରକ୍ତି । ଅଫିସ ଟାଇପିଷ୍ଟ ରୋଜି ମନେ ପଡେ । ତା' ମାଂସଳ, ଗୋରା ଜଂଘ ମନେ ପଡେ । ସହର ମଧ୍ୟରେ ଲୁଚି ରହିଥିବା ଅଗଣିତ ସଦ୍ୟ ଯୌବନା କୁମାରୀମାନଙ୍କ ଆଖି ମନେ ପଡେ । ଏବଂ ମୁଁ ମନେ ମନେ ନିଜ ଅସହାୟତା ଲକ୍ଷ୍ୟକରି ପୁନର୍ବାର ବିରକ୍ତିରେ ଭରିଯାଏ ।

ସାମ୍ନା ନଡିଆ ଗଛର ଛାଇ ଲଂବା ହୋଇଗଲେ ମୁଁ ଘରୁ ବାହାରେ । ଏବଂ ଘରୁ ସହରର ରାଜରାସ୍ତାକୁ ବାହାରି ପଡିଲେ ଆଖିରେ ପଡେ ଛକମାନଙ୍କରେ ଗଦାଟା ଚାଳକବିହୀନ ରିକ୍ସା, ଟାକ୍ସି ଷ୍ଟାଣ୍ଡରେ ଅସଂଖ୍ୟ ଟାକ୍ସି, ବସ୍‌ଷ୍ଟାଣ୍ଡରେ ଅନେକ ନିର୍ଜୀବ ବସ୍ । ବନ୍ଦ ଦୋକାନ । ଶୁନ୍‌ଶାନ୍ ଜନଶୂନ୍ୟ ପ୍ଲାଟଫର୍ମ । ସବୁ ସ୍ଥିର । ଚତୁର୍ଦ୍ଦିଗରେ ନିସ୍ତବ୍ଧତା । କାହିଁକି ଏସବୁ ତା ମୁଁ ଜାଣିନାହିଁ । ଜାଣି ଲାଭ ବା କଅଣ ? ମୋ ପରି ଜଣେ ସାଧାରଣ ବ୍ୟକ୍ତିର ଏସବୁ ଜାଣିବା, ମୁଁ ଭାବେ, ଜମା ଦରକାର ନୁହେଁ । କେବଳ ଏତିକି ବୁଝିଛି, ଆମେ ସବୁ ଛୁଟି ନେବା ପରେ ପରେ ବସ୍ ବନ୍ଦ ହୋଇଗଲା, ଟାକ୍ସି ବନ୍ଦ ହୋଇଗଲା, ରିକ୍ସା ବନ୍ଦ ହୋଇଗଲା । ଏପରିକି ସମସ୍ତ ପ୍ରକାରର ଯାନବାହାନ ଚଳାଚଳ ବନ୍ଦ ହୋଇଗଲା । ପ୍ରତ୍ୟେକ ନିଜ ନିଜର ଦାବୀ ପୂରଣ ପାଇଁ ଏକାସଂଗେ ଧର୍ମଘଟ ବା ଅସହଯୋଗ ଆନ୍ଦୋଳନ ଆରଂଭ କରିଦେଲେ । ଏବଂ ପ୍ରତ୍ୟେକ ପ୍ରତ୍ୟେକଙ୍କ ନିକଟରୁ ବିଛିନ୍ନ ହୋଇଗଲେ । ଦର ବଢୁଛି କହି ଉତ୍ତ୍ୟକ୍ତ ଜନତା କେତୋଟି ଦୋକାନ ଲୁଟି ନେଲେ । ସହରର ସମସ୍ତ ବ୍ୟବସାୟୀ ପ୍ରତିବାଦ ସ୍ୱରୂପ ନିଜ ନିଜର ଦୋକାନ ବନ୍ଦ କରିଦେଲେ । ତାପରେ ଜଳ ଯୋଗାଣ ବନ୍ଦ ହୋଇଗଲା । ବିଦ୍ୟୁତ ସରବରାହ ବନ୍ଦ ହୋଇଗଲା । ସେମାନଙ୍କ ପରେ ପରେ ଡାକ୍ତରମାନେ ହସପିଟାଲ ବନ୍ଦ କରିଦେଲେ । ଅଧାପକ ଓ ଛାତ୍ର କଲେଜ ବନ୍ଦ କରିଦେଲେ । ଏବଂ ଅବଶେଷରେ ସହର ପ୍ରାଣହୀନ ହୋଇପଡିଲା । ସମଗ୍ର କୋଳାହଳ ଶୂନ୍ୟରେ ମିଳେଇଗଲା । ଆଜି ସହରରେ ଶହେ ଚୌରାଳିଶ ଧାରା ଜାରି ।

ମତେ ବଡ ଆଶ୍ଚର୍ଯ୍ୟ ଲାଗେ । କଅଣ ଏମାନଂକର ଦାବୀ ? ଏବଂ କାହା ବିରୁଦ୍ଧରେ ଏମାନଂକର ପ୍ରତିବାଦ ? ମୁଁ କିଛି ବୁଝିପାରେ ନାହିଁ । ତେଣୁ ପ୍ରାୟ ବାହାରକୁ ଯିବାକୁ ଭୟ ଲାଗେ । ପ୍ରଥମେ ମୁଁ କକ୍ଷ ଭିତରେ ବନ୍ଦୀ ହୋଇ ରହିବା ପାଇଁ ପସନ୍ଦ କରୁ ନଥିଲି । ଏକାନ୍ତ କକ୍ଷ ମଧ୍ୟରେ ମୁଁ ନିଜ ଅତୀତର ପୃଷ୍ଠା ଲେଉଟାଇ ବସେ । ଭବିଷ୍ୟତର ଅଂଧାର ମଧ୍ୟରେ ପ୍ରବେଶ କରି ଆତଂକିତ ହୋଇ ଉଠେ । ତେଣୁ ମୁଁ ଏକାନ୍ତକୁ ଭୟ କରେ । ଏବଂ ସହର ମଧ୍ୟରେ ଆଜିକାଲି କେବଳ ଏକାନ୍ତ । ବରଂ ଏକାନ୍ତ କକ୍ଷରେ ନିଜ ସହିତ ଗପି ହେବ । ପ୍ରତ୍ୟେକ ବିଷୟକୁ ବିଶ୍ଳେଷଣ କରି ହେବ । କିନ୍ତୁ ସହରର ଏକାନ୍ତ ଅଂଧାର ମଧ୍ୟରେ ନିଜ ଛାଇକୁ ମଧ୍ୟ ଖୋଜି ହେବ ନାହିଁ ।

ରାସ୍ତାକୁ ବାହାରି ପଡିଲେ ମୋତେ ସହରଟା ଠିକ ଏକ ଶ୍ମଶାନ ପରି ମନେ ହୁଏ । ଛାଇମାନେ ଲୁଚିଯାନ୍ତି । ଏବଂ ଅଂଧାର ସହର ଉପରେ ଏକ କଳା ଚାଦର ପକାଇ ଦିଏ । ସହରର ପ୍ରତ୍ୟେକ ବସ୍ତୁ ଉକ୍ତ କଳାଚାଦର ମଧ୍ୟରେ ଲୁଚିଯାଏ । ଚତୁର୍ଦ୍ଦିଗରେ ନିସ୍ତବ୍ଧତା ଘନ ହୋଇ ଉଠେ । ଏବଂ ଉକ୍ତ ନିସ୍ତବ୍ଧତାକୁ ଭାଂଗି ରାସ୍ତାର ନରମ ବକ୍ଷ ଉପରେ ଦ୍ରୁତଗତିରେ ଚିତ୍କାର କରି ମାଡିଯାନ୍ତି ପୋଲିସ ଓ ପୋଲିସ ଗାଡିମାନ । ମୋତେ ଜଣା  ପଡେ ଯେମିତି କେବଳ ଏଇ ଲୁହା ଟୋପି  ପିନ୍ଧା ପୋଲିସମାନେ ହିଁ ଏଇ ସହରର ଏକମାତ୍ର ଜୀବନ୍ତ ଅଧିବାସୀ । ଏ ଶ୍ମଶାନର ରକ୍ଷାକର୍ତ୍ତା ଏବଂ ମୁଁ ଲୁଚି ଲୁଚି ଧୀର ପଦକ୍ଷେପରେ ଘରକୁ, ନିଜ ବନ୍ଦୀଶାଳାକୁ ଫେରେ, ପୁନର୍ବାର ଆଉ ଗୋଟାଏ ଦିନ ଶାସ୍ତି ଭୋଗିବା ପାଇଁ ।

ଥରେ ଥରେ ଦ୍ୱିପ୍ରହରରେ କର୍ଫ୍ୟୁ ଭାଂଗିଲେ ମୁଁ ଦେଖେ ଅନେକ ଲୋକ ଧାଡି ବାନ୍ଧି, ହାତରେ ପତାକା ଏବଂ ପ୍ଲାକାର୍ଡ ଧରି । ତାପରେ କେବଳ କୋଳାହଳ, ଚିତ୍କାର, ଯାହାର କୌଣସି ଅର୍ଥ ନାହିଁ – ସ୍ଲୋଗାନ, ଯାହା ଅନ୍ତତଃ ଆଜି ପାଇଁ ମୂଲ୍ୟହୀନ । ଏବଂ ଆଗରେ ପଛରେ ନିର୍ବିକାର ପୋଲିସ୍ । ଲୋକମାନେ ଉତ୍ତେଜନାରେ ପ୍ରାୟ ଲାଲ୍ ଦେଖାଯାଉଥାନ୍ତି । ଏବଂ ପୋଲିସ ଗଣ ଧୀର ପଦକ୍ଷେପରେ ନିର୍ଲିପ୍ତ ଭାବେ ଆଗରେ ପଛରେ ଚାଲୁଥାନ୍ତି । ମୋତେ ଲାଗେ ଯେମିତି ସେମାନେ ନର୍ମାଲ୍ ମଣିଷ ନୁହଁନ୍ତି । ନର୍ମାଲ ମଣିଷ କେବେ ଏମିତି ହୋଇପାରିବ ନାହିଁ । ହୁଏତ ଯେଉଁ ସାଇଣ୍ଟିଫିକ୍ ଚେଞ୍ଜ ବଳରେ ଖୋଜି ଆମେ 'ଜେଲି'ରୁ ମାଙ୍କଡ ଓ ମାଙ୍କଡରୁ ମଣିଷ ହୋଇଛେ, ପୁନର୍ବାର ସେଇ 'ଚେଞ୍ଜ' ବଳରେ  ଆମେ ମଣିଷରୁ ଅନ୍ୟ କିଛି ହେବାକୁ ଯାଉଛେଁ । ମୁଁ ଭାବେ, ଏଇଟା ଠିକ । ନଚେତ ମଣିଷ ନିଜ କର୍ତ୍ତବ୍ୟ ଭୁଲି ଅଯଥାରେ ଏମିତି ଉତ୍ତେଜନାରେ ଲାଲ ହୋଇ ଚିତ୍କାର କାହିଁକି କରନ୍ତା ? ମୁଁ ତ ଚିତ୍କାର କରୁ ନାହିଁ । ପଡୋଶୀ ରାମ ପିଅନ୍ ତ ଚିତ୍କାର କରୁନାହିଁ । ପାନ ଦୋକାନୀ ନରୋତ୍ତମ ତ ଚିତ୍କାର କରୁନାହିଁ । ଯଦିଓ ମୁଁ ଓ ସେମାନେ ମଧ୍ୟ ଥରେ ଥରେ ମାସ ଶେଷକୁ ଓପାସ ରହିବାକୁ ବାଧ୍ୟ ହେଉଁ ପରିସ୍ଥିତି ଦୃଷ୍ଟିରୁ ।

ମୁଁ ସେଇଠି ଠିଆ ହୋଇ ରୁହେ । କୋଳାହଳ ଧୀରେ ଧୀରେ କମିଯାଏ । ଏବଂ ତାପରେ ହଠାତ୍ ଏକବିନ୍ଦୁରେ ପହଂଚି ଶୂନ୍ୟରେ ମିଳେଇ ଯାଏ । ମୁଁ ଦୀର୍ଘଶ୍ୱାସ ତ୍ୟାଗ କରେ । କିଛି ସମୟ ପରେ ସେଇ ରାସ୍ତାରେ ପୋଲିସ ଭ୍ୟାନ ମଧରେ ଅନେକ ଲୋକଙ୍କୁ ରକ୍ତାକ୍ତ ଅବସ୍ଥାରେ ହାତକହି ପିନ୍ଧି ପୋଲିସ ଗହଣରେ ଜେଲ୍, ହାଜତ ବା ଥାନାକୁ ନିଆହେବାର ଦେଖେ ଏବଂ କ୍ଳାନ୍ତ ପାଦରେ ନିଜ ଏକାନ୍ତ କକ୍ଷକୁ ଫେରେ ।

ରାତିରେ ନିଦ ହୁଏନି । ଏବଂ ମୁଁ ମନେ ମନେ ବିଶ୍ଳେଷଣ କରେ ବା ବିଶ୍ଳେଷଣ କରିବାକୁ ବାଧ ହୁଏ, ଯେହେତୁ ମୋ ନିକଟରେ ବିଶ୍ଳେଷଣ କରିବା ପାଇଁ ଅନ୍ୟ କୌଣସି ଉପାଦାନ ନଥାଏ – ଏଇମାନଂକ ବିଷୟରେ, ଏ ଧର୍ମଘଟ ବିଷୟରେ । କାହିଁକି ଏମାନେ ଏମିତି ହେଉଛନ୍ତି ? ମୁଁ ଅନେକ ସମୟ ଚିନ୍ତା କରେ । ତାପରେ ଭାବେ, ବୋଧହୁଏ ସମସ୍ତେ ଏକସଂଗେ ପାଗଳ ହୋଇଗଲେ । ଗତ ତିନିବର୍ଷ ତଳେ ବାଂଗଲା ଦେଶରୁ ଆମଦାନୀ ହୋଇଥିବା ଆଖିରୋଗ୍ ପରି ଏଇଟା ମଧ କୌ ଣସି ଏକ ବିଦେଶୀ ରାଷ୍ଟ୍ରରୁ ଆମଦାନୀ ହୋଇଥିବା ଏକ ସଂକ୍ରାମକ ରୋଗ । ମୁଁ ଭାବେ ଏବଂ ହସିବାକୁ ଚେଷ୍ଟା କରେ । ଅନେକ ସମୟ ବିଶ୍ଳେଷଣ କରି ମଧ ମୁଁ କିଛି ବୁଝିପାରେ ନାହିଁ । କାରଣ ଖୋଜି ଖୋଜି ପାଏନି । ମୁଣ୍ଡ ବିନ୍ଧେ । ଆଖି ପୋଡେ । ସକାଳୁ ଝାଡା ପରିଷ୍କାର ହୁଏନି । ପରିସ୍ରା ହଳଦିଆ ହୋଇଯାଏ । ମୁଁ ମନେ ମନେ ହସେ । ଏବଂ ଭାବେ, ଏସବୁ ମଧ ପଲିଟିକ୍ସ ।

ଏ ବିଷୟରେ ସୁରେଶ ସହିତ ଯୁକ୍ତି ହେଲେ, ସେ କୁହେ ''ତୁ ଶଳା ବୁର୍ଜୁଆଟା ;'' ମୁଁ ମନେ ମନେ ଭାବେ, ମୁଁ ବୁର୍ଜୁଆ ହେଲି କେମିତି ? ମୋ ପାଖରେ ନିଜର ଖଣ୍ଡେ ଘର ନାହିଁ । ଜମି ମଧ ନାହିଁ । ଦୁଇଶହ ଟଙ୍କାରେ ଚାକିରୀ କରୁଛି । ଚପଲ ଛିଣ୍ଡିଗଲେ ଖଣ୍ଡେ ଚପଲ କିଣି ପାରୁନି । ସାନ ଭଉଣୀକୁ ବାହା କରି ପାରୁନି, ପାଖରେ ଟଙ୍କା ନାହିଁ ବୋଲି । ବାପା ପରଜମିରେ ମୂଲ ଲାଗି ପାଠ ପଢେଇ ଥିଲେ ମୋତେ ମଣିଷ କରିବା ପାଇଁ । ଏବେ ତାଙ୍କ ଶ୍ୱାସ ପାଇଁ ମଧ ଔଷଧ ନିୟମିତ ପଠାଇ ପାରୁନାହିଁ । ଏହା ସତ୍ୱେ ମୁଁ ବୁର୍ଜୁଆ ହେଲି କେମିତି ? ବହିରେ ତାହାହେଲେ ଯାହା ପଢିଥିଲି, ତା' କଅଣ ଭୁଲ ?

ମୋ ଏଇ ଭାବନା କେବଳ ମନ ଭିତରେ ହିଁ ଦବି ରହିଯାଏ । ମୁଁ ଚିନ୍ତା କରେ । ଏବଂ ପରମୁହୂର୍ତ୍ତରେ ଭାବେ, ସୁରେଶ ମୋ ଅପେକ୍ଷା ଅଧିକ ପାଠ ପଢିଛି । ସେ ଯେତେବେଳେ କହୁଛି ନିଶ୍ଚୟ ଠିକ କହୁଥିବ । ତାପରେ ମୋତେ ଅତ୍ୟନ୍ତ ସନ୍ତୋଷ ଲାଗେ ।

ହାତ ଉଠାଇ ଅଳସ ଭାଙ୍ଗିଲି । ହସ ଲାଗିଲା, ପୁନର୍ବାର ସେଇ ଚିନ୍ତା ଚେଷ୍ଟା କରି ମଧ ଭୁଲି ହେଉନି, ମୁଁ କଅଣ କେବେ ଚାହିଁଥିଲି ଏସବୁ କଥା ଚିନ୍ତା କରିବା ପାଇଁ ? ନା... ମୁଁ ତ ଏ ସବୁ ଭୁଲିବା ପାଇଁ ଉପନ୍ୟାସ ପଢୁଥିଲି, ତାପରେ ହଠାତ୍ ଯେ କେମିତି ମୁଁ ଉପନ୍ୟାସ ବନ୍ଦକରି ପୁନର୍ବାର... ହଠାତ୍ ମନେ ପଡିଲା ଉପନ୍ୟାସର ନାୟକ ଏବଂ ନାୟିକା ମୁଁ ଉତ୍ତେଜିତ ହୋଇ ପଡିଲି ଆପେ ଆପେ ।

ସୁରେଶ ହୁଏତ ଠିକ୍ କହୁଥିଲା । ମୁଁ ଭାବିଲି । ସେ କହିଥିଲା ବର୍ତ୍ତମାନ ସାଧାରଣ ମଣିଷ ଏତେ ''କଂପ୍ଲିକେଟେଡ୍'' ହୋଇ ପଡିଲାଣି ଯେ, ତା ସମ୍ମୁଖରେ ମାତ୍ର ଦୁଇଟା ଚିନ୍ତା, ଆଇଦର ସେକ୍ସ ଅର ଫୁଡ୍ । ଆଧୁନିକ ସମାଜ ପାଇଁ ଏଇ ଦୃଷ୍ଟିରୁ 'ଫ୍ରଏଡ୍ ଏବଂ ମାର୍କ୍ସ' ପୂଜନୀୟ । ମୋ ନିଜ କଥା ମୁଁ ବିଶ୍ଳେଷଣ କଲି । ହଁ ସୁରେଶ ଠିକ୍ କହୁଥିଲା । ସୁରେଶ ଅନେକ ସମୟରେ ଠିକ୍ କଥା କୁହେ ।

ଆଜିକାଲି ସମସ୍ତେ କହୁଛନ୍ତି 'ବିପ୍ଲବ ଆସୁଛି !'

ସେଦିନ ସୁରେଶ ମୋତେ କହୁଥିଲା ଦେଖିବୁ ଏଇଟା ପ୍ରି-ଷ୍ଟେଜ । ଏହା ପରେ ହେବ କଣ, ମୁଁ ହସିଥିଲି, କାରଣ ମୁଁ ଖାଇବାକୁ ପାଉଥିଲି, ଏବେ ପାଉଛି, ଏବେ ମଧ୍ୟ ହସୁଛି, ମୁଁ ବା ଆମେ ସମସ୍ତେ ଏକ ପ୍ରକାର ଜନ୍ତୁ । ଖାଇବା ପାଇଁ ବା ଅନ୍ୟ ସବୁ ମନୋରଂଜନ ପାଇଁ, ଯେଉଁଥିରେ ପଇସା ମୁଖ୍ୟ ନୁହେଁ, ଆମର ଜନ୍ମ, ତେଣୁ ଅନ୍ୟ ସମସ୍ୟା ମୋ ସମ୍ମୁଖରେ ମଥା ଉଠାଇ ପାରେ ନାହିଁ ।

ଗତକାଲି ସାମ୍ନା ଚେମ୍ବରରେ ରହୁଥିବା ଦଳେ ଛାତ୍ର ମଧ୍ୟ କହୁଥିଲେ ''ଏଥର ବିପ୍ଲବ ନିଶ୍ଚୟ ଆସିବ ।''

ହଠାତ୍ ମୁଁ ଭାବିଲି ''ବିପ୍ଲବ କଅଣ ଏଇପରି ଆସେ ? ଘଡିର କଣ୍ଟାକୁ କଅଣ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଜୋର କରି ଅଟକେଇ ଦେଲେ, ସମୟର ଘୂର୍ଣ୍ଣନ ବନ୍ଦ ହୋଇଯିବ ? ବିପ୍ଲବ ତ ସ୍ଥିର ନୁହେଁ, ଏ ଯେଉଁ ସ୍ଥିରତା ତା'ତ କେବେ ବିପ୍ଲବ ହୋଇନପାରେ, ପରକ୍ଷଣରେ ଭାବିଲି, ହୁଏତ ମୁଁ ଭୁଲ୍ ବୁଝିଛି । ଏତେ ଲୋକ ଯେତେବେଳେ କହୁଛନ୍ତି ବିପ୍ଲବ ଆସୁଛି, ସେତେବେଳେ ବିପ୍ଲବ ନିଶ୍ଚୟ ଆସୁଛି । ଏବଂ ମୁଁ ନିଶ୍ଚୟ ଭୁଲ୍ ବୁଝିଛି,

ଘରଚଟିଆ ଦୁଇଟି ପୁନର୍ବାର ଘର ଭିତରକୁ ପଶି ଆସି କିଚିରି ମିଚିରି ହୋଇ ବିରକ୍ତ କରିବା ସଂଗେ ସଂଗେ, ମୋ ମସ୍ତିଷ୍କର ଏକାଗ୍ରତାକୁ ଭାଂଗି ଦେଲେ ଏବଂ ମୁଁ ମନେ ମନେ ଅତିଷ୍ଠ ହୋଇ ଉଠି ସେମାନଙ୍କୁ ହାତ ଉଠାଇ ଗୋଡାଇଲି, ସେମାନେ ଝର୍କା ବାଟେ ଫୁର୍‌କିନା ଉଡିଗଲେ, ମୁଁ ଝର୍କା ଦେଇ ବାହାରକୁ ଲକ୍ଷ୍ୟ କଲି । ସୂର୍ଯ୍ୟ ଆକାଶରେ ଉପରକୁ ଚଢୁଥିଲେ ଏବଂ ମାଳୀ, ବଗିଚା, ଆମ୍ବଗଛର ଛାଇମାନେ ଲଂବା ହୋଇ ଯାଉଥିଲେ ।

''କଅଣ କରୁଛ ନରିବାବୁ ?'' କିଏ ଜଣେ ମୋତେ ଡାକିଲା । ସ୍ୱରଟା ନିତାନ୍ତ ପରିଚିତ ମନେ ହେଲା । ମୁଁ ଲକ୍ଷ୍ୟକଲି, ପଡୋଶୀ ରାମଚନ୍ଦ୍ର ନାୟକ ବା ରାମ ପିଅନ ମୋତେ ଅନେଇଥିଲା, ଛିଣ୍ଡା ଗେଂଜି ଓ ଲୁଙ୍ଗି ପିନ୍ଧି ବାଁ ପଟ ସଜନା ଗଛ ତଳେ ଠିଆ ହେଇ ବିଡି ପଉ ପିଉ ।

ମୁଁ ତାକୁ ଲକ୍ଷ୍ୟ କଲି । ସେ ମୋତେ ଲକ୍ଷ୍ୟ କଲା । ହଠାତ୍ ମୋ ଇଚ୍ଛା ହେଲା, ତା, ନିକଟରୁ ଖଣ୍ଡେ ବିଡି ମାଗି ପିଇବା ପାଇଁ କିନ୍ତୁ ମୁଁ ଇଚ୍ଛାକୁ ଆୟତ୍ତ କରିନେଲି । ନା.... ସେ ପିଅନ, ମୁଁ ଅଫିସ ଆସିଷ୍ଟାଣ୍ଟ ।

ସେ ଧୀର ପଦକ୍ଷେପରେ ଝର୍କା ନିକଟକୁ ଚାଲି ଆସି ଠିଆ ହେଲା, ମୁହଁରେ ସଂକୋଚ ଭରି । ମୋତେ ଜଣାଗଲା ଯେମିତି ସେ କିଛି କହିବା ପାଇଁ ଚାହୁଁଛି । କିନ୍ତୁ କହି ପାରୁନାହିଁ । ନୀରବତାରେ ସେଇ କ୍ଷଣମାନଙ୍କରେ ମୁଁ ଭାବିଲି, ସେ ମୋତେ କିଛି ନ କହୁ । କାରଣ ତା ପରି ପ୍ରାଣୀମାନେ କଅଣ ଯେ କହିବେ, ତା ମୁଁ ନିଜ ମନ ଭିତରେ ଠିକ୍ ଉପଲବ୍ଧି କରି ପାରୁଥିଲି, ମୋ ଭାବନାକୁ ନଷ୍ଟ କରି ସେ କହିଲା । ''ନରିବାବୁ'' ମୋତେ ଦୁଇଟା ଟଙ୍କା ଦେଇ ପାରିବ ? ଖାଇବାକୁ କିଛି ନାହିଁ, ତମେ ତ ସବୁ ଜାଣ ନରିବାବୁ, ଏ ଶଳା ଧର୍ମଘଟ ହେଲା ଦିନୁ ମଣିଷ ଭୋକ ଉପାସରେ, ଔଷଧ ଟିକେ ନ ପାଇ ମରିଯାଉଛି । ଆଜି ଗଗନ ମାରଓ୍ୱାଡି କହିଛି ଦୁଇଟଙ୍କା ଦେଲେ କିଲେ ଅଟା ଦେବ ।'' ସେ ମୋତେ କହିଲା । ମୁଁ କିନ୍ତୁ ଅନ୍ୟ କଥା ଭାବୁଥିଲି । ଗତ କାଲି ଏଇ ରାମଚନ୍ଦ୍ର ନାୟକର ସାନପୁଅ ମରିଗଲା, ରାମ ତା ସ୍ତ୍ରୀ ଓ ଅନ୍ୟ ପରିବାର ବର୍ଗ କାନ୍ଦୁଥିଲେ, ମୁଁ ସ୍ପଷ୍ଟ ଶୁଣିଛି, ଡାକ୍ତରଖାନା ବନ୍ଦ ଥିଲା । ଔଷଧ ଦୋକାନ ବନ୍ଦ ଥିଲା, ବଡ ଡାକ୍ତରଙ୍କ ଫିସ୍ ଅଧିକା, ତେଣୁ ତା ପୁଅ ମରିଗଲା, ରାମ କାନ୍ଦି କାନ୍ଦି ପାଟି କରୁଥିଲା ''ଶଳେ ମୋ ପୁଅକୁ ମାରି ଦେଲେ ।''

ମୁଁ ଶବ ଦେଖିପାରେ ନାହିଁ । ଦେଖିଲେ ବାନ୍ତି ଲାଗେ । ରାତିରେ ଶୋଇପାରେ ନାହିଁ । ଶୋଇଲେ ଭୟଙ୍କର ସ୍ୱପ୍ନ ଦେଖେ । ତେଣୁ ଝର୍କା କବାଟ ବନ୍ଦ କରି ମୁଁ ନିଜକୁ ପ୍ରଶ୍ନ କରୁଥିଲି ବାରମ୍ବାର, ''ବିପ୍ଳବ ତାହା ହେଲେ ଏହି ପରି ଆସେ ?''

''ନରିବାବୁ'' ରାମ ପୁନର୍ବାର ମୋତେ ଡାକିଲା ।

ମୁଁ ତାକୁ ଲକ୍ଷ୍ୟକଲି, ଏଇ ରାମର ସାନପୁଅ ଗତକାଲି ମରିଯାଇଛି, ସେ କିନ୍ତୁ ତାକୁ ଭୁଲି ଆଜି ନିଜ ପେଟ ପାଇଁ ଟଙ୍କା ମାଗି ଆସିଛି, ଭୋକ ହେଲେ ମଣିଷ ସବୁ ଭୁଲିଯାଏ । ମୁଁ ମନେ ମନେ ଭାବି ହସିଲି ।

''ଦରମା ପାଇଲେ ମୁଁ ତୁମ ଟଙ୍କା ଦେଇଦେବି'' ମୋତେ ଚିନ୍ତାମଗ୍ନ ଦେଖି ସେ ଆଶାନ୍ୱିତ ହୋଇ ଉଠି କହିଲା ।

ମୁଁ ହିସାବ କଲି, ମାତ୍ର ଦଶଟଙ୍କା ମୋ ନିକଟରେ ଅଛି । ଏବଂ ପୁରା ମାସଟା ସାମ୍ନାରେ, ମୁଁ ନିଷ୍ଠୁର ହେବାକୁ ଚେଷ୍ଟା କଲି । ତାକୁ କହିଲି ''ମୋ ପାଖରେ ଟଙ୍କା କାହିଁ ? ମୁଁ ନିଜେ ସୁରେଶକୁ ଟଙ୍କା ଦଶଟା ମାଗିଛି ।''

ସେ ଦୀର୍ଘଶ୍ୱାସ ତ୍ୟାଗ କରି ମୋତେ ଅନେଇଲା । ମୁଁ ଦୂର ଆକାଶକୁ ଅନେଇଲି, ଚତୁର୍ଦ୍ଦିଗରେ ନିସ୍ତବ୍ଧତା ବ୍ୟତୀତ ଅନ୍ୟ କିଛି ନଥିଲା, ଏବଂ ଆମ ଦୁହିଁଙ୍କ ମଧ୍ୟରେ ଏକ ଘନ ନୀରବତା ଆସ୍ଥାନ ଜମେଇ ଦେଲା ।

ସେ ନୀରବରେ ମୁଣ୍ଡ ହଲେଇଲା, ଏବଂ ଧୀର ପଦକ୍ଷପରେ ଆଗକୁ ବଢିଗଲା, ମୁଁ ତାକୁ ଦୃଷ୍ଟି ଶକ୍ତିର ସୀମା ବାହାରକୁ ଯିବା ପର୍ଯ୍ୟନ୍ତ ଲକ୍ଷ୍ୟ କରି ରହିଲି । ଦେହରୁ କେମିତି ଏକ ଅପରିଷ୍କାର ଗନ୍ଧ ବାହାରୁଛି । ବିଶେଷକରି କାଖତଳୁ । ମୁଁ ବିଛଣାରେ ଶୋଇପଡି ପିଠି କୁଣ୍ଡାଇବାକୁ ଲାଗିଲି ଏବଂ ଠିକ୍ ସେଇ କ୍ଷଣରେ ଦ୍ୱାର ଠକ୍ ଠକ୍

ହେଲା । ସମୟ ଦିନ ତିନିଟା କିମ୍ବା ଚାରିଟା ହୋଇପାରେ, ଭୀଷଣ କ୍ଳାନ୍ତ ଶରୀରରେ ତିନିଦିନ ହେଲା ଗାଧୋଇ ପାରିନି, ଦେହ ଅଳସୁଆ ଲାଗୁଛି ଶୋଇ ଶୋଇ, ଦ୍ୱାରରେ ପୁଣି ଥରେ ଠକ୍ ଠକ୍ ହେଲା, ଏବଂ ପରିଚିତ କଣ୍ଠ ଶୁଭିଲା "କିରେ ନିରଂଜନ ଶୋଇଛୁ ନା କଅଣ ?"

ମୁଁ ନିଜ ଅନିଛା ସତ୍ତ୍ୱେ ଦ୍ୱାର ଖୋଲିଲି । ସୁରେଶ ଠିଆ ହୋଇ ହସୁଥିଲା, "ଶୋଇଥିଲୁ ବୋଧହୁଏ ?" ଭିତରେ ପ୍ରବେଶ କରି ସେ ମୋତେ ପ୍ରଶ୍ନ କଲା, ମୁଁ ନୀରବରେ ସମ୍ମତି ଜଣାଇଲି ମୁଣ୍ଡ ହଲାଇ, ସେ ଚୌକିରେ ଆଉଜି ବସି ପଡି ମୋତେ ଲକ୍ଷ୍ୟ କଲା, ଚକ୍ଷୁରେ ଏକ ତୀବ୍ର ଦଂଶନ ନେଇ, ମୁଁ ଆଶ୍ଚର୍ଯ୍ୟ ହେଲି ।

"କାଲି ରାତିରେ ମୁଁ ମାଳତୀ ପାଖକୁ ଯାଇଥିଲି ।" ସେ ହଠାତ କହିଲା ।

"ମାଳତୀ ?" ମୁଁ ପ୍ରଶ୍ନ କଲି ।

"ମାଳତୀ ନ ହୋଇ ସୁରଭି ମଧ୍ୟ ହୋଇପାରେ, ମୁଁ ଜାଣିନି । କିନ୍ତୁ ସେ ଏକ ମାଳତୀ ଫୁଲ ପରି ମୋତେ ମୁଗ୍ଧ କରିଛି । କିନ୍ତୁ ତା' ବ୍ୟବସାୟକୁ ନେଇ ମୁଁ ଭାବିଲି ମାଳତୀ ତା ପାଇଁ ଉପଯୁକ୍ତ ନାଁ ।" ସେ ହସିଲା ।

"ତା ମାନେ... ?" ମୁଁ କିଛି ପ୍ରକୃତରେ ବୁଝି ପାରିଲି ନାହିଁ ।

"ଫ୍ରୟେଡ ଏବଂ ମାର୍କ୍ସ, ତୋତେ କହିଥିଲି ନା- ସେମାନେ ମୋ ପାଇଁ ତୋ ପାଇଁ ଆମ ସମସ୍ତଙ୍କ ପାଇଁ ଆଜିର ଏ ସାରା ସଂସାର ପାଇଁ ସମସ୍ୟା । ଆଃ କଅଣ ସେମାନେ ନ କରିଛନ୍ତି । ମୁଁ ଯେତେବେଳେ ଆଧୁନିକ ସମାଜର ଗତିଧାରା ମଧ୍ୟରେ ଅତିଷ୍ଠ ହୋଇଉଠେ, ମାର୍କ୍ସଙ୍କ ଶ୍ରେଣୀ ବିଭେଦ ମଧ୍ୟରେ ପେଶି ହୋଇଯାଏ, ସେତେବେଳେ ଦୌଡେ ମାଳତୀ ନିକଟକୁ, ଫ୍ରୟେଡଙ୍କ ନିକଟକୁ । କାଲି ରାତିରେ ମଧ୍ୟ ସଭା ଶେଷରେ ପୋଲିସ ମୋତେ ଗୋଡାଇଲା ଏବଂ ମୁଁ ଦୌଡିଗଲି ମାଳତୀ ନିକଟକୁ । ମାତ୍ର ପାଞ୍ଚଟା ଟଙ୍କା । ତାପରେ ସମସ୍ତ ଇନ୍ଦ୍ରିୟ ତୃପ୍ତ । ମସ୍ତିଷ୍କ ଚିନ୍ତାଶୂନ୍ୟ ହୋଇ ଉଠିବ । ଦେଖ ଆଜି ମୁଁ କେତେ ପ୍ରଫୁଲ୍ଲ ।" ସେ ଦୁଇ ହାତ ଉଠାଇ ଅଳସ ଭାଂଗିଲା । ମୁଁ ତାକୁ ଲକ୍ଷ୍ୟ କଲି । ସେ ହସି ହସି ମୋତେ ଲକ୍ଷ୍ୟ କରି ପ୍ରଶ୍ନ କଲା, "ତୁ ଯିବୁ ?"

"କିନ୍ତୁ... ।" ସେ ଏତେ ଶୀଘ୍ର କଥାଗୁଡାକ କହିଦେଲା ଯେ ମୁଁ କିଛି କହିପାରିଲି ନାହିଁ, କେବଳ ଗୋଟିଏ ଶବ୍ଦ ଉଚ୍ଚାରଣ କରିବା ବ୍ୟତୀତ । ତଥାପି ତା' ବକ୍ତବ୍ୟ ମୁଁ ସ୍ପଷ୍ଟ ବୁଝିପାରିଥିଲି ।

"ଧର୍ମଘଟ ସମୟରେ କେବଳ ଦେଶୀ ମଦଭାଟି ଏବଂ ବେଶ୍ୟାଳୟ ହିଁ ଖୋଲା ଥାଏ । ଆଉ କିଛି ନୁହେଁ । ସେ ଚୌକିରୁ ଉଠି, ଦୁଇପାଦ ଆଗେଇ ଆସି, ମୋ କାନ୍ଧରେ ହାତ ରଖି କହିଲା, "ତୁ ସଂକୋଚ କରନାହିଁ । ମୁଁ ଜାଣେ ତୁ ତିନିଦିନ ହେଲା ଏଠି ଘରେ ବସି କେବଳ ବୋର ହେଉଛୁ । ଯା... ରିଲାକ୍ସ ! ବସ୍ତ୍ର ତଳେ ଆମେ ସମସ୍ତେ ନଗ୍ନ । ମୋ କଥା ମାନ- ସନ୍ଧ୍ୟା ପରେ ପାଞ୍ଚଟଙ୍କା ଧରି ସିଧା... ।"

ସେ ମୋତେ ପଥ ବତାଇବାକୁ ଲାଗିଲା ଏବଂ ମୁଁ ଏକ ବାଧ୍ୟ ଛାତ୍ର ପରି ତା' କଥାକୁ ଧ୍ୟାନ ଦେଇ ନୀରବରେ ଶୁଣିଗଲି । ଏବଂ ମନ ମଧ୍ୟରେ ମାଳତୀକୁ ଦେଖିବା ପାଇଁ ଅଦ୍ୟମ ଆଗ୍ରହ ସୃଷ୍ଟି ହେଲା । ମୁଁ ତା କଥାକୁ ଗୁଣୁଗୁଣୁ ମନ ମଧ୍ୟରେ ନିଶ୍ଚୟ କଲି, ଆଜି ନିଶ୍ଚୟ ଯିବି ।

ତା' ଘରୁ ବାହାରିଲା ବେଳକୁ ରାତି ଦୁଇଟା ହୋଇଯାଇଥିଲା । ମୁଁ ଧୀର ପଦକ୍ଷେପରେ ବାହାରକୁ ଆସିବା ସଂଗେ ସଂଗେ ଚତୁର୍ଦ୍ଦିଗର ଅଂଧାର ମୋତେ ହଠାତ୍ ଯେମିତି ମାଡିବସିଲା । ଶୀତଟା ଏବେ ମଧ୍ୟ ଅଛି । ସାର୍ଟ କଲରକୁ ଟେକି, ପକେଟରେ ହାତ ଭରି ମୁଁ ତାହା ସ୍ପଷ୍ଟ ଅନୁଭବ କଲି । ଏବଂ ଗୁପ୍ତ ସଡକର ଦୈର୍ଘ୍ୟକୁ ନିଜ ପଦକ୍ଷେପ ମାନଙ୍କରେ ମାପିବାକୁ ଇଚ୍ଛା ନେଇ ଆକାଶକୁ ଅନେଇଲି । ରାତିର ଅନ୍ତିମ ପ୍ରହରରେ ମଧ୍ୟ ଚନ୍ଦ୍ର ଆକାଶରେ ଉପସ୍ଥିତ ଥାଇ ଅଂଧକାରର ସାଗର ମଧ୍ୟରେ ବୁଡି ଯାଇଥିବା ସହରକୁ ଆଲୋକ ପ୍ରଦାନ କରୁଥିଲା । ମୋତେ ଲାଗିଲା, ଯେପରି ଚନ୍ଦ୍ର ସବୁ ଦେଖୁଛି । ସଂଧ୍ୟାରୁ ଏ ପର୍ଯ୍ୟନ୍ତ ମୁଁ ଯାହା ଯାହା କରିଛି, ସମସ୍ତ ଦେଖିଛି । ଏଇ କିଛି କ୍ଷଣ ପୂର୍ବରୁ ମୁଁ ଯେଉଁ ଅଶ୍ଳୀଳକୃତ୍ୟ କରୁଥିଲି ତା ମଧ୍ୟ ଦେଖିଛି, ଉକ୍ତ କକ୍ଷର କଣା ଛପର ଦେଇ । ମୁଁ ମୁଣ୍ଡ ତଳକୁ କଲି, ନିଜ ଅଜ୍ଞାଣତରେ ।

ଚତୁର୍ଦ୍ଦିଗରେ ନିସ୍ତବ୍ଧତା । ଭୟାନକ ନିସ୍ତବ୍ଧତା । ମୁଁ ନିଜ ପାଦଶବ୍ଦ ସ୍ପଷ୍ଟ ଶୁଣି ପାରୁଥିଲି । ଥଣ୍ଡାରେ ଥରିଥରି ପକେଟରେ ହାତ ଭରି ଆଗକୁ ବଢି ଚାଲିଥିଲା ସମୟରେ । ମୋ ଶରୀରଟା ଶିଥିଳ ହୋଇ ଉଠିଥିଲା, ନିଜର ସମସ୍ତ ଉତ୍ତେଜନା ହରାଇ । ହଠାତ୍ ମୋ ପାଟି ଭିତରଟା ଖଟା ଖଟା ଲାଗିଲା । ଉକ୍ତ ଅନାମଧେୟ ଯୁବତୀର ଓଠରେ ମୁଁ ଚୁମା ଦେଇଥିଲି । ତା ଛେପ ମୋ ପାଟି ଭିତରେ ନିଶ୍ଚୟ ପଶିଥିବ । ମୋତେ ବାନ୍ତି ଲାଗିଲା । ପାଟି ଭିତରର ସମସ୍ତ ଛେପକୁ ଏକାଠି କରି ମୁଁ ଛୁଙ୍କି ଦେଲି । ଥୁଃ !

ଆଜି ଶାଳୀ ନିହାତି ଅଧିକ ପିଇ ଦେଇଥିଲା । କିଛି ଜାଣିନ ପାରିଲା ପରି ମୋର ମନେ ହେଲା । ମଝିରେ ଥରେ ମୋତେ ଲାଗିଥିଲା ଯେମିତି ମୁଁ ଶୂନ୍ୟରେ ଭାସୁଛି । ଗୋଟାଏ ରବର କଣ୍ଢେଇ ଉପରେ ଶୋଇ ଶକ୍ତି ପରୀକ୍ଷା କରୁଛି । କିନ୍ତୁ ପର ମୁହୂର୍ତ୍ତରେ ତା ଛାତିର ଟାଣ ଟାଣ ମାଂସ ପିଣ୍ଡୁଳାକୁ ଦୁଇମୁଠାରେ ଚିପିଧରି ମୁଁ ସବୁକିଛି ଭୁଲିଯାଇଥିଲି । ମୁଁ ପାଞ୍ଚଟଙ୍କା ଦେଇଛି । ମୋତେ ତାହା ଅସୁଲ କରିବାକୁ ହେବ ।

କିନ୍ତୁ ପ୍ରକୃତରେ କଅଣ ମୁଁ ପାଞ୍ଚଟଙ୍କା ଅସୁଲ କରିପାରିଲି ! ମୁଁ ମନେ ମନେ ଚିନ୍ତା କଲି । କାହିଁକି ଟିକେ ବି ପ୍ରତିବଂଧକ ମୁଁ ତ ଅନୁଭବ କରି ପାରିନାହିଁ । ତା ମୁହଁରେ ମଧ୍ୟ କୌଣସି ପ୍ରକାରର ପ୍ରଭାବ ବା ପ୍ରତିକ୍ରିୟା ଲକ୍ଷ୍ୟ କରି ପାରିନାହିଁ ।

ଏହାଠାରୁ ବରଂ ବାଥରୁମ୍ ଯାଇ କିଛି ସମୟ ନିଜ ନିଶ୍ୱାସ ପ୍ରଶ୍ୱାସର ତୀବ୍ରତାକୁ ଅନୁଭବ କରିଥିଲେ ଭଲ ହୋଇଥାନ୍ତା । ସୁରେଶ ଉପରେ ବଡ ରାଗ ହେଲା । ଶଳାଟା କହୁଥିଲା, 'ଭଲ ଟାଇଟ୍ ମାଲ ଅଛି ।' ତା' କଥାରେ ପଡି ଆଜି ପାଞ୍ଚଟା ଟଙ୍କା କୂଅରେ ପକାଇ ଦେଲି ।

ହଠାତ୍ ମୋତେ ନିଜ ଦେହଟା ଅଠାଅଠା ଲାଗିଲା । ତା' ଦେହଟା ମଧ୍ୟ ଠିକ ଏଇପରି ଅଠାଅଠା ଲାଗୁଥିଲା । ହାତ ପାପୁଲି, ମୁହଁ, ବେକ, ଛାତି, ଅଣ୍ଟା, ଜଂଘ ସବୁ ଅଠା ଅଠା ଲାଗିଲା । ଦେହଟା ପୁନର୍ବାର ବିକାରରେ ଶିତେଇ ଉଠିଲା । ତିନିଦିନ ହେଲା ଗାଧୁଆ ହୋଇନାହିଁ । ତା ଉପରେ ପୁଣି ଏ ଶାଳୀ 'ରୋଜା' ଦେହର ମଇଳା ଓ ଅଠା ! ମୁଁ ପୁଣିଥରେ ଢୁକିଲି । ଘରକୁ ଯାଇ ଗାଧୋଇବା ପାଇଁ ଇଚ୍ଛା କରିବାର ପର ମୁହୂର୍ତ୍ତରେ ମନେ ପଡିଲା ଯେ ସହରରେ ଧର୍ମଘଟ ଏବଂ ତିନିଦିନ ହେଲା ପାଣି ଆସୁନାହିଁ କଳରେ ।

ମୁଁ ଦ୍ରୁତ ଗତିରେ ସହର ଉଦ୍ଦେଶ୍ୟରେ ଆଗେଇ ଚାଲିଲି ।

ସହର ମଧ୍ୟରେ ଦୁଇଥର ପୋଲିସ ଅଟକେଇ ମୋତେ ନିଜ ପରିଚୟ ମାଗିଲା । ମୁଁ ପରିଚୟ ଦେଲି । ଧର୍ମଘଟ ହେଲା ଦିନୁଁ ପୋଲିସ ସବୁବେଳେ ସହର ଭିତରେ ପରିକ୍ରମା କରି ଚାଲିଛି । ଚତୁର୍ଦ୍ଦିଗରେ ଅନ୍ଧାର । ତେଣୁ ପ୍ରାୟ ଚାରିଦିନ ହେଲା ରାତିରେ ଲୋକମାନେ କେହି ଘରୁ ବାହାରୁ ନାହାଁନ୍ତି । ସହରର ରାଜରାସ୍ତାରେ କେବଳ ପୋଲିସ ଗାଡି ଏବଂ ପୋଲିସ ଘୋଡାର ଚିହ୍ନ ଓ ଶବ୍ଦ ରାତି ଦଶଟା ପରେ ପରିଷ୍କାର ଶୁଣାଯାଉଛି । ମୁଁ ଏଥିରେ ନିତାନ୍ତ ଅଭ୍ୟସ୍ତ ।

ମୋ ଘରକୁ ଯିବା ଗଳିର ପୂର୍ବ ଛକରେ ସେମାନେ ମୋତେ ଅଟକେଇ ପୁନର୍ବାର ପ୍ରଶ୍ନ କଲେ । ମୁଁ ଉତ୍ତର ଦେଲି । ତାପରେ ଜଣକ ନିକଟରୁ ମାଚିସ ମାଗି ପକେଟରେ ଥିବା ଏକମାତ୍ର ଚାରମିନାରଟିରେ ଅଗ୍ନି ସଂଯୋଗ କଲି, ଯେଉଁଟି ମୋତେ ଉକ୍ତ ଅନାମଧେୟ ଯୁବତୀ ନିକଟରୁ ମିଳିଥିଲା ମାଗଣାରେ । ମାଚିସ୍ ଫେରାଇଲା ବେଳେ ସେ ମୋତେ କହିଲା, ''ଯାହାହେଉ ଚିନ୍ତା ଗଲା । ଶଳା, ଚାରି ରାତି ହେଲା ମାଇକିନା ପାଖରେ ଶୋଇ ପାରିନି ଏ ଡ୍ୟୁଟି ଯୋଗୁଁ । କାଲି ସକାଳୁ ଶାଳୀକୁ ଧରିବି ଯେ ସଂଜ ପର୍ଯ୍ୟନ୍ତ ।''

ମୁଁ ତାକୁ ଆଶ୍ଚର୍ଯ୍ୟ ହୋଇ ଅନେଇଲି । ନିଜ ଉତ୍ସୁକତାକୁ ଦବେଇ ନପାରି ପ୍ରଶ୍ନକଲି, ''କାଲି ସକାଳୁ ?''

''ହଁ, ସକାଳୁ, ମାଇକିନାମାନେ ବଡ ଭୟଙ୍କର ଜାତି, ତମେ ବୁଝିନ ତାହା ହେଲେ । ପାଂଚଦିନ ପାଖରେ ନ ଶୁଅ, ଦେଖିବ ତମେ ନ ଥିଲା ବେଳେ ଅନ୍ୟ କିଏ ଜଣେ ଆସି ତା' ପାଖରେ ଶୋଇଛି ।'' ସେ କହିଲା ଏବଂ ନିଜ ରସିକତାରେ ମୁଗ୍ଧ ହୋଇ ହୋ ହୋ ହସିଲା । ମୁଁ ତା ଜ୍ଞାନ ଦେଖି ଆଶ୍ଚର୍ଯ୍ୟ ହେଲି ।

''କିନ୍ତୁ କାଲି ସକାଳୁ କାହିଁକି ?'' ମୁଁ ନିଜ ପ୍ରଶ୍ନର ଉତ୍ତର ପାଇଁ ବ୍ୟାକୁଳ ହୋଇ ଉଠିଲି ।

ସେ ଥରେ ମୋତେ ଅନେଇଲା ଚକ୍ଷୁରେ ଦୟା ଭରି । ତାପରେ ନିଜ ସ୍ୱରକୁ ପରିଷ୍କାର କରି ସ୍ପଷ୍ଟ କହିଲା, ''ତୁମେ କଅଣ କିଛି ଜାଣିନ ? କିଓ କାଲିପରା ଧର୍ମଘଟ ଭାଂଗିବ । ଆଜି ହେଲା ଶେଷ ରାତି, ସକାଳ ପାଞ୍ଚଟାରୁ ଧର୍ମଘଟ ଶେଷ ହେବ । ଆମର ଛୁଟି ।''

ହଠାତ୍ ମୁଁ ପୁଲକିତ ହୋଇ ଉଠିଲି । ଆରେ ସତ୍ୟେ ତ ! ଆଜିତ ଶେଷ ରାତି । ସକାଳୁ ପୁଣି ସହର ଜୀବନ ପାଇବ । ଚାରିଦିନର ନିସ୍ତବ୍ଧତା ପରେ କୋଳାହଳମୟ ସହର ଠିକ ଏକ ବିଖ୍ୟାତ ଜନବହୁଳ ମେଳା ପରି ଲାଗିବ । ଏବଂ ସଦ୍ୟ ଯୌବନା କୁମାରୀମାନଙ୍କ ଆଖି ଦେଖି ମୁଁ ତୃପ୍ତି ପାଇବି । ଟାଇପିଷ୍ଟ ରୋଜିର ମାଂସଳ ଗୋରା ଜଂଘ ପୁନର୍ବାର ପ୍ରତ୍ୟେକ ଦିନ ପରି ମୋ ମନରେ ବଂଚିବାର ଆଗ୍ରହ ଭରିଦେବ । ମୁଁ ଚଞ୍ଚଳ ହେଇ ଉଠିଲି । ମୋ ଦେହଟା ଭୀଷଣ ଭାବେ ଅଠାଅଠା ଲାଗିଲା । ପାଟି ଭିତରଟା ଖଟା ଏବଂ ପିତା ଲାଗିଲା । ମୁଁ ପୋଲିସ କନେଷ୍ଟବଲ୍‌କୁ ଅନେଇ ହସିଲି । ଅଂଧାରରେ ।

□ *ଅକ୍ଷର : ୧୯୭୪ ମସିହା*



# ନୂଆଘର

ବିଶିକେଶନ ବଡ କ୍ଳାନ୍ତ ହୋଇ ପଡିଥିଲେ, ପାରାଲିସିସ୍ ଆଟାକ୍ ପରେ ତାଙ୍କର ଦେହର ବଳ ଓ ମନର ଦମ୍ଭ ଭାଂଗି ପଡିଛି । ଏବେ ସାମାନ୍ୟ ଭଲ ହୋଇଗଲେ ମଧ ଦଶପାଦ ଚାଲିଲେ ସେ ବଡ କ୍ଳାନ୍ତ ହୋଇ ପଡୁଛନ୍ତି । ନିତାନ୍ତ ଏକାକୀ ହୋଇ ପଡିଛି ଜୀବନ, ବଡ କଷ୍ଟକର, ଅସହ୍ୟ । ନିଜର ନିମ୍ନତମ ପ୍ରୟୋଜନ ପାଇଁ ମଧ ଅନ୍ୟ ଉପରେ ନିର୍ଭର ହେବାକୁ ପଡୁଛି ।

ରାଧାମଣି ତାଙ୍କର ସ୍ୱର୍ଗୀୟା ପତ୍ନୀ । ସେ ଥିଲାବେଳେ କଥା ଥିଲା ଭିନ୍ନ । ହେଲେ ତାଙ୍କ ମୃତ୍ୟୁ ପରେ ବିଶିକେଶନ ବାବୁ ନିଜକୁ କାହିଁକି କେଜାଣି ନିହାତି ନିଃସଙ୍ଗ ଅନୁଭବ କଲେ, ପରିବାରର ସମସ୍ତେ ରାଧାମଣି ଥିଲାବେଳେ କେତେ ଶ୍ରଦ୍ଧା, ଭକ୍ତି ଓ ସମ୍ମାନ କରୁଥିଲେ, କିନ୍ତୁ ରାଧାମଣି ଯିବା ପରେ ପରେ ସବୁ ଯେମିତି ବଦଳିଗଲା । ଅର୍ଦ୍ଧାଙ୍ଗିନୀଙ୍କୁ ସେ ଭୁଲି ପାରିଲେନି ଓ ପିଲାମାନଙ୍କର ବ୍ୟବହାର ତାଙ୍କୁ ଅତ୍ୟନ୍ତ ବ୍ୟଥିତ କଲା । ବହୁ ବେଦନା ଦେଲା । ଏହି ସବୁ ଚିନ୍ତା କରି କରି ତାଙ୍କୁ ପ୍ରଥମେ ଆଟାକ୍ ହେଲା ।

ତା'ପରେ ଅଙ୍କ ପରିବର୍ତ୍ତନ, ହଠାତ୍ ସେ ଯେମିତି ନିଜ ପରିବାର ବର୍ଗଙ୍କ ପାଇଁ ଏକ ଅଦରକାରୀ ହୋଇ ପଡିଲେ, ମନ ଭିତରେ ବଡ କଷ୍ଟ ହୁଏ । ଦୁଇ ଆଖିରେ ଲୁହ ଜକେଇ ଆସେ । ଦୀର୍ଘଶ୍ୱାସ ମାରି ଏକ ଅସହାୟ ଚାହାଣୀରେ ସେ ଦୂର ଦିଗ୍‌ବଳୟକୁ ଲକ୍ଷ୍ୟ କରନ୍ତି ଏବଂ ମନଭରି କାନ୍ଦନ୍ତି । ରଧାକୁ ମନ ପକାନ୍ତି । ଆଜି ଯେମିତି ପାଣି ପିଇବା ପାଇଁ ଦୀର୍ଘ ଘଣ୍ଟାଏ କାଳ ଡାକି ଡାକି କେହି ନଶୁଣିବାରୁ ବାଧ ହୋଇ ବଡ ଅଭିମାନରେ ବାଡିଧରି ପାଦ ଓ ଅର୍ଦ୍ଧେକ ମଲା ଶରୀରକୁ ଘୋଷାରି ଘୋଷାରି ଜଗ୍‌ରୁ ପାଣି ଢାଳି ଦୁଇଗ୍ଲାସ ପାଣି ପିଇଲେ । ଥକା ମାରି ବାରଣ୍ଡାରେ ବସି ପଡିଲେ, ସନ୍ଧ୍ୟା ପୂର୍ବରୁ ଥଣ୍ଡା ପବନରେ ସେ ଟିକେ ମନର୍ ଗ୍ଲାନିକୁ ଭୁଲିଯିବାକୁ ଚେଷ୍ଟା କଲେ । ବହୁ ଦିନପରେ ହଠାତ୍ ସିଗାରେଟ୍ ଟାଣିବାକୁ ଇଚ୍ଛା ହେଲା, ପୁନର୍ବାର ଡାକିଲେ ନାତି, ନାତୁଣୀ ଓ ବହୁମାନଙ୍କୁ । କିଛି ଉତ୍ତର ପାଇଲେ ନାହିଁ, ଭାରି ଦୁଃଖ ଲାଗିଲା, ଆକାଶକୁ କ୍ଷଣେ ଚାହିଁଲେ, ମନେ ମନେ ଟିକେ ହସିଲେ ଓ ପାଖ ନଡିଆଗଛକୁ ଲକ୍ଷ୍ୟ କଲେ । ମନେ ହେଲା ଗଛ ପାଖରେ ରାଧା ଠିଆ ହୋଇ ହସୁଛନ୍ତି । ସେମିତି କହୁଛନ୍ତି, ଯେମିତି ବଞ୍ଚିଥିବା ବେଳେ ସଦା କହୁଥିଲେ — ମୋ କଥା ଶୁଣୁନଥିଲ

ଏବେ ଭୋଗୁଛକି ନାହିଁ ? ସେ ଦୁଇ ହାତ ଉଠାଇ ଡାକିଲେ ରାଧା- ''ତୁମେ ଯାଅ ନାହିଁ । ଶୁଣ ରାଧା ଶୁଣ ।'' କିନ୍ତୁ ରାଧା ଶୁଣିଲେ ନାହିଁ । ମୁରୁକି ହସି ଲୁଚିଗଲେ ।

ବିଶିକେଶନ ବାବୁ ପଛକୁ ବୁଲି ଘରକୁ ଲକ୍ଷ୍ୟ କଲେ, ଘରଟା ଯେମିତି ଭାଙ୍ଗି ଭାଙ୍ଗି ଆସୁଛି । ଦୀର୍ଘ ଚାରିବର୍ଷ ହେଲା ମରାମତି ହୋଇନାହିଁ । ବଡ ପୁଅ ବଡ ଚାକିରି କରି ଅନେକ ଦିନରୁ ବାହାରେ ରହୁଛି ପରିବାର ନେଇ, ମାଆ ମଲାବେଳେ ଆସି ନିଜ କର୍ମ ଶେଷ କରି ଯାଉଛି ଯେ ଯାଇଛି । ଚିଠିପତ୍ର ଦେବା ପାଇଁ ମଧ୍ୟ ତା ପାଖରେ ସମୟ ନାହିଁ । ବାପାର ଆଟାକ୍ ବେଳେ ମଧ୍ୟ ଆସିପାରିନାହିଁ, କେବଳ ଟଙ୍କା ଦୁଇ ହଜାର ପଠାଇ ନିଜର କର୍ତ୍ତବ୍ୟ ଜଞ୍ଜାଳରୁ ମୁକ୍ତି ପାଇଯାଇଛି ।

ବାକି ଦୁଇ ପୁଅ ବ୍ୟବସାୟରେ ଆଜି ଭଲ ରୋଜଗାରକ୍ଷମ, ହେଲେ ପୁରୁଣା ଘରକୁ ମରାମତି ନକରି ନୂଆ ଘର ନିର୍ମାଣରେ ବ୍ୟସ୍ତ, ବିଶିକେଶନ ବାବୁଙ୍କ ସହିତ ଏମିତି ମଧ୍ୟ ପୁଅମାନଙ୍କର ସାକ୍ଷାତ କଦ୍ବଚିତ କ୍ୱଚିତ ହୁଏ । କଥାବାର୍ତ୍ତା ତ ଦୂରର କଥା, ସେମାନେ ବାପ ପ୍ରତି କର୍ତ୍ତବ୍ୟର ସଂଜ୍ଞା ହୁଏତ ଘରର ପୁରାତନ ଚୌକି ବା ଟେବୁଲ୍‌କୁ ଘରର ଏକ କୋଣରେ ପକାଇ ରଖିବା ବୋଲି ବୁଝୁଥିଲେ, ତେଣୁ ବିଶିକେଶନ ବାବୁଙ୍କର ସମସ୍ତ ଆଶା ଆକାଂକ୍ଷା ମରିସାରିଥିଲା ରାଧାମଣିଙ୍କ ଦେହାନ୍ତ ପରେ । ତେଣୁ ସେ କାହାକୁ ନିଜ ମନକଥା କହିପାରୁନଥିଲେ । ନାତି ନାତୁଣୀମାନେ ବେଳେ ବେଳେ କେବେ ବା କେମିତି ରୁଟି ଦୁଇ ଖଣ୍ଡ ବା ପାଉଁରୁଟି ଚାରିଖଣ୍ଡ କେତୋଟି ବଟିକା ସହିତ ନିଜର ଅନିଚ୍ଛା ସହିତ ଆଣି ତାଙ୍କ ଘର ମଧ୍ୟରେ ଏକ ଭଂଗା ଟେବୁଲ୍ ଉପରେ ରଖିଚାଲି ଯାଆନ୍ତି, ପାଣି ତାଙ୍କୁ ନିଜେ ଟାଣି ଘୋଷାରି ହୋଇ ପିଇବାକୁ ପଡେ ।

ଏବେ ପିଲାମାନଙ୍କର ଇଚ୍ଛା ହୁଏ ପୁରାତନ ଘର ଛାଡି ସହର ମଧ୍ୟରେ ତିଆରି ହୋଇଥିବା ନୂଆ ଘରକୁ ଶିଘ୍ର 'ସିଫଟ୍' ହେବା । ଏ ବିଷୟରେ ତାଙ୍କର ମତାମତ କେହି ଲୋଡି ନାହାନ୍ତି । କେବଳ ପୁଅବୋହୂ, ନାତି ନାତୁଣୀମାନଙ୍କର କଥାବାର୍ତ୍ତାରୁ ସେ ଯାହା ବୁଝନ୍ତି ବା ଜାଣନ୍ତି ।

ନାତି ନାତୁଣୀମାନେ ତାଙ୍କ ପାଖକୁ ଆସନ୍ତି ନାହିଁ । ସକାଳୁ ରାତି ଶୋଇବା ପର୍ଯ୍ୟନ୍ତ ସେ କେବଳ ଅତୀତର ରୋମନ୍ଥନ କରନ୍ତି । ଜନ୍ମଠାରୁ କୈଶୋର, ତାପରେ ଯୌବନ , ଜୀବନର ପ୍ରଥମ ପ୍ରେମ ବିବାହ ଓ ଗୃହସ୍ଥ ଜୀବନର ଆୟ ଆରମ୍ଭ, ରାଧାମଣିଙ୍କର ତାଙ୍କ ପ୍ରତି ପୂରା ପରିବାର ପ୍ରତି ଅବଦାନ ଓ ବଳିଦାନ, ସେ ଅନେକ ସମୟରେ ଭାବନ୍ତି ସେ ଜୀବନସାରା ଜୀବନର ଶେଷ ପର୍ଯ୍ୟନ୍ତ ଖାଲି ଦେଇଗଲା, ବିଶି କେଶନ ବାବୁଙ୍କ ପରି ଏକ ଅମାନିଆ ମନକୁ ମନାଇବାର ଲକ୍ଷ୍ୟ ନେଇ ଖାଲି ଦେଇଗଲା । ଏବଂ ଦେଇଗଲା । ସଳିତା ପରି ଜଳି ସମସ୍ତଙ୍କୁ ଆଲୋକ ଦେଲା, ପ୍ରତି ବଦଳରେ କେବେ ବି କିଛି କାମନା କରି ନଥିଲା, ତେଣୁ କିଛି ବି ପାଇଲା ନାହିଁ । ଆଜି ସେ ଲିଭିଗଲା ପରେ ବିଶିକେଶନଙ୍କ ଆଖି ଆଗରେ ଖାଲି ଅନ୍ଧାର । ସ୍ନେହ, ମମତା, ପ୍ରେମ, କର୍ତ୍ତବ୍ୟ ସହନଶୀଳତା ଆଦି ସମସ୍ତ ନୀତି ନିୟମକୁ ବେଦର ଗାର ମନେ କରି ତିଳେ ତିଳେ କେବଳ ଗଙ୍ଗାର ଥଣ୍ଡାଜଳ ପରି ମଥା ଉପରେ ବୁନ୍ଦା ବୁନ୍ଦା କରି ଢାଳି ଦେଇ ଗଲା । ତାର ଉଦ୍ୟମରେ ଘରର ମୂଳଦୁଆ ପକାଇ ଥିଲେ ବିଶିକେଶନ ବାବୁ । ସେତେବେଳେ ବଡପୁଅ ଜନ୍ମ ହୋଇଥିଲା, ତାପରେ

ଧୀରେ ଧୀରେ ପରିବାର ବୃଦ୍ଧି ପାଇଲା, ସେମାନଙ୍କର ସେବା ଯତ୍ନରେ ସେ ନିଜକୁ ନିୟୋଜିତ କଲା, ଘର ମଧ୍ୟ ଭଗବାନଙ୍କ ଦୟାରୁ ସମ୍ପୂର୍ଣ୍ଣ ହେଲା, ସେତେବେଳକୁ ମଝିଆଁ ବ୍ୟତୀତ ସାନ ମଧ୍ୟ ଜନ୍ମ ହୋଇ ସାରିଥିଲା ।

ତାଙ୍କର ଅଝଟିଆ, ଅମାନିଆ, ମନକୁ ରାଧାମଣି ଅନେକ ଯତ୍ନ ଓ ସ୍ନେହରେ ବାନ୍ଧି ପକାଇଥିଲେ ଏବଂ ବିଶିକେଶନ ବାବୁ ସମ୍ପୂର୍ଣ୍ଣ ଭାବେ ପରିବର୍ତ୍ତନ ହୋଇ ଏକ ନୂତନ ରୂପରେ ନିଜକୁ ସଜାଇ ସାରିଥିଲେ । ଅବଶେଷରେ ଶାନ୍ତିରେ ନିଃଶ୍ୱାସ ମାରିବାର ଲକ୍ଷ୍ୟ ନେଇ ଅବସର ଗ୍ରହଣ କରି ଦୁଇ ପିଲାଙ୍କ ହାତକୁ ବ୍ୟବସାୟ ହସ୍ତାନ୍ତର କରିଥିଲେ ।

ଅକସ୍ମାତ ଶେଷ ନିଃଶ୍ୱାସ ତ୍ୟାଗ କଲେ ରାଧାମଣି, ଏବଂ ତାଙ୍କ ଆଟାକ୍ ପରେ ସେ ଯେମିତି ଏ ପୃଥିବୀର ଏକ ଅଦରକାରୀ ବସ୍ତୁ ହୋଇ ପଡିଲେ । ଖୁବ୍ ଦୁଃଖରେ ସେ ମନେ ମନେ ବିଳାପ କଲେ, ରାଧା, କାହିଁକି ମୋତେ ତୁମେ ଏକାକୀ ଛାଡି ଚାଲିଗଲ ?

ହଠାତ୍ ପୁନର୍ବାର ମନେ ହେଲା ରାଧାମଣି ସେଇ ନଡିଆ ଗଛ ପାଖରେ ଠିଆ ହୋଇଛନ୍ତି ଏକ ରଙ୍ଗିନ ଶାଢୀ ପିନ୍ଧି ଏବଂ ମୁରୁକି ହସି ତାଙ୍କୁ ହାତଠାରି ଡାକୁଛନ୍ତି । ଆଜି କାହିଁକି କେଜାଣି ରାଧାମଣି ଖୁବ୍ ସୁନ୍ଦର ଦେଖାଗଲେ । ଖୁବ୍ ଚଞ୍ଚଳ ହୋଇ ଉଠିଲେ ସେ । ତାଙ୍କର ଦେହଟା ହାଲ୍‌କା ହୋଇଗଲା । ଦୁନିଆର ସମସ୍ତ ଚିନ୍ତା, ଦୁଃଖ, ଅବଶୋଷ, କ୍ଷୋଭ, ବେଦନା ଓ କାମନା ଭୁଲି ସେ ଉଠି ଠିଆ ହେଲେ, ଅବଶ ଶରୀରରେ ଯେମିତି ଯୌବନର କ୍ଷୁଧା, ଶତସିଂହର ବଳ, ଠିଆ ହୋଇ ରାଧାମଣିଙ୍କର ପ୍ରସାରିତ ପାପୁଲିରେ ପାପୁଲି ରଖିଲେ, ରାଧା ତାଙ୍କ ହାତକୁ ଚାପି ଧରିଲେ । ଏବଂ ଦୁହେଁ ଆନନ୍ଦରେ ସୁଗନ୍ଧିତ ସୁବାସିତ ମଳୟ ପବନରେ ଭାସି ଭାସି ଉପରକୁ ଉଠି ଚାଲିଥିଲେ । ରାଧା ତାଙ୍କ ହାତକୁ ଚାପିଧରି କହୁଥିଲେ – ସେମାନେ ତାଙ୍କ ନୂଆ ଘରକୁ ଯାଆନ୍ତୁ । ଚାଲ ଆମେ ଆମ ନୂଆ ଘରକୁ ଯିବା ।

ପଛରେ ବିଶିକେଶନ ବାବୁଙ୍କର ପୁରୁଣା ଶରୀର, ପୁରୁଣା ଘର ପରିତ୍ୟକ୍ତ ହୋଇ ପଡି ରହିଥିଲା ସେଇ ନଡିଆ ଗଛ ପାଖରେ । ନଡିଆ ଗଛଟିକୁ ରାଧାମଣି ଓ ବିଶିକେଶନବାବୁ ଅତି ଯତ୍ନରେ ବିବାହ ପରେ ଲଗାଇଥିଲେ । ଟ୍ରକରେ ସମସ୍ତ ଜିନିଷ ଲଦାହୋଇ ଚାଲିଗଲାପରେ ଦୁଇପୁଅ, ଦୁଇ ବୋହୂ ଓ ପିଲାମାନେ ଘର ବାହାରକୁ ଆସି କବାଟରେ ଚାବି ପକାଇଲେ, ଚାବି ଘରର ନୂଆ ମାଲିକ ନବୀନ ବାବୁଙ୍କୁ ହସ୍ତାନ୍ତର କରି ଗାଡି ନିକଟକୁ ଆସିଲେ, ଡ୍ରାଇଭର ପଛ ଦରଜା ଖୋଲି ଭିତରେ ବସିବା ପୂର୍ବରୁ ମଝିଆଁ ପୁଅ, ଯାହାକୁ ରାଧାମଣି ଅତ୍ୟନ୍ତ ଭଲ ପାଉଥିଲେ, ପୁରୁଣା ଘର ପ୍ରତି ଶେଷ ଦୃଷ୍ଟିପାତ କରି ମାନସ ପଟଳରେ ନୂଆଘରର ସ୍ୱପ୍ନ ନେଇ ଦେଖିଲା ବିଶିକେଶନ ବାବୁ ସେଇ ପୁରାତନ ନଡିଆ ଗଛ ତଳେ ଠିଆ ହୋଇ ହସୁଛନ୍ତି । ମାଆ ରାଧାମଣି ମାଟି ଘର ତିଆରି କରୁଛନ୍ତି ଓଦାମାଟିରେ, ଦୁହେଁ ହସୁଛନ୍ତି, ଅତ୍ୟନ୍ତ ମମତାରେ ହାତ ହଲାଇ ବିଦାୟ ସମ୍ବର୍ଦ୍ଧନା ଜଣାଇ ଯେମିତି କହୁଛନ୍ତି, ‘‘ନୂଆଘର ମଧ୍ୟ ଦିନେ ପୁରୁଣା ହେବରେ ପୁଅ !’’

*❑ ପ୍ରଜାତନ୍ତ୍ର ସପ୍ତାହିକା : ୨୩ ମାର୍ଚ୍ଚ, ୧୯୯୭*



# ପଳାୟନ

ବସ୍‌ଟା ଜୟପୁରରେ ପହଞ୍ଚିଲା ବେଳକୁ ସକାଳ ହୋଇଯାଇଥିଲା । ସନାତନ ବସ୍‌ରୁ ଓହ୍ଲାଇଲେ, ବସଷ୍ଟାଣ୍ଡରେ ସୁନାବେଡା ଯିବାପାଇଁ ବସ୍‌ର ସମୟ ବୁଝିଲେ, ଦୁଇ ଘଣ୍ଟା ପରେ ବସ୍ ଛାଡିବ, ନିକଟସ୍ଥ ପାଣି କଳରେ ବ୍ୟାଗରୁ ଦାନ୍ତ କାଠିଟିଏ ବାହାର କରି ଦାନ୍ତ ଘଷିଲେ, ସୁଲଭ ଶୌଚାଳୟରେ ନିତ୍ୟକର୍ମ ଶେଷ କରି ପାଖ ଚା' ଦୋକାନରେ ଚା ପାଇଁ ବରାଦ କରି ନିକଟସ୍ଥ ବେଞ୍ଚରେ ଥକା ମାରି ବସି ପଡିଲେ ।

ସନାତନଙ୍କର ସୁନାବେଡା ଆସିବା ପାଇଁ ଜମାରୁ ଇଚ୍ଛା ନଥିଲା, ହେଲେ ପ୍ରତିମାର ଜିଦ୍ ଓ ଆଶିଷର ଅଭିମାନ ତାଙ୍କୁ ବାଧ୍ୟ କରି ଥିଲା । ସମ୍ବଲପୁରରୁ ବସ୍‌ରେ ଚଢିଲା ସମୟରେ ମନେ ମନେ ପ୍ରମୋଦ ମହାପାତ୍ରଙ୍କୁ କିପରି ଭାବେ ଦୀର୍ଘଦିନର ବ୍ୟବଧାନ ପରେ ନିଜର ସ୍ୱାର୍ଥ ପାଇଁ ଅପ୍ରୋଚ କରିବେ, ତାହା ପରୀକ୍ଷା ପାଠ ପରି ମୁଖସ୍ଥ କରି ସାରିଥିଲେ, ହେଲେ ଜୟପୁରରେ ପହଞ୍ଚିଲା ପରେ ଯେମିତି ପରୀକ୍ଷା ହଲ୍‌ରେ ପ୍ରବେଶ କରିଥିବା ପରିକ୍ଷାର୍ଥୀ ପରି ସବୁ ପାଠ ଭୁଲି ଯାଇଛନ୍ତି, ବଡ କ୍ଳାନ୍ତ ହୋଇ ପଡିଛନ୍ତି । ବୟସ ତାଙ୍କ ଦେହର ବଳକୁ ଅନେକ ଦିନରୁ ସରକାରୀ ଚାକିରିରୁ ଅବସର ନେଲାପରେ ନଷ୍ଟ କରି ଦେଇଛି ଓ ପାରିବାରିକ ପରିସ୍ଥିତି ତାଙ୍କ ମନର ବଳକୁ ଭାଂଗି ଦେଇଛି ।

ଚା' ଗିଲାସକୁ ଶେଷ କରି ଟଙ୍କାଟି ଚା' ଦୋକାନିକୁ ଦେଇ ସେ ଦୀର୍ଘଶ୍ୱାସ ତ୍ୟାଗ କଲେ । ଜୀବନଟା ସତେ ବଡ ଅଦ୍ଭୁତ, ଯୌବନରୁ ବୃଦ୍ଧାବସ୍ଥା ଯାଏଁ ସେ ନିଜର ଆଦର୍ଶ ପାଇଁ ସର୍ବଦା ଉଦାହରଣୀୟ । କେବେ ଲାଞ୍ଚ ନେଇ ନାହାଁନ୍ତି, ଯେତେ ଚାପ ପଡିଲେ ମଧ୍ୟ ସେ କେବେ କୌଣସି ପରିସ୍ଥିତିରେ କାହା ସହିତ ସାଲିସ୍ କରି ନାହାଁନ୍ତି । ଛାତ୍ରାବସ୍ଥାରେ ଭଲ ଛାତ୍ର ହୋଇ ମଧ୍ୟ, ଭଲ ଶ୍ରେଣୀ ଓ ଭଲ ନମ୍ବରରେ ବିଶ୍ୱବିଦ୍ୟାଳୟର ଡିଗ୍ରି ହାସଲ କରି ମଧ୍ୟ, ଭଲ ଚାକିରି ପାଇପାରିଲେ ନାହିଁ, ବଡ ଅଫିସର ହୋଇ ପାରିଲେ ନାହିଁ । ସବୁ ସ୍ୱପ୍ନ ଭାଂଗିଗଲା, ଶେଷରେ ହେଲେ ସାମାନ୍ୟ ଏକ କିରାଣୀ – ଜୁନିୟର ଆସିଷ୍ଟାଣ୍ଟ । ଅବଶେଷରେ ମୁଖ୍ୟ କିରାଣୀ ହୋଇ ଅବସର

ଗ୍ରହଣ କଲେ, ଜୀବନ ସାରା ଅଫିସ ଓ ପରିବାର ମଧ୍ୟରେ ସୀମାବଦ୍ଧ ରହି ବିପ୍ଳବୀ-ଆଦର୍ଶବାନ କୃତୀଛାତ୍ର ସନାତନ ସାମଲ ନିଜ ହୃଦୟର କୋମଳତା ଚାରିପଟେ ଏକ ଲୁହାର କଠିନ ଆବରଣ ଚଢାଇ ଦେଲେ । ଭୁଲିଗଲେ ଅଫିସ ଓ ପରିବାର ବ୍ୟତୀତ ଅନ୍ୟ ସବୁ କିଛି... ବଉଳର ବାସ୍ନା, ବସନ୍ତର ମନ ମୁଗ୍ଧକର ପବନ... ଫୁଲର ସୁଗନ୍ଧ... ମଳୟର ମହକ... ସମୟର ପରିବର୍ତ୍ତିତ ରଂଗ... ଆକାଶର ତାରା... ଶିଶିରର କୋମଳତା ଓ ଜହ୍ନର ଆର୍ଦ୍ରତା.. ଧୀରେ ଧୀରେ ପରିବାର ବୃଦ୍ଧି ଓ ସୀମିତ ଆୟ ତାଙ୍କ ଦେହର ବଳ ଓ ମନକୁ ଶେଷ କରିଦେଲା ।

ମାର୍ଚ୍ଚ ମାସର ନରମ ସକାଳ ଧୀରେ ଧୀରେ ପ୍ରଖର ହେବାକୁ ଲାଗିଲା, ସେ ହାତ ଘଣ୍ଟାକୁ ଲକ୍ଷ୍ୟ କଲେ, ସାତଟା ତିରିଶ୍ । ବସ୍ ଆସିବାକୁ ଆହୁରି ତିରିଶ ମିନିଟ୍ । ପୁନର୍ବାର ସେ ଆଉ କପେ ଚା' ପାଇଁ ଦୋକାନିକୁ ବରାଦ ଦେଲେ ।

ଆଜିର ପ୍ରମୋଦ ମହାପାତ୍ର ଏବଂ ତାଙ୍କର ବାଲ୍ୟବନ୍ଧୁ ଓ ସହପାଠୀ ଦିନେ ଖୁବ୍ ବୋକା ଥିଲା – ଏକଥା ଆଜି ହୁଏତ ତା'ର ବର୍ତ୍ତମାନର ସ୍ଥିତିକୁ ଦେଖି କେହି ବିଶ୍ୱାସ କରି ନ ପାରନ୍ତି, ହେଲେ ଏକଥା ସତ୍ୟ ଯେ, ଏକଦା ପ୍ରମୋଦ ତାଙ୍କର ଘରେ ତାଙ୍କରି ଆଶ୍ରିତ ହୋଇ କଲେଜ ପାଠ ଶେଷ କରିଥିଲା । ସେ କିନ୍ତୁ ନିହାତି ଭାଗ୍ୟବାନ । ସେଇଥି ପାଇଁ ହୁଏତ ପ୍ରତିମା ତାଙ୍କ ଧର୍ମପତ୍ନୀ ଓ ବଡ ପୁଅ ଆଶିଷ, ଯିଏ କି କୋରାପୁଟ ଜିଲ୍ଲାରେ ଏକ ''ଜୁନିୟର ଆସିଷ୍ଟାଣ୍ଟ'' ଚାକିରି ପାଇଁ ଦରଖାସ୍ତ କରିଥିଲା, ପ୍ରମୋଦର ନୂତନ ପୋଷ୍ଟିଂ କଥା ଖବର କାଗଜରୁ ପଢି, ଆଶିଷର ସେଇ ''ଜୁନିୟର ଆସିଷ୍ଟାଣ୍ଟ'' ପରି ଛୋଟ ଚାକିରିଟି ପ୍ରମୋଦର ସାମାନ୍ୟ ଏକ ଦସ୍ତଖତରେ ହୋଇ ଯିବାର ନୀରିହ ବିଶ୍ୱାସରେ ତାଙ୍କୁ ବାଧ କରିଥିଲେ ପ୍ରମୋଦ ନିକଟକୁ ଯାଇ ଅନୁରୋଧ କରି ଆଶିଷର ଭବିଷ୍ୟତକୁ ନିରାପଦ କରିବା ପାଇଁ । ଦୁଇ ଝିଅରେ ଗୋଟିଏ ପୁଅ ଆଶିଷ । ନିଜ ଇଛା ବିରୁଦ୍ଧରେ ରାଜି ହୋଇଥିଲେ । ଭାବନା ଥିଲା- ହୁଏତ ଆଶିଷ ଚାକିରି କଲା ପରେ ହାଇସ୍କୁଲରେ ପଢୁଥିବା ସାନଝିଅ ବିନିର ବାହାଘର ବୋଝକୁ ତାଙ୍କ କାନ୍ଧରୁ ନିଜ କାନ୍ଧକୁ ଟେକିନେବ ।

ବସ୍ ଆସିଗଲା ବାବୁ – ଚା' ଦୋକାନି ତାଙ୍କୁ ସତର୍କ କରାଇ ଦେଲା । ସେ ଚା' ଗିଲାସଟା ଓ ଚା'ର ଦାମ୍‌ଟା ବଢେଇ ଦେଇ ତରତର ହୋଇ ବସ୍ ମଧ୍ୟକୁ ଉଠିଯାଇ ଏକ ଝରକା ପାଖ ସିଟ୍‌ରେ ବସି ଆଖି ବୁଜି ଦେଲେ ।

କଅଣ କହିବେ ସେ ପ୍ରମୋଦକୁ ? ଅନେକ ଦିନ ହେଲା ପ୍ରମୋଦ ସହିତ ତାଙ୍କର ଦେଖା ସାକ୍ଷାତ ନାହିଁ । ପ୍ରମୋଦ ବର୍ତ୍ତମାନ ଏକ ଉଚ୍ଚ ପଦସ୍ଥ ଅଫିସର, ମହାପ୍ରତାପୀ-ଏକ ଜିଲ୍ଲାର ମୁଖ୍ୟ ଏବଂ ସେ ନିଜେ ବର୍ତ୍ତମାନ ପରାଜିତ, ବିବଶ ଓ ଅସହାୟ ଏକ ଭଗ୍ନ

ମଣିଷ । ଦୁଇଜଣଙ୍କ ମଧ୍ୟରେ ତୁଳନା ନାହିଁ । ସେ ଦୀର୍ଘ ନିଶ୍ୱାସ ତ୍ୟାଗ କଲେ, କିଛି ଦିନ ତଳେ ସେ ପ୍ରମୋଦର ଫଟୋ ଖବର କାଗଜରେ ଦେଖିଥିଲେ, କି ଔଜ୍ଜ୍ୱଲ୍ୟ ! ତା ମୁହଁରେ ଆଭିଜାତ୍ୟର ଛାପ ଏବଂ ସେ ଏକ ବୃଦ୍ଧ, ଧୋତି ଓ ମଇଳା ସାର୍ଟ ପରିହିତ ଏକ ଅବସରପ୍ରାପ୍ତ ସାଧାରଣ, ଭିଡ ଭିତରେ ହଜି ଗଲା ଭଳି ଏକ କ୍ଷୁଦ୍ର ମଣିଷ । ଏତେ ଦିନ ପରେ ପ୍ରମୋଦ ତାଙ୍କୁ ଚିହ୍ନି ପାରିବ ତ ? ତାଙ୍କୁ ବନ୍ଧୁର ଉଚିତ ସମ୍ମାନ ଦେବ ତ ? କୃଷ୍ଣ ସୁଦାମାର ସେ ପୁରାଣ କଥା, ଏ ଯୁଗରେ କଅଣ ସତ ହେବ ?

ସେ ଚମକି ଉଠିଲେ, କଣ୍ଡକ୍ଟର ଭଡା ମାଗୁଥିଲା । ସେ ପକେଟରୁ ଟଙ୍କା ବାହାର କରି କଣ୍ଡକ୍ଟରକୁ ଦେଲେ, ଏବଂ ଚଳମାନ ବସ୍‌ରୁ ତାଙ୍କ ଚାରିପଟେ ଦୌଡି ଦୌଡି ପଛକୁ ଚାଲିଯାଉଥିବା ପ୍ରକୃତିର ଅନୁପମ ଦୃଶ୍ୟକୁ ଦେଖିବାକୁ ଚେଷ୍ଟା କଲେ ।

କିଛି ଭଲ ଲାଗିଲା ନାହିଁ । ଏକ 'କମ୍ପ୍ଲେକ୍ସ' ତାଙ୍କ ମଧ୍ୟରେ ହଠାତ୍ ମୁଣ୍ଡ ଟେକିଲା, ତାଙ୍କର ମନେ ପଡିଲା ଅନେକ ଦିନ ପ୍ରାୟ ଆଠବର୍ଷ ତଳେ ହଠାତ୍ ଦିନେ ପ୍ରମୋଦର ଏକ ହସ୍ତ ଲେଖା ପତ୍ର ନେଇ ତାର ଜଣେ କେହି ନିକଟ ସଂପର୍କୀୟ ତାଙ୍କ ନିକଟକୁ ଆସିଥଲା । ଏକ ନିହାତି ବ୍ୟକ୍ତିଗତ କାମ ନେଇ ଯାହା ସେ ଚାହିଁଥିଲେ କରିଦେଇ ପାରିଥାନ୍ତେ, ତାଙ୍କର 'ନୋଟସିଟ୍' ଉପରେ ତାଙ୍କ ଅଫିସର ନିଶ୍ଚୟ 'ଆପ୍ରୁଭାଲ' ଦସ୍ତଖତ କରିଥାନ୍ତେ ଏବଂ ପ୍ରମୋଦର ସଂପର୍କୀୟଙ୍କର ଅନେକ ଦିନରୁ ଅଟକି ରହିଥିବା ମୋଟା ଅଙ୍କର ଏଇ ପୁରୁଣା 'ରିଲିଜ୍' ହୋଇପାରିଥାନ୍ତା । ପ୍ରମୋଦ ଲେଖିଥିଲା- ଏ କାମଟି କରିବା ପାଇଁ ଅନୁରୋଧ କରିଥିଲା ଏବଂ ତାଙ୍କୁ କିଛି ଉପହାର ମିଳିବାର ପ୍ରତିଶ୍ରୁତି ମଧ୍ୟ ଦେଇଥିଲା । ହେଲେ ସେ ନିଜ ଆଦର୍ଶ ପାଇଁ ପ୍ରମୋଦକୁ ସ୍ପଷ୍ଟ ଭାବେ ମନାକରି ପ୍ରତ୍ୟୁତ୍ତର ଦେଇଥିଲେ । ତାପରେ ପ୍ରମୋଦର ସେ କାମଟି ଅନ୍ୟ କାହା ଦ୍ୱାରା ହେଲା ନାହିଁ । ତାହା ଜାଣିବା ପୂର୍ବରୁ ଭୁବନେଶ୍ୱରରୁ ତାଙ୍କର ବଦଳି ସମ୍ବଲପୁର ହୋଇଗଲା, ଅବଶ୍ୟ ପ୍ରମୋଶନ୍‌ରେ ଏବଂ ଅବଶେଷରେ ''ବଡବାବୁ''ର ପଦବୀରେ ସେ ଅବସର ଗ୍ରହଣ କଲେ । ସେଇଦିନଠାରୁ ପ୍ରମୋଦ ସହିତ ତାଙ୍କର ଚିଠିପତ୍ରର ଆଦାନ ପ୍ରଦାନ ନାହିଁ ବା ଦେଖା ସାକ୍ଷାତ ମଧ୍ୟ ନାହିଁ ।

ସେ ଆଖି ଖୋଲିଲେ । ବସ୍ ଘାଟୀ ଚଢୁଛି । ଅଙ୍କାବଙ୍କା ବୁଲାଣିରେ ବସ୍ ଖାଲି ଘୁରୁଛି, ତଳେ ବିରାଟ ଖାଲ, ଚାହିଁଲେ ମଧ୍ୟ ଶେଷ ପର୍ଯ୍ୟନ୍ତ ଦେଖାଯାଉ ନାହିଁ । ତାଙ୍କର ମନେ ହେଲା ସେ ଯେମିତି ସେଇ ଘାଇ ମଧ୍ୟରେ ଖସି ପଡିଛନ୍ତି ଏବଂ ଆଶ୍ରୟ ପାଇଁ ହାତ ବୁଲାଉଛନ୍ତି । ସେ ଭୟରେ ଆଖି ବୁଜି ଦେଲେ ।

ସେ ଯେମିତି ବ୍ୟବହାର ପ୍ରମୋଦ ପ୍ରତି କରିଥିଲେ ଆଜି ଯଦି ଠିକ୍ ସେଇପରି ବ୍ୟବହାର ସେ କରେ ? ସେ ଆଉ ଭାବିପାରିଲେ ନାହିଁ । ତାଙ୍କର ସମଗ୍ର ଦେହଟା

ଅବଶ ହୋଇ ଉଠିଲା, ବହୁ କଷ୍ଟରେ ସେ ମୁହଁ ବୁଲାଇ ବସ୍ ଭିତରକୁ ଲକ୍ଷ୍ୟ କଲେ । ବସ୍‌ରେ ପ୍ରବଳ ଭିଡ, ଭୀଷଣ ପାଟି, ତାଙ୍କୁ କିନ୍ତୁ କିଛି ଶୁଭୁନଥିଲା, ସେ କଳ୍ପନାରେ ଦେଖୁଥିଲେ- ପ୍ରମୋଦ ''ସ୍ଲିପିଙ୍ଗ ଗାଉନ'' ପିନ୍ଧି ଦାନ୍ତରେ ଚୁରୁଟ ଚାପି ତାଙ୍କୁ ଲକ୍ଷ୍ୟ କରି ବିଦ୍ରୂପରେ ହସୁଛି, ପଚାରୁଛି- 'ତମେ କିଏ ?' ସେ ନିଜକୁ ନିଜେ ଧିକ୍କାରିବାକୁ ଲାଗିଲେ । କାହିଁକି ମୁଁ ପ୍ରତିମା ଓ ଆଶିଷ କଥାରେ ରାଜି ହେଲି ?

ସେ ବୋଧହୁଏ ଢୁଳାଇ ପଡ଼ିଥିଲେ । କୋରାପୁଟ ବସ୍‌ଷ୍ଟାଣ୍ଡରେ ବସ୍ ଅଟକିଲା । କଣ୍ଡକ୍ଟର ଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ କହିଲା ''ବସ୍ ଦଶମିନିଟ୍ ରହିବ, ଚା' ଜଳଖିଆ ଖାଇ ନିଅନ୍ତୁ ।''

ବସ୍ ମଧ୍ୟରୁ ଯାତ୍ରୀମାନେ ତଳକୁ ଓହ୍ଲାଇବାକୁ ଲାଗିଲେ । ସେ କିଛିକ୍ଷଣ ପୂର୍ବରୁ ଦେଖିଥିବା ସ୍ୱପ୍ନକୁ ଜୋର କରି ମନ ମଧ୍ୟରୁ ପୋଛି ଦେଇ ଧୀର ଅଥଚ ଦୃଢ ପାଦରେ ବସ୍‌ରୁ ଓହ୍ଲାଇ ତଳେ ପାଦ ଦେଲେ । ସେ ସ୍ୱପ୍ନକଥା ଥରେ ଚିନ୍ତା କଲେ, ଏକ ସୁଉଚ୍ଚ ପାହାଡରେ ସେ ଦଣ୍ଡାୟମାନ, କେତେ ଗୁଡାଏ ହାତ ହଠାତ୍ ତାଙ୍କୁ ଧକ୍କା ଦେବାକୁ ଲାଗିଲେ, ତାଙ୍କ ପାଦ ଖସିଗଲା, ସେ ପାହାଡର ତଳକୁ ଖସିପଡିଲେ । ଖସୁଥିବା ବେଳେ ସେ ଦେଖିଲେ ପ୍ରତିମା, ଆଶିଷ, ବିନି ଓ ପ୍ରମୋଦ ପାହାଡ ଉପରେ ଠିଆହୋଇ ହସୁଛନ୍ତି ଏବଂ ଏକ ସ୍ୱରରେ କହୁଛନ୍ତି ''ଦେଖିଲ, ଆମେ ସମସ୍ତେ ମିଶି ତମକୁ ତଳକୁ ଖସାଇ ଦେଲୁ !''

ଆଖୁ ରସ ବିକ୍ରି ହେଉଥିଲା, ସେଠାକୁ ଯାଇ ଗିଲାସେ ଆଖୁ ରସ ପିଇଲେ । ତାଙ୍କୁ ଖୁବ୍ ହାଲୁକା ଲାଗିଲା, ବାତାବରଣରେ ହଠାତ୍ ଏକ ମନମୋହନ ବାସ୍ନା । ସେ ଖୁବ୍ ଫୁର୍ତ୍ତି ଅନୁଭବ କଲେ, ଭାବିଲେ ନାଁ ମୁଁ ତଳକୁ ଖସିଯାଇ ପାରିବି ନାହିଁ । ଆଶିଷକୁ ନିଜ ପାଇଁ ସଂଘର୍ଷ କରିବାକୁ ପଡିବ । ଯେମିତି ମୁଁ କରିଛି । ବଞ୍ଚିବା ପାଇଁ ସଂଘର୍ଷ, କାହାରି ଦୟାର ପାତ୍ର ହୋଇ ନୁହେଁ । ପ୍ରମୋଦ ନିକଟକୁ ଆସିବା ପାଇଁ... ତାକୁ ଭିକ୍ଷା ମାଗିବା ପାଇଁ ମୁଁ ସନାତନ ସାମଲ ରାଜି ହେଲି ବା କିପରି ? ହଠାତ୍ ମୁଁ ଏତେ ଦୁର୍ବଳ ହୋଇ ପଡ଼ିଲି କିପରି ?

ଅନେକ ଦିନରୁ ସିଗାରେଟ୍ ପିଇବା ଛାଡିଦେଇ ଥିଲେ ସନାତନ । ହେଲେ ଆଜି କାହିଁକି ଭାରି ଇଚ୍ଛା ହେଲା ସିଗାରେଟ୍ ଟାଣିବା ପାଇଁ । ପାନ ଦୋକାନରୁ ସିଗାରେଟ୍ ଟିଏ କିଣି ସେଥିରେ ଅଗ୍ନି ସଂଯୋଗ କରି ଖୁବ୍ ଜୋରରେ ଟାଣଟିଏ ମାରିଲେ ଓ ଧୂମ୍ରକୁ ଛାତି ଭିତରକୁ ଟାଣିନେଇ ନାକ ଓ ପାଟିବାଟେ ଛାଡିଲା ବେଳେ ତାଙ୍କର ମନେ ହେଲା, ସନାତନ ସାମଲର ଯୌବନ ଯେମିତି ପୁନର୍ବାର ଫେରି ଆସିଛି, ତାଙ୍କର ସମସ୍ତ ଦ୍ୱନ୍ଦ୍ୱର ପରିସମାପ୍ତି ଘଟିଛି ସେ ମନେମନେ ହସିଲେ । ଅନେକ

ସମୟରେ ମିଛଟା ସତ ଅପେକ୍ଷା କମ୍ କଷ୍ଟଦାୟକ ହୋଇଥାଏ । ପ୍ରତିମା ଓ ଆଶିଷଙ୍କୁ ଅନେକ କଥା କୁହାଯାଇପାରେ, ଯେମିତି କି ପ୍ରମୋଦ 'ଟୁର୍'ରେ ବା ଛୁଟିରେ ଯାଇଛି, ଅଥବା "ସିଲେକ୍‌ସନ୍" ହୋଇ ଯାଇଛି ବା ପ୍ରମୋଦ ମନା କଲା... ଏମିତି ଅନେକ କିଛି । ଏଇଟା ସେ ଦୁଇଜଣଙ୍କୁ ହୁଏତ ସାମୟିକ ଦୁଃଖ ଦେବ । ଆଶିଷ ପୁନର୍ବାର ଚେଷ୍ଟା କରିବ । ସେ ଭଲ ଛାତ୍ର, କୃତକାର୍ଯ୍ୟ ନିଶ୍ଚୟ ହେବ ନିଜ ଚେଷ୍ଟାରେ, ନିଜ ଦମ୍ଭରେ । କିନ୍ତୁ ନିଜ ଦୃଷ୍ଟିରେ ନିଜ ବିବେକ ସମ୍ମୁଖରେ ସେ ମଥାନତ କରି ବଞ୍ଚିପାରିବେ ନାହିଁ କେବେ ।

ସୁନାବେଡ଼ା ଅଭିମୁଖେ ଯାଉଥିବା ବସ୍ ହର୍ଣ୍ଣ ଦେଉଥିଲା । ସନାତନ ସେ ଦିଗକୁ ଦୃଷ୍ଟିପାତ ନ କରି ସେଇ କ୍ଷଣି ପହଞ୍ଚିଥିବା ଓ ଜୟପୁର ଅଭିମୁଖେ ଯାଉଥିବା ବସ୍ ନିକଟକୁ ଦ୍ରୁତ ଗତିରେ ଆଗେଇ ଚାଲିଲେ । ସେତେବେଳକୁ ସୁନା ବେଡ଼ା ବସ୍‌ଟା ଷ୍ଟାଣ୍ଡ ଛାଡ଼ି ଦେଇଥିଲା ।

□ *ପ୍ରଜାତନ୍ତ୍ର ୧ ଜୁନ, ୧୯୯୭*



# ସ୍ୱାର୍ଥପର

କନକ ମଂଜରୀ ଶଯ୍ୟା ତ୍ୟାଗ କରିଲେ, ଆଜିକୁ ଠିକ ପନ୍ଦର ଦିନ ହେଲା ତାଙ୍କୁ ଦେବବ୍ରତ ଏକାକୀ ଛାଡି ଇହଲୋକ ତ୍ୟାଗ କଲେ, ଦୁଇପୁତ୍ର ଏକମାତ୍ର କନ୍ୟା ନିଜ ନିଜପରିବାର ସହ ପିତାଙ୍କ ମୃତ୍ୟୁ ସମ୍ବାଦ ପାଇ ଆସିଥିଲେ। ଆଜି ବୋଧହୁଏ ଫେରିବେ। ତେଣୁ ଯେତେ ଦୁଃଖ ହେଲେ ମଧ୍ୟ ସେମାନଙ୍କୁ ବିଦାୟ ଦେବାକୁ ତ ପଡିବ। ଦେବବ୍ରତ ହଠାତ୍ ତାଙ୍କୁ ଏମିତି ଏକଲା ବେସାହାରା କରି ଛାଡି ଯିବେ ବୋଲି ତାହା କେବେ ସ୍ୱପ୍ନରେ ଭାବି ନଥିଲେ କନକ। ନିହାତି ଜରୁରୀ ଏକ "ବିଜିନେସ୍" ଟୁରରେ ଯାଇଥିଲେ, ଫେରିଲା ବେଳେ ରାସ୍ତାରେ "ହାର୍ଟ ଆଟାକ୍" ସଂଗେ ସଂଗେ ସବୁଶେଷ, ସେକ୍ରେଟାରୀ ଓ ଡ୍ରାଇଭର ପାଣି ଟୋପାଏ ବି ତାଙ୍କ ପାଟିରେ ଦେଇ ପାରିନଥିଲେ, ଫୋନ ଆସିଥିଲା ସେ ଅସୁସ୍ଥ ହୋଇ ପଡିଛନ୍ତି, କନକ ଚିନ୍ତିତା ହୋଇ ପଡିଥିଲେ। ମନରେ ଅନେକ ଖରାପ, ଅଶୁଭ ଭାବନା ଉଙ୍କି ମାରିଥିଲା, ଏବଂ ସେ ମା' ସମଲେଶ୍ୱରୀଙ୍କୁ ମାନସିକ କରିଥିଲେ, ଦେବବ୍ରତଙ୍କର ମଙ୍ଗଳ ମନାସି ପୂଜା ଗୃହ ମଧ୍ୟରେ ପ୍ରବେଶ କରି ଇଷ୍ଟ ଦେବୀଙ୍କୁ ସ୍ମରଣ କରିଥିଲେ। ହେଲେ, କେହି ତାଙ୍କର ପ୍ରାର୍ଥନା ଶୁଣିନଥିଲେ, ଅବଶେଷରେ ଆସିଥିଲା, ତାଙ୍କ ମୃତ ଶରୀର। କନକ ସ୍ତମ୍ଭୀଭୂତ ହୋଇ ପଡିଥିଲେ। ଯେତେ ବେଳେ ଜ୍ଞାନ ପାଇଲେ, ସେତେବେଳକୁ ତାଙ୍କ ଜୀବନ ମରଣର ସାଥୀ ତାଙ୍କୁ ଜୀବନର ଚଲାପଥରେ ଏକାକୀ ଛାଡି ଚାଲିଯାଇଥିଲେ। ପୁଅ ବୋହୂ, ଝିଅ, ଜ୍ୱାଇଁ ଓ ନାତି, ନାତୁଣୀମାନେ ତାଙ୍କୁ ସାନ୍ତ୍ୱନା ଦେଉଥିଲେ, ସେ କିଛି ବୁଝି ପାରୁନଥିଲେ, କେବଳ ଦେବବ୍ରତଙ୍କର ସୌମ୍ୟ, ସୁନ୍ଦର ଗୋରା ତକ୍ ତକ ଚେହେରା ଶୂନ୍ୟରେ ଦେଖୁଥିଲେ। ତାଙ୍କ ରାଗମିଶା ଅଭିମାନ ଭରା କଥା ଶୁଣିପାରୁଥିଲେ। ସେ ସମସ୍ତ ଆଜି ଗତ। ଦେବବ୍ରତ ନାହାଁନ୍ତି, ଏହା ହିଁ ସତ୍ୟ। ସବୁ ସତ୍ୟକୁ ଗ୍ରହଣ କରି ଆଜି କନକ ମଂଜରୀ ପଥର... ପାଷାଣ। ସର୍ବଦା ତାଙ୍କର କାମନା ଥିଲା, ଭଗବାନଙ୍କ ନିକଟରେ ପ୍ରାର୍ଥନା ଥିଲା, ସ୍ୱାମୀଙ୍କ ଆଖି ଆଗରେ, ତାଙ୍କରି କୋଳରେ ସଧବା ବେଶରେ, ସ୍ୱାମୀଙ୍କ ପୂର୍ବରୁ ଚାଲିଯିବା ପାଇଁ। ହେଲେ

ଆଜି ସେ ବିଧବା, କାହା ପାଇଁ ବା କେଉଁ ଉଦ୍ଦେଶ୍ୟ ନେଇ ସେ ବଂଚିବେ । ପିଲାମାନେ ତାଙ୍କ ସଂସାର କରିଛନ୍ତି । ତାଙ୍କ ନିକଟରୁ କିଛି ଚାହିଁବାଟା ମୂର୍ଖାମୀ । ତେଣୁ ଏ ଲଂବା ଅସରନ୍ତି ଜୀବନଟା ସେ, ଅତିବାହିତ କରିବେ କିପରି ? ନିଃସଂଗ ହୋଇ ଏ ବିରାଟ ପ୍ରାସାଦ, ଯାହା ଦେବବ୍ରତ ବଡ ଆଗ୍ରହ ଓ ଇଚ୍ଛାରେ ଗଢି ତୋଳିଥିଲେ, ଏକାକୀ ତାହା ମଧ୍ୟରେ ବଞ୍ଚିବେ କିପରି ?

ଦେବବ୍ରତ ନିଜ ଜୀବନ କାଳ ମଧ୍ୟରେ ଅଜସ୍ର ଟଙ୍କା ରୋଜଗାର କରିଥିଲେ । ଅନେକ ସଂପତ୍ତି କରିଥିଲେ । ପିଲାମାନଙ୍କୁ ଅତି ସ୍ନେହ କରୁଥିଲେ, ଏବଂ ତାଙ୍କୁ ଉଚିତ ଶିକ୍ଷା ମଧ୍ୟ ଦେଇଥିଲେ, ବଡ ପୁଅ ''ଦେବପ୍ରିୟ''କୁ ଏକ ପ୍ଲାଷ୍ଟିକ କାରଖାନା କରାଇ ଦେଇଥିଲେ, ତା ତଳ ଝିଅ ''ଦେବପ୍ରିୟା'' ବିଲାତ ଫେରନ୍ତା ଡାକ୍ତରଙ୍କୁ ବାହାହୋଇ, ତାଙ୍କରି ଚେଷ୍ଟାରେ ଆଜି ବିରାଟ ଏକ ''ନର୍ସିଂ ହୋମ''ର ମାଲିକ । ସାନପୁଅ ଦେବଦତ୍ତଙ୍କୁ କଂପ୍ୟୁଟର ଇଂଜିନିୟରିଂ ବିଦେଶ ପଠାଇଥିଲେ, ବିଦେଶରୁ ଫେରିଲା ପରେ ଏଇ ଦୁଇବର୍ଷ ହେଲା ଦିଲ୍ଲୀରେ ତା' ପାଇଁ ଏକ କଂପ୍ୟୁଟର ସଂସ୍ଥା ଖୋଲାଇ ଦେଇଥିଲେ ସେ ସମସ୍ତେ ବର୍ତ୍ତମାନ ସ୍ଥିତିବାନ । ଦେବବ୍ରତ ତା ବ୍ୟତୀତ ପ୍ରତ୍ୟେକଙ୍କୁ ଏବେ ନିକଟରେ ପାଂଚଲକ୍ଷ ଟଙ୍କା ଉପହାର ଦେଇ ଥିଲେ । ତେଣୁ ବାପାଙ୍କ ପ୍ରତି ସେମାନଙ୍କର ଅଜସ୍ର ସ୍ନେହ, ଶ୍ରଦ୍ଧା ଓ ଭକ୍ତି, ''ଟେଲେକ୍ସ'' ଓ ଟେଲିଗ୍ରାମ ପାଇ ସମସ୍ତେ ଉପସ୍ଥିତ ହୋଇଥିଲେ, କନକ ମଂଜରୀ ଦୀର୍ଘ ପନ୍ଦର ଦିନ ହେଲା ସଂପୂର୍ଣ୍ଣ ଜ୍ଞାନ ଶୂନ୍ୟା ଥିଲେ । ଯିଏ ଯାହା କହିଲା କଲେ, ପିଲାମାନେ ମଧ୍ୟ ଏ ପନ୍ଦର ଦିନଧରି ଘର ବାହାର ବିଶେଷକରି ତାଙ୍କର ସମସ୍ତ ଦାୟିତ୍ୱ ବହନ କରିଛନ୍ତି । ନୀରବରେ, ନିଜମନର ବେଦନା ଓ ଦୁଃଖକୁ ଗୋପନ ରଖି ବୋହୂମାନେ ତାଙ୍କର ସମସ୍ତ ବ୍ୟଥାକୁ ନିଜର କରିନେଇ ତାଂକୁ ସାନ୍ତ୍ୱନା ଓ ଆଶ୍ୱାସନା ମଧ୍ୟରେ ଘୋଡାଇ ରଖିଛନ୍ତି । ଏହା ସତ୍ୟ ଯେ ଦେବବ୍ରତ ଆଉ ନାହାଁନ୍ତି । ହେଲେ, ବେଳେ ବେଳେ ଏକାନ୍ତରେ ତାଙ୍କର ମନେ ହେଉଛି, ଦେବବ୍ରତ ଯେମିତି ତାଙ୍କ ପାଖେ ପାଖେ ଅଛନ୍ତି ଏବଂ ସେଇ ଚିରନ୍ତନ ରାଗମିଶା ଅଭିମାନରେ ତାଙ୍କ ସହ କଥା ହେଉ ନାହାଁନ୍ତି । କନକ ତାଙ୍କ ମନାଇବା ପାଇଁ ଅଳି କରୁଛନ୍ତି । ଅନୁରୋଧ କରୁଛନ୍ତି ଓ ହାତଧରି ବୁଝାଉଛନ୍ତି । ବଡ ମନୁଆ ଥିଲେ ଦେବବ୍ରତ, ଟିକେ ଟିକେ କଥାରେ ରାଗୁଥିଲେ, ପୁନର୍ବାର କନକ ସାମାନ୍ୟ ଟିକେ ନଇଁ ପଡି ବୁଝାଇ ଦେଲେ ଚଟ କରି ମାନିଯାଉଥିଲେ, ତାଂକୁ ମନାଇବାର କୌଶଳ, କେବଳ କନକ ମଂଜରୀ ହିଁ ଜାଣିଥିଲେ, ଦେବବ୍ରତଙ୍କର ସୁସ୍ୱାଦୁ ଖାଦ୍ୟ ପ୍ରତି ଅହେତୁକ ଲାଳସା ଥିଲା । କନକ ତାଙ୍କ ରାଗ ଦେଖି ସମୟାନୁପଯୋଗୀ ବ୍ୟଞ୍ଜନ ବାଢି ଦେଉଥିଲେ ଓ ଦେବବ୍ରତ ଖାଇଲା ପରେ ସମସ୍ତ ରାଗ ଭୁଲି ଯାଇ ତାଙ୍କୁ ଗେଲ କରୁଥିଲେ ।

ସେ କାନ୍ଦି ଉଠିଲେ । ବଡ଼ ବୋହୂ ପ୍ରିୟମ୍ବଦା କକ୍ଷକୁ ପ୍ରବେଶ କରି ଶାଶୁଙ୍କୁ କାନ୍ଦୁଥିବାର ଦେଖି ତାଙ୍କୁ ସାନ୍ତ୍ୱନା ଦେଲେ । କନକ ଲୁହ ପୋଛିଲେ, ଘରର ସମସ୍ତ କଥା ପଚାରି ବୁଝିଲେ । ଠାକୁର ପନ୍ଦର ଦିନ ହେଲା ବିନା ପୂଜାରେ ଅଛନ୍ତି । ଦୀର୍ଘଶ୍ୱାସ ଛାଡି କହିଲେ "ବାନାମ୍ବର ବାବୁ ଆସିଲେ, ତାଙ୍କୁ ଅପେକ୍ଷା କରିବାକୁ କହିବୁ । ମୁଁ ପୂଜା ଶେଷ କରି ଆସୁଛି ।

ବାନାମ୍ବର ବାବୁ ଦେବବ୍ରତଙ୍କର ପରାମର୍ଶ ଦାତା, ବଂଧୁ ଓ ଓକିଲ । ନିଜର ସମସ୍ତ ସ୍ଥାବର ଓ ଅସ୍ଥାବର ସଂପତ୍ତିର ଦଲିଲ ବାନାମ୍ବର ବାବୁଙ୍କ ପାଖରେ । ଦେବବ୍ରତ ନିଜ ମୃତ୍ୟୁର ଏକମାସ ପୂର୍ବରୁ ନିଜ ଉଇଲ ହଠାତ୍ ଦିନେ ଖାମ୍ ଖିଆଲି ହୋଇ କରି ପକାଇଥିଲେ । ତାହା ମଧ ତାଙ୍କ ପାଖରେ । ଏକାଦଶାହ ଦିନ ଆଜି ତାରିଖରେ ଆସିବେ ବୋଲି କନକଙ୍କୁ କହି ଯାଇଥିଲେ । ଆଜି ସେ ନିଶ୍ଚୟ ଆସିବେ ।

କନକ ବାଥରୁମରେ ପ୍ରବେଶ କଲେ ସ୍ନାନ ପାଇଁ । କଳ ଖୋଲିବା ପୂର୍ବରୁ ସେ ଚଟାଣରେ ଥକା ମାରି ବସି ପଡିଲେ, ମନେ ପଡିଲା ପିଲାମାନଙ୍କ କଥା... ଦେବବ୍ରତର ଜୁଇ ଜଳିବାର ମାତ୍ର ତିନି ଘଣ୍ଟାପରେ ଦୁଇପୁଅ ଓ ଏକମାତ୍ର ଝିଅର କଥା । ସେମାନେ ବାପାଙ୍କର ସମ୍ପତ୍ତି ନେଇ କଥା ହେଉଥିଲେ, ମାଙ୍କୁ ଭାଗ ବାଣ୍ଟି ପାଖରେ ରଖିବାର ଯୋଜନା କରୁଥିଲେ । ବଡ ପୁଅର ଦାବୀ ଥିଲା ସମ୍ପତ୍ତିର ଏକ ତୃତୀୟାଂଶ ନେଇ ତା କାରଖାନାର ଆଧୁନିକକରଣ କରିବ, ଝିଅର ଡିମାଣ୍ଡ ସେ ତା, ଅଂଶ ନେଇ ଦିଲ୍ଲୀରେ ଏକ ବଂଗଲା କିଣିବ ଓ ସାନ ପୁଅ... ସେ ତା ଅଂଶକୁ ବ୍ୟବସାୟରେ ବିନିଯୋଗ କରିବ । ହେଲେ ବାପାଙ୍କ ସମ୍ପତ୍ତିକୁ ଦାବୀ କରୁ ଥିବା ପୁଅ ଝିଅମାନେ କେବେ ବି ଏଇ ବୁଢୀ ମା'ର ଦାବୀ ଓ ଉପସ୍ଥିତିକୁ ନେଇ ଟିକେ ଚିନ୍ତା କରୁଥିବା ବିଷୟରେ କନକ ମଂଜରୀ ଅନୁଭବ କରି ପାରି ନଥିଲେ । ତେଣୁ ସେ ହଠାତ୍ ହତପ୍ରଭ ହୋଇ ପଡିଥିଲେ । ଏମାନଙ୍କୁ ଜନ୍ମ ଦେଲି, ରକ୍ତକୁ ପାଣି କରି ସେମାନଙ୍କୁ ବଡ କଲି ଏବଂ ଜୀବନର ଏଇ ଶେଷ ମୋଡରେ ସେମାନେ ଏତେ ସ୍ୱାର୍ଥପର ହୋଇ ପଡିଲେ କିପରି ? ପୂର୍ବର ସେଇ ସ୍ନେହ ମମତା, ଭକ୍ତି, ଶ୍ରଦ୍ଧା କଅଣ ସବୁ ଖାଲି ନାଟକ ଥିଲା ? "ସ୍ୱାର୍ଥପର ନାଟକ" କନକ ମୁହଁ ଢାକି ନୀରବରେ କାନ୍ଦିଲେ । ଆଜି ଯଦି ଦେବବ୍ରତ ଥାଆନ୍ତେ... । ସେ ବିକଳରେ ଆର୍ତ୍ତନାଦ କଲେ, କାହିଁକି ମୋତେ ଛାଡିଗଲ ? ମୋତେ ମଧ ତୁମ ସଂଗେ ନେଲ ନାହିଁ କାହିଁକି ? ଦେଖୁଛ... ସେମାନେ କଅଣ କହୁଛନ୍ତି । ନିଜ ଗର୍ଭରୁ ଜନ୍ମିତ ପିଲାମାନେ ଏତେ ସ୍ୱାର୍ଥପର ହେଲେ କେମିତି ସେ ଚଟାଣରେ ଗଡି ପଡିଲେ ଓ ନୀରବରେ ବିଳାପ କରିବାକୁ ଲାଗିଲେ । ମନେ ପଡିଲା ଦେବବ୍ରତଙ୍କର ଅନେକ ଦିନର ପୁରୁଣା କଥା । ଜୀବନର ଶେଷ ପର୍ଯ୍ୟାୟ ଆମେ ଦୁଇଜଣ ଏ ସହର ଛାଡି ଗାଁରେ ଅତି ନିରାଡ଼ମ୍ବର ଭାବେ ଅତିବାହିତ କରିବା, ଯୌବନକୁ ପୁନର୍ବାର

ବୃଦ୍ଧାବସ୍ଥାରେ ଫେରାଇ ଆଣିବା, ସଂସାର ଛାଡିଲ୍ଲେ ଦୁଇଜଣ ଏକ ସଂଗେ ଛାଡିବା । ଯେମିତିକି କେହି କାହାର ଅଭାବ ଅନୁଭବ କରିପାରିବା ନାହିଁ । ହେଲେ ସେ ଶେଷ ପର୍ଯ୍ୟାୟ ଜୀବନର କଳ୍ପନା କେବଳ କଳ୍ପନାରେ ହିଁ ରହିଗଲା । ତାହା ବାସ୍ତବିକତାରେ ପରିଣତ ହେଲା ନାହିଁ । ଏକାକୀ ଛାଡିଦେଇ ଗଲେ ଦେବବ୍ରତ । ସୁନ୍ଦର ସୁଖ ସଂସାରର କଳ୍ପନା ମଧ୍ୟ କେବଳ କଳ୍ପନାରେ ହିଁ ରହିଗଲା । ଏ ଦୁଃଖମୟ ଜୀବନକୁ ଅବସ ପାଦରେ ଟାଣି ଟାଣି ଚାଲିବା ପାଇଁ । ଅବଶିଷ୍ଟ ଜୀବନ ସାରା କାନ୍ଦିବା ପାଇଁ, କେବଳ, ସେ ଏକଲା ହିଁ ରହିଗଲେ, ପୁନର୍ବାର ବିଳାପ କରିବାକୁ ଲାଗିଲେ, ''ତୁମେ କାହିଁକି ମୋତେ ଏକା ଛାଡିଗଲ ?

''ମା... ମା !!! ବାନାମ୍ୱର ବାବୁ ଆସିଗଲେଣି, ତୁମକୁ ଡାକୁଛନ୍ତି ଝିଅର ଡାକରା !

''ତାଙ୍କୁ କହ ମୁଁ ଆସୁଛି । କନକ ମଂଜରୀ ପ୍ରକୃତିସ୍ଥ ହେଲେ ।

ହଲ ମଧ୍ୟରେ ସମସ୍ତେ ଉପସ୍ଥିତ ଅସଂଭବ ନୀରବତା, କନକ ଆଜି ପ୍ରଥମଥର ପାଇଁ ବାନାମ୍ୱର ବାବୁଙ୍କ ସମ୍ମୁଖରେ ବିଧବା ବେଶରେ ଉପସ୍ଥିତ । ସମସ୍ତେ ଠିଆ ହେଲେ, ବାନାମ୍ୱର ବାବୁ ଆଖିରୁ ଚଷମା ବାହାର କରି ଲୁହ ପୋଛିଲେ, ''ବସନ୍ତୁ'' କନକ ମଂଜରୀ ବାନାମ୍ୱର ବାବୁଙ୍କୁ ବସିବାକୁ ନିର୍ଦ୍ଦେଶ ଦେଇ ନିଜେ ବସିଲେ, ତାଙ୍କ ପରେ ସମସ୍ତେ ଅତି ସତର୍କତାର ସହ ନୀରବରେ ବସି ପଡିଲେ ।

ଭାଉଜ, ଦେବବ୍ରତଙ୍କର ଏଇ ଉଇଲ୍ ତାଙ୍କ ଇଚ୍ଛା ଅନୁସାରେ ମୁଁ ତିଆରି କରିଥିଲି ଏବଂ ତାଙ୍କର ଇଚ୍ଛା ଅନୁସାରେ ଆଜି ମୁଁ ତାଙ୍କର ମୃତ୍ୟୁପରେ ଆପଣମାନଙ୍କ ସମ୍ମୁଖରେ ଏ ଲଫାପା ''ସିଲ୍'' ଖୋଲୁଛି । ବାନାମ୍ୱର ବାବୁ ଲଫାପା ଖୋଲିଲେ, ଦରକାରୀ କୋର୍ଟର କାଗଜପତ୍ରମାନଙ୍କ ମଧ୍ୟରେ ଥିଲା ଏକ ଲମ୍ୱାଚିଠି- ବାନାମ୍ୱର ବାବୁ ଚିଠି ପଢିଲେ ।

''କନକ''- ମୁଁ ତୁମ ପ୍ରତି ଚିର କୃତଜ୍ଞ, ମୋ ପରି ଅମାନିଆ ମନକୁ ତମେ ମନାଇ ମୋତେ ମଣିଷ କଲ । ସାହସ ଦେଲ, ଉତ୍ସାହ ଦେଲ, ଆଗକୁ ବଢିବାର ପ୍ରେରଣା ଦେଲ, ଆଜିର ପଇଁତିରିଶ ବର୍ଷର ବୈବାହିକ ଜୀବନ ମଧ୍ୟରେ ମୁଁ ତୁମକୁ କିଛି ଦେଇ ପାରିନାହିଁ । ଗତ ବର୍ଷକ ତଳେ ମୁଁ ଅନୁଭବ କରି ସାରିଥିଲି ମୋର ଏଇ ଅକସ୍ମାତ ମୃତ୍ୟୁକୁ । ସେଇ ମୃତ୍ୟୁର ପ୍ରତୀକ୍ଷାରେ ଥାଇ ମୋର ଏ ଉଇଲ । ଏକଥା ବାନାମ୍ୱର ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ତମେ ମଧ୍ୟ ନୁହଁ । ତେଣୁ ମୋତେ କ୍ଷମା ଦେବ ।

''କନକ ! ତୁମେ ହିଁ ମୋର ସ୍ଥାବର ଅସ୍ଥାବର ସମ୍ପତ୍ତିର ଉତ୍ତରାଧିକାରିଣୀ, ପିଲାମାନଙ୍କୁ ତାଙ୍କର ଯୋଗ୍ୟତା ଅନୁସାରେ କାର୍ଯ୍ୟ ପନ୍ଥା ଧରାଇ ଦେଇଛି । ତେଣୁ

ସେମାନଙ୍କୁ କିଛି ଦେବାର ପ୍ରୟୋଜନ ନାହିଁ । ମୋର ସମସ୍ତ ସ୍ଥାବର ଅସ୍ଥାବର ସଂପତି, ଯାହାର ଚିଠା ବାନାମ୍ବର ପାଖରେ ଅଛି ସମସ୍ତ ତୁମ ତଦାରଖରେ 'ବିଧବା ଆଶ୍ରମ' ଓ ପ୍ରାଇମେରୀ ସ୍କୁଲକୁ ଦାନ କରିବ, ଗାଁରେ ଏକ ମହିଳା କଲେଜ ପାଇଁ ମୁଁ ପ୍ରତିଶ୍ରୁତି ବଦ୍ଧ ଥିଲି, ତେଣୁ ତାହା ନିର୍ମାଣ କରାଇବ, ଏହା ବ୍ୟତୀତ ନାତି, ନାତୁଣୀମାନଙ୍କ ପାଇଁ ତାଙ୍କ ପ୍ରତ୍ୟେକଙ୍କ ନାମରେ ସ୍ଥାୟୀ ଜମାର ବ୍ୟବସ୍ଥା କରିଯାଇଛି, ଯାହାକି ସେମାନେ ବୟସ୍କ ହେଲେ ପାଇବେ । ମୋର ଯୋଗ୍ୟ ଆଦର୍ଶ ସନ୍ତାନମାନଙ୍କର ମୋର ସଂପତିରେ କୌଣସି ପ୍ରକାର ଅଧିକାର ରହିବ ନାହିଁ ।

କନକ- ଅବଶେଷରେ - ମୋର ଜ୍ଞାତ ବା ଅଜ୍ଞାତସାରରେ ତୁମ ପ୍ରତି କରିଥିବା ଅନ୍ୟାୟ ପାଇଁ ମୁଁ କ୍ଷମା ପ୍ରାର୍ଥୀ । ତୁମକୁ ଛାଡିଯିବାକୁ ଜମାରୁ ଇଚ୍ଛା ନାହିଁ । ହେଲେ ସମୟ ଓ ମୃତ୍ୟୁ ମୋତେ ତୁମ ନିକଟରୁ ପୃଥକ କରିଦେବ । ତଥାପି ମୁଁ ସର୍ବଦା ତୁମ ପାଖେ ପାଖେ ଥିବି ।''

ଉଇଲ୍ ପଠନ ସମ୍ପୂର୍ଣ୍ଣ ହେବାର ଯଥେଷ୍ଟ ପୂର୍ବରୁ ପୁଅ ବୋହୂ, ଝିଅ ଜ୍ୱାଇଁମାନେ ନିଜ ନିଜର କକ୍ଷକୁ ଯାଇ ସାରିଥିଲେ, ବାନାମ୍ବର ବାବୁ କନକ ମଂଜରୀଙ୍କ ଦସ୍ତଖତ ନେଲେ ଓ ବିଦାୟ ନେଇ ଚାଲିଗଲେ ।

କନକ ଧିର ପଦକ୍ଷେପରେ ପୂଜା ଘରକୁ ଗଲେ । ସେଠାରେ ଦେବବ୍ରତଙ୍କର ଏକ ଫଟୋ ଚିତ୍ର ଠାକୁରଙ୍କ ପାଦତଳେ ରଖା ହୋଇଥିଲା, ସେ ଆଣ୍ଠୁମାଡି, ହାତଯୋଡି ସ୍ୱାମୀଙ୍କୁ ବିକଳ ହୋଇ ଡାକିଲେ । ''ତୁମେ ମୋତେ ଏ ନର୍କ ଯନ୍ତ୍ରଣା ଭୋଗିବା ପାଇଁ କାହିଁକି ଛାଡିଗଲ ? ଏତେ ରାଗି ତୁମେ ।''

ଦେବବ୍ରତଙ୍କର ଫଟୋଚିତ୍ରଟି ହସିଲା ପରି ମନେ ହେଲା ଏବଂ ସତେ ଯେମିତି କହିଲା ''ମୁଁ ମରିନାହିଁ କନକ''... ମୁଁ ମରି ନାହିଁ । କେବଳ ତୁମର ପରୀକ୍ଷା ନେଉଛି, ମୋର ବିଶ୍ୱାସ ତୁମେ ହାରିଯିବ ନାହିଁ । ଭାଙ୍ଗିପଡିବ ନାହିଁ । ମନେ ରଖ ତମ ଭିତରେ ମୁଁ ଅଛି । ତମେ ହେଉଛ ମୋର ପ୍ରତିନିଧି, ତୁମେ ହାରିଗଲେ ମୋର ବିଶ୍ୱାସ ହାରିଯିବ । ମୁଁ ହାରିଯିବି, ତେଣୁ ମୋତେ ବା ମୋର ବିଶ୍ୱାସକୁ ହାରିଯିବା ପାଇଁ ସୁଯୋଗ ଦିଅ ନାହିଁ ''ମୋର ଅସପୂର୍ଣ୍ଣ କାର୍ଯ୍ୟ ସବୁ ତୁମେ ପୂରଣ କରିବ ।''

ସତେ ଯେମିତି କନକ ମଂଜରୀ ଦେବବ୍ରତଙ୍କର ଏକଥା ମନ ଦେଇ ଶୁଣିଲେ ଏବଂ ସମସ୍ତ ହୃଦୟଙ୍ଗମ କରି ହଠାତ୍ ସତେଜ ହେଇ ଉଠିଲେ । ଦୀର୍ଘଶ୍ୱାସ ଛାଡି ସେ ଧୂପ ଜଳାଇଲେ । ପୂଜାକଲେ, ମନେ ହେଲା ଦେବବ୍ରତ ତାଙ୍କ ପାଖେ ପାଖେ ଅଛନ୍ତି, ତାଙ୍କ ମଥାରେ ହାତରଖି ଆଶୀର୍ବାଦ ଦେଉଛନ୍ତି । ଖୁବ୍ ଶାନ୍ତି ଅନୁଭବ କଲେ ।

ତଳକୁ ଓହ୍ଲାଇ ଦେଖିଲେ, ପୁଅ ବୋହୂ ଝିଅ ଜ୍ୱାଇଁ ମଧ ନିଜର ଜିନିଷପତ୍ର ପ୍ୟାକ୍ କରି ବିଦାୟ ନେବା ପାଇଁ ଅପେକ୍ଷା ନକରି ନିଜ ପିଲାମାନଙ୍କ ସହ ଗାଡିରେ

ବସି ସାରିଲେଣି "ମା'ଙ୍କୁ ଦେଖି ବାଧରେ ଓହ୍ଲାଇଲେ । କେମିତି ଏକ ଅପରିଚିତ ଭାବ ନେଇ ବଡପୁଅ କହିଲା, ସମସ୍ତଙ୍କର ପ୍ରତିନିଧି ହୋଇ" । ମା' ଆମେ ଆସୁଛୁଁ ତମେ ପୂଜା ଘରେ ଥିଲ, ତେଣୁ "ଡିଷ୍ଟର୍ବ" ନକରି ନରିକାକାଙ୍କୁ କହି ଦେଇ ଯାଉଥିଲୁ । ତାପରେ ଡେରି ମଧ ହୋଇଗଲାଣି ।

କନକ କିଛି କହିଲେ ନାହିଁ । କିଛି କହିପାରିଲେ ନାହିଁ । ଏ ସ୍ୱାର୍ଥପର ଦୁନିଆରେ ସ୍ୱାମୀ ସ୍ତ୍ରୀ ସମ୍ପର୍କ ବ୍ୟତିତ ଅନ୍ୟ ସମସ୍ତ ସମ୍ପର୍କ କେବଳ କ୍ଷଣିକ.. ସ୍ୱାର୍ଥରେ ବୁଦ୍‌ବୁଦ୍ ।  ସାର୍ଥପର ଦୁନିଆରେ ସମସ୍ତେ କେବଳ ନିଜ ସ୍ୱାର୍ଥ ପାଇଁ ପାଗଳ, ଆଜି ସନ୍ତାନ ମାନଙ୍କର ସ୍ୱାର୍ଥପୂରଣ ହେଲା ନାହିଁ । ତେଣୁ ସେମାନେ ଛାଡି ଚାଲି ଯାଉଛନ୍ତି । ଏଥର ହୁଏତ ଆସିବେ କନକ ମଂଜରୀଙ୍କ ମୃତ୍ୟୁମ୍‌ରେ । ତାଙ୍କ ମଲା ଶରୀରକୁ କାଟି ଟିକ୍ ଟିକ୍ କରି ବସିବେ ନିଜ ନିଜର ଅଂଶ ଧନପାଇଁ" ହୁଏତ ଦେବବ୍ରତ ଏକଥା ଜାଣିଥିଲେ ।

ଗାଡିଷ୍ଟାର୍ଟ ହେଲା । ନାତିନାତୁଣୀମାନେ ହାତ ହଲାଇଲେ । କନକ ମଂଜରୀ ଯେମିତି ସ୍ଥାଣୁ ପାଲଟି ଯାଇଥିଲେ, ତାଙ୍କ ହାତରେ ହାତରଖି ଠିଆ ହୋଇ ହସୁଥିଲେ, ଗାଡିଟା ଗେଟ୍ ବାହାରକୁ ଚାଲିଯାଇଥିଲା, ଏବଂ କନକ ମଂଜରୀଙ୍କ ଆଖିରେ ଲୁହ ଭରି ଯାଇଥିଲା ।





# ସଂକ୍ଷିପ୍ତ ପରିଚୟ

ନାମ—
ରବୀନ୍ଦ୍ର ନାଥ ପ୍ରଧାନ ।

ପିତାଙ୍କ ନାମ—
ସ୍ୱର୍ଗୀୟ ମାଧବାନନ୍ଦ ପ୍ରଧାନ ।

ମାତାଙ୍କ ନାମ—
ସ୍ୱର୍ଗୀୟା ଶିବ ଦେବୀ ।

ଜନ୍ମ—
୧୯୪୮ ମସିହା
ଜୁନ୍-୨୩ ତାରିଖ ।

ରାଶି—ଧନୁ ।

ଜନ୍ମସ୍ଥାନ—ଅଣ୍ଡ୍ରା, ପଟ୍ଟାମୁଣ୍ଡାଇ ବ୍ଲକର ଏକ ପଲ୍ଲୀଗ୍ରାମ । କେନ୍ଦ୍ରାପଡ଼ା ଜିଲ୍ଲା ।

ଶିକ୍ଷାଗତ ଯୋଗ୍ୟତା—ଏମ୍.ଏ. (ଇତିହାସ) ଓ ଏଲ୍-ଏଲ୍-ବି. ।

ସ୍ଥାୟୀ ଠିକଣା—ଅଣ୍ଡ୍ରା, ଭାୟା : ଦାଣ୍ଡିସାହି, ଜିଲ୍ଲା-କେନ୍ଦ୍ରାପଡ଼ା ।

ବର୍ତ୍ତମାନର ଠିକଣା—ଶାନ୍ତିନଗର, ବୁଢ଼ାରଜା, ସମ୍ବଲପୁର-୪ ।

ପ୍ରଥମ ପ୍ରକାଶିତ ଗଳ୍ପ—ଶେଫାଳି ଓ 'ହେନାର ଗନ୍ଧ ।
(ପ୍ରଜାତନ୍ତ୍ର ୧୯୬୮ ମସିହା ଅଗଷ୍ଟ ୧୫ରେ ପ୍ରକାଶିତ)

ବୃତ୍ତି—ସରକାରୀ କୋଠାବାଡ଼ି ନିର୍ମାଣ କରିବା—ପତ୍ନୀ ମଞ୍ଜୁଲତାଙ୍କ ସହ ତିନୋଟି ପୁତ୍ର ସନ୍ତାନର ଜନକ...ମଣିଷ ପରି ବଞ୍ଚିବା · ଭଲ ବହି ପଢ଼ିବା...ବନ୍ଧୁତା ଭିତରେ ବୁଡ଼ିରହିବା ଜୀବନର ସମସ୍ତ ବ୍ୟର୍ଥତା ଭିତରେ ନିଷ୍ଠାବାନ ହେବା ଲେଖକଙ୍କ ଜୀବନର ପ୍ରମୁଖ ଆଭିମୁଖ୍ୟ ।

ମହାନ୍ ହିନ୍ଦୀ ତଥା ଉର୍ଦ୍ଦୁ କଥାକାର କିଷନ ଚନ୍ଦର ଓ ସ୍ୱର୍ଗତ ଲାଲବାହାଦୁର ଶାସ୍ତ୍ରୀଙ୍କର ବ୍ୟକ୍ତିତ୍ୱ ଦ୍ୱାରା ଅନୁପ୍ରାଣିତ । ସତ୍ ମଣିଷ ପରି ବଞ୍ଚିବା ଓ ସତ୍ ମଣିଷ ଭାବେ ମରିବା ହିଁ ଲେଖକୀୟ ଅଭିଳାଷ ।